# ପୂର୍ବାଭାଷ

ଆଧୁନିକ ଗ୍ରହ-ଗ୍ରହାନ୍ତର ଭ୍ରମଣ ଯୁଗରେ ରୁଷ ତଥା ମାର୍କିନ ବୈଜ୍ଞାନିକମାନେ ଚନ୍ଦ୍ରକୁ ନାନାପ୍ରକାର ଜଟିଳ ଯନ୍ତ୍ରପାତି ପଠାଇ ଅବଗତ ହୋଇପାରିଛନ୍ତି ଯେ, ପୃଥିବୀର ଏହି ଏକମାତ୍ର ପ୍ରାକୃତିକ ଉପଗ୍ରହ ଜୀବଜଗତଶୂନ୍ୟ ଏକ ଶୁଷ୍କ ଜ୍ୟୋତିଷ୍କ ମାତ୍ର—ନା ସେଠି ଅଛି ଜଳ, ନା ସେଠି ଅଛି ବାୟୁ, ନା ସେଠାରେ ଅଛନ୍ତି ଉଦ୍ଭିଦ କିମ୍ବା ପ୍ରାଣୀଜଗତ୍‌। ଏହି ଶୁଷ୍କ ଓ ବାୟୁଶୂନ୍ୟ ଉପଗ୍ରହକୁ ଯିବାପାଇଁ ଏ ଦୁଇ ଦେଶର ବୈଜ୍ଞାନିକଙ୍କର ଭାରି ଜିଦ୍‌। ଚନ୍ଦ୍ରଲୋକକୁ ଯାଇ ସେଠି ବସତି ସ୍ଥାପନ କରି ଚନ୍ଦ୍ରକୁ ପୃଥିବୀର ଏକ ଉପନିବେଶରେ ପରିଣତ କରିବା ପାଇଁ ସେମାନଙ୍କର ଯେଉଁ ପ୍ରବଳ ଜିଦ୍‌, ଅଦମ୍ୟ ଚେଷ୍ଟା, ଅକ୍ଲାନ୍ତ ପରିଶ୍ରମ—ତାହା ଦେଖିଲେ ବିସ୍ମିତ ନହୋଇ ରହିହୁଏ ନାହିଁ।

ଆଧୁନିକ ବୈଜ୍ଞାନିକମାନେ ମତ ଦିଅନ୍ତି, ଚନ୍ଦ୍ରର ସୃଷ୍ଟି ହୋଇଛି ପୃଥିବୀରୁ। ହିନ୍ଦୁ ପୁରାଣକାରମାନେ ମଧ୍ୟ କହନ୍ତି ଚନ୍ଦ୍ରର ସୃଷ୍ଟି ସାଗରରୁ। ଦେବ ଓ ଦାନବମାନଙ୍କ ଦ୍ୱାରା ସମୁଦ୍ରମନ୍ଥନ ବେଳେ ଚନ୍ଦ୍ର ସାଗରରୁ ସୃଷ୍ଟି ହେଲା ପାରିଜାତ, ଅମୃତ, ଲକ୍ଷ୍ମୀ ଆଦିଙ୍କ ସହିତ। ଜଗତର ମାତା ଲକ୍ଷ୍ମୀଙ୍କର ସହୋଦର ଭାବରେ ସମୁଦ୍ରରୁ ଜନ୍ମିଥିବାରୁ ଚନ୍ଦ୍ର ପରିଚିତ ହେଲା ଆମର ମାମୁଁ ଭାବରେ। ସେହିଦିନଠାରୁ ଚନ୍ଦ୍ରକୁ ଆମେ ଡାକିଲୁ ଜହ୍ନମାମୁଁ। ବଡ଼ ବିଚିତ୍ର, ଆଧୁନିକ ବୈଜ୍ଞାନିକମାନେ ମଧ୍ୟ ମତ ଦିଅନ୍ତି, ଚନ୍ଦ୍ର ସୃଷ୍ଟି ହୋଇଛି ପ୍ରଶାନ୍ତ ମହାସାଗରରୁ। ପୃଥିବୀ ଯେତେବେଳେ ଅର୍ଦ୍ଧ-ତରଳ ଅବସ୍ଥାରେ ନିଜ ଅକ୍ଷ ଚାରିପଟରେ ଘୂର୍ଣ୍ଣାୟମାନ ଥିଲା, ସେଥିର ଖଣ୍ଡିଏ ଅଂଶ ଛିଡ଼ିଯାଇ ଏହାଠାରୁ କିଛି ଦୂରରେ ଏହାକୁ ପ୍ରଦକ୍ଷିଣ କରିବାକୁ ଲାଗିଲା। ଏହି ଛିଡ଼ିଯିବା ଅଂଶଟି ହେଲା ଚନ୍ଦ୍ର। ପୃଥିବୀର ଯେଉଁ ଅଂଶରୁ ଛିଡ଼ିଯାଇଥିଲା, ପୃଥିବୀ ଯଥେଷ୍ଟ କଠିନ ହୋଇଯାଇଥିବାରୁ ସେହି ଅଂଶ ଆଉ ପୂର୍ଣ୍ଣ ହୋଇପାରିଲାନି—ଖାଲୁଆ ହୋଇ ରହିଗଲା। ଏହି ଖାଲୁଆ ଅଂଶରେ ପରେ ଜଳ ପୂର୍ଣ୍ଣହୋଇ ସୃଷ୍ଟି କଲା ଆଜିକାର ପ୍ରଶାନ୍ତ ମହାସାଗର। ହିନ୍ଦୁ ପୁରାଣକାରମାନଙ୍କର କଳ୍ପନା ସହିତ

ଆଧୁନିକ ବିଜ୍ଞାନ-ପ୍ରତିପାଦିତ ତଥ୍ୟ ଯେମିତି ଭାବରେ ମିଶିଯାଉଛି, ଦେଖିଲେ ବିସ୍ମିତ ନହୋଇ ରହିହୁଏନାହିଁ ।

ଅନେକଙ୍କ ମନରେ ସ୍ୱତଃ ପ୍ରଶ୍ନ ଉଠୁଥିବ—ଯେଉଁ ଚନ୍ଦ୍ରର ସୃଷ୍ଟି ହୋଇଛି ପୃଥିବୀରୁ; ପୃଥିବୀରେ ଜଳ, ବାୟୁ, ଉଦ୍ଭିଦ ତଥା ପ୍ରାଣୀଜଗତ୍ ଅପର୍ଯ୍ୟାପ୍ତ ପରିମାଣରେ ଥିଲାବେଳେ ଚନ୍ଦ୍ରରେ ଏସବୁ ନାହିଁ କାହିଁକି ? ପୃଥିବୀ ଏକ ଗତିଶୀଳ ଜୀବନ୍ତ ଗ୍ରହ ଥିବା ସ୍ଥଳେ ଏଥିରୁ ସୃଷ୍ଟି ଚନ୍ଦ୍ର ଏକ ମୃତ ଉପଗ୍ରହ ହେଲା କେମିତି ?

ଏହି ପ୍ରଶ୍ନର ଉତ୍ତର ଦେବ 'ଚନ୍ଦ୍ରର ମୃତ୍ୟୁ' ଉପନ୍ୟାସ । ଚନ୍ଦ୍ର ଆଜି ମୃତ, ଚନ୍ଦ୍ରରେ ଜୀବଜଗତ୍ ନାହିଁ, ବାୟୁ ନାହିଁ କିମ୍ବା ଜଳ ନାହିଁ । କିନ୍ତୁ ସବୁ ଦିନେ ଚନ୍ଦ୍ରର ଅବସ୍ଥା ଏଇଆ ନଥିଲା । ଚନ୍ଦ୍ର ଦିନେ ପୃଥିବୀ ଭଳି ଜଳ, ବାୟୁ, ପ୍ରାଣୀ ଓ ଉଦ୍ଭିଦଜଗତରେ ଭରପୂରଥିଲା । ସେଠି ଥିଲା ସୁସଭ୍ୟ ମଣିଷସମାଜ ଯେଉଁମାନେ କି ସଭ୍ୟତା ଓ ବିଜ୍ଞାନରେ ନିଜ ଉତ୍କର୍ଷତା ଯୋଗୁଁ ପୃଥିବୀକୁ ଉପହାସ କରୁଥିଲେ । କିନ୍ତୁ ଚନ୍ଦ୍ରର ସେ ଅବସ୍ଥା ସବୁଦିନେ ରହିପାରିଲାନାହିଁ । ଦିନକୁ ଦିନ ସେ ସବୁ ଉଭେଇଗଲା । ତେଣୁ ଅନେକେ ପଚାରିପାରନ୍ତି, ଚନ୍ଦ୍ରର ସେ ଅବସ୍ଥା ଗଲା କୁଆଡ଼େ ? କାହିଁକି ବା ଗଲା ? ଚନ୍ଦ୍ର ଜୀବନ୍ତ ନରହି ମୃତ ହେଲା କେମିତି ? ଚନ୍ଦ୍ର-ସଭ୍ୟତାର ଅବସାନ ପାଇଁ ଦାୟୀ କିଏ ? ସେହି ସବୁ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବ ଏହି ଉପନ୍ୟାସ ।

ଉପନ୍ୟାସର ନାୟକ ଉତ୍କଳାବର୍ତ୍ତ ମୁଖରୁ ପାଠକମାନେ ଶୁଣିବାକୁ ପାଇବେ ଚନ୍ଦ୍ରର ସେହି ବିରାଟ ଇତିହାସ, ଯେଉଁ ଇତିହାସ ଶୁଣିଲେ ବିସ୍ମୟର ସୀମା ରହିବ ନାହିଁ । ପାଞ୍ଚହଜାର ବର୍ଷ ତଳ ସୈନ୍ଧବ ସଭ୍ୟତା ଅମଳର ମହେଞ୍ଜୋଦାରୋ ନଗରୀଅଧିବାସୀ ଉତ୍କଳାବର୍ତ୍ତ, ରକ୍ତମାଂସର ଶରୀର ନେଇ ବଞ୍ଚିରହିଛି ଚନ୍ଦ୍ରର ସେହି ଇତିହାସ କହିବାପାଇଁ । ଚନ୍ଦ୍ର ଆଜ କାହିଁକି ମୃତ, ଜୀବନ୍ତ ଅବସ୍ଥାରେ ତା'ର ରୂପ କେମିତି ଥିଲା, ତହିଁର ବିସ୍ମୟସୃଷ୍ଟିକାରୀ ବର୍ଣ୍ଣନା ଉତ୍କଳାବର୍ତ୍ତ ମୁହଁରୁ ଶୁଣିଲେ ପାଠକମାନଙ୍କ ମନରେ ଆଲୋଡ଼ନ ସୃଷ୍ଟିହେବ । ପାଞ୍ଚହଜାର ବର୍ଷ ତଳେ ଏହି ପୃଥିବୀରେ ଜନ୍ମହୋଇ ଲାଳିତପାଳିତ ହୋଇଥିଲେ ହେଁ ବର୍ତ୍ତମାନ ସେ ଯୁବକ ଅବସ୍ଥାକୁ ଅତିକ୍ରମ କରିନାହିଁ । ସେହି ଯୁବକଙ୍କୁ

ସାମୟିକ ବନ୍ଦୀ କରି ଯୁକ୍ତରାଷ୍ଟ୍ର ସରକାର ଯେଉଁ ଖବରଟିକକ ହାସଲ କରିପାରିଥିଲେ ସେତକ ରହିଯାଇଛି ପୃଥିବୀରେ; ଉଲ୍କାଳାବର୍ତ୍ତ ପୁଣି ଖସିଯାଇଛି ସେମାନଙ୍କ କବଳରୁ । ବିଜ୍ଞାନରେ ଯେଉଁମାନେ ଏତେ ଉନ୍ନତ, ବିଜ୍ଞାନରେ ଅପେକ୍ଷାକୃତ କମ୍ ଉନ୍ନତ ମାର୍କିନ୍ ବୈଜ୍ଞାନିକମାନଙ୍କର ତାହାକୁ ଆବଦ୍ଧ କରିବାର ଶକ୍ତି ବା କେତେ ? ଉଲ୍କାଳାବର୍ତ୍ତ ଚାଲିଯାଇଥିଲେ ହେଁ, ତା'ର ଅମର କାହାଣୀ ରହିଯାଇଛି ମାର୍କିନ୍ ବୈଜ୍ଞାନିକ ତଥା ସାମରିକ ଅଫିସରମାନଙ୍କ ପାଖରେ । ସେହି ଅମର କାହାଣୀ ହିଁ ହେଉଛି ଏହି ଉପନ୍ୟାସର ବିଷୟବସ୍ତୁ ।

ଉପନ୍ୟାସଟି ଆମର ଗତାନୁଗତିକ ସାଧାରଣ ଉପନ୍ୟାସଠାରୁ ଅଲଗା । ଏଥିରେ ବୈଜ୍ଞାନିକ କଳ୍ପନା ହିଁ ହେଉଛି ମୁଖ୍ୟ ବିଷୟବସ୍ତୁ । ବୈଜ୍ଞାନିକ ସତ୍ୟକୁ ମୂଳଭିତ୍ତି କରି ଉପନ୍ୟାସଟି ରୂପନେଇଛି । ସାଧାରଣ ଉପନ୍ୟାସ ଭଳି ଚରିତ୍ରଚିତ୍ରଣ, ନାୟକ ନାୟିକାର ପ୍ରେମ, ତ୍ୟାଗ, ମିଳନ ଆଦିର ବର୍ଣ୍ଣନା ଏହି ଉପନ୍ୟାସର ମେରୁଦଣ୍ଡ ନୁହେଁ । ତେଣୁ ଏହି ଉପନ୍ୟାସକୁ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିବା ବିଧେୟ । ବୈଜ୍ଞାନିକର କଳ୍ପନା କଳ୍ପନା ହେଲେହେଁ ବୈଜ୍ଞାନିକ ସତ୍ୟଠାରୁ ଦୂରେଇଯାଏ ନାହିଁ । ତାହା ହେଉଛି ଏହି ବୈଜ୍ଞାନିକ ଉପନ୍ୟାସର ବିଶେଷତ୍ୱ । ଉପନ୍ୟାସ ପଢ଼ୁଁ ପଢ଼ୁଁ ନାନା ଅସମ୍ଭବ ପ୍ରଶ୍ନ ପାଠକର ମନକୁ ଆସିବ—ରକ୍ତମାଂସର ଶରୀର ନେଇ ଜଣେ ମଣିଷ ପକ୍ଷରେ ପାଞ୍ଚହଜାର ବର୍ଷ ବଞ୍ଚିବା କ'ଣ କେବେ ସମ୍ଭବ ? ମହାକାଶଯାତ୍ରୀର ଯେ ଚଉବନ ବର୍ଷ ପୃଥିବୀରେ ତାହା କେବେ କ'ଣ ୩୦ ଲକ୍ଷ ବର୍ଷ ହୋଇପାରେ ? ପଚାଶ ବର୍ଷ ପିତାର କେବେ କ'ଣ ପଚିଶବର୍ଷ ବୟସର ପୁଅ ହୋଇପାରେ । ପାଞ୍ଚଫୁଟ ଉଚ୍ଚ ମା'ର ଗର୍ଭରୁ କେବେ କ'ଣ ଚାଳିଶ ଫୁଟ ଉଚ୍ଚର ପୁଅ ଜନ୍ମିପାରେ ? ଆମର ଯାହା ନାରୀର ରୂପ ତାହା କ'ଣ କେବେ ଆଉ ଏକ ଜଗତରେ ପୁରୁଷର ରୂପ ହୋଇପାରେ ? ଆମର ସମୟ ଆଗକୁ ଗତି କଲାବେଳେ ଆଉ ଏକ ଜଗତରେ ଏହା କ'ଣ ପଛକୁ ଗତି କରିପାରେ ? ଏହିଭଳି ବହୁ ଅସମ୍ଭବ ପ୍ରଶ୍ନ ପାଠକର ମନକୁ ଆଲୋଡ଼ିତ କରିବାର ସମ୍ଭାବନା ରହିଛି । ଏହାକୁ ପାଠକ ଅବାସ୍ତବ, କଳ୍ପନାପ୍ରସୂତ କହି ପରିତ୍ୟାଗ କରିପାରେ, କିନ୍ତୁ ପ୍ରତ୍ୟେକଟି ଯେ ବାସ୍ତବତା ଦୃଷ୍ଟିରୁ ନିର୍ଘଣ୍ଟ ସତ୍ୟ ଓ ଏହା ପଛରେ ବହୁ ବୈଜ୍ଞାନିକ ସତ୍ୟ ଯେ ନିହିତ ଅଛି,

ଏହା ପାଠକପାଠିକାମାନେ ଭୁଲିଯିବା ଉଚିତ୍ ନୁହେଁ । ଆପାତତଃ ଉପରକୁ ଅବାସ୍ତବ ଜଣାପଡ଼ୁଥିଲେହେଁ ସେଗୁଡ଼ିକ ପ୍ରକୃତରେ ଅବାସ୍ତବ ନୁହେଁ ।

ପରିଶେଷରେ ଏତିକି କହି ବିଦାୟ ନେଉଛି, ବୈଜ୍ଞାନିକ କଳ୍ପନାରେ ଭାସିଯାଇ ରୂପ ଦେଲି "ଚନ୍ଦ୍ରର ମୃତ୍ୟୁ" ଉପନ୍ୟାସଟି । କିନ୍ତୁ କ'ଣ ପ୍ରକୃତରେ ସୃଷ୍ଟି କଲି ଓଡ଼ିଶାର ସୁଧୀ ପାଠକସମାଜ ବିଚାରିକରିବେ ।

ସୃଷ୍ଟିରେ ଯଦି କିଛି ଦୋଷ ତ୍ରୁଟି ରହିଥାଏ, ତେବେ କ୍ଷମା କରିବାକୁ ଅନୁରୋଧ ।

୧୫ । ୩ । ୭୭ — ବିନୀତ
ରେଭେନ୍‌ସା କଲେଜ, କଟକ — **ଗୋକୁଳାନନ୍ଦ ମହାପାତ୍ର**

## ଉତ୍ସର୍ଗ

ପିତୃଦେବଙ୍କ ଅମର ସ୍ମୃତି ଉଦ୍ଦେଶ୍ୟରେ ।

ଗୋକୁଳାନନ୍ଦ

# ଏକ

ସେଣ୍ଟ୍ରାଲ୍ ପାର୍କ-ନିଉୟର୍କ···ନଭସ୍ପର୍ଶୀ ପ୍ରାସାଦଭରା ଚିର ଧବଳାୟିତ ନିଉୟର୍କ ନଗରୀର ଗ୍ରୀବା ଉପରେ ଏହି ପାର୍କଟି ଗଢ଼ିଉଠିଛି, ଅତିଷ୍ଠ ନଗରବାସୀଙ୍କ ହୃଦୟରୁ ଅବସନ୍ନତା ଦୂରକରି ପ୍ରଫୁଲ୍ଲତା, ସତେଜତା, ସରସତାର ଅବାରିତ ମନ୍ଦାକିନୀ ସ୍ରୋତ ବୁହାଇ ଦେବାପାଇଁ । ଆମେରିକା ଆସିଲା ଦିନରୁ ଏହି ଉଦ୍ୟାନଟି ମୋ ଜୀବନର ଚଳଣି ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇପଡ଼ିଛି । ନିଉୟର୍କ ଭଳି ଧନଧାନ୍ୟଭରା ନଗରୀରେ ଯେଉଁଠି ଇଞ୍ଚେ ଜମିର ମୂଲ୍ୟ ଲକ୍ଷ ଲକ୍ଷ ଟଙ୍କା ହିସାବରେ ଗଣାଯାଏ, ସେଠି ଏତେବଡ଼ ବିରାଟ ଉଦ୍ୟାନ ମୁକ୍ତ-ସୁଶୀତଳ ବାୟୁପ୍ରବାହ ଛୁଟାଇବା ପାଇଁ କେମିତି ସୃଷ୍ଟି ହେଲା ମୁଁ ବେଳେବେଳେ ଭାବି କିଛି ଠିକ୍ କରିପାରେନା ।

ନିଉୟର୍କ ନଗରୀରେ ମୁଁ ରହୁଥିବା ଅଷ୍ଟମ ଏଭିନିଉର ଏପାର୍ଟମେଣ୍ଟଠାରୁ ଏହି ପାର୍କଟି ବେଶି ଦୂର ନୁହେଁ । ଯେତେବେଳେ ମୁଁ ଖୁବ୍ ଖୁସିହୋଇଯାଏ, ଦୌଡ଼ିଆସେ ଏହି ସେଣ୍ଟ୍ରାଲ୍ ପାର୍କକୁ; ମନର ଆନନ୍ଦକୁ ଉପଭୋଗ କରେ ଏହି ଉଦ୍ୟାନର ସୁନ୍ଦର ପ୍ରାକୃତିକ ପରିବେଶ ଭିତରେ । ମନରେ ଯେତେବେଳେ ଦୁଃଖ ଆସେ, ଏହି ସେଣ୍ଟ୍ରାଲ୍ ପାର୍କହିଁ ମୋତେ ଆଶ୍ରା ଦିଏ । ଏହାରି କୋଳରେ ଆଶ୍ରୟ ନେଇ ନୟନରୁ ଲୋତକର ଅବାରିତ ସ୍ରୋତ ଛୁଟାଇ ମୁଁ ଶାନ୍ତି ପାଏ । ମୋର ସୁଖ, ଦୁଃଖ, ବିପଦ, ଆପଦ ସବୁଥିରେ ପ୍ରଧାନ ସଙ୍ଗୀ ହେଲା ଏହି ସେଣ୍ଟ୍ରାଲ୍ ପାର୍କ । ଏହିଭଳି ଏକ ସଙ୍ଗୀ ପାଇନଥିଲେ ହୁଏତ ବାରହଜାର ମାଇଲ ଦୂରରୁ ଆସି ମୁଁ ଏଠାରେ ଶିକ୍ଷାଲାଭ କରିପାରିନଥାନ୍ତି ।

ଦିନକର ଘଟଣା···ଗତ କେତେ ଦିନଧରି ଯେଉଁ ଅଜବ୍ ଘଟଣା ସବୁ ମୋ ଜୀବନରେ ଘଟିଯାଇଛି, ସେଗୁଡ଼ିକ ସହିତ ମୁଁ ବାସ୍ତବତାକୁ ମିଳାଇ ସେଦିନ ତଉଲୁଥାଏ । ଭାବିପାରୁନଥାଏ ମଣିଷ ଜୀବନରେ ବାସ୍ତବତା କେମିତି ଏଭଳି ରୂପ ନେଇ ଠିଆହୁଏ; ଯାହା ଆଗରେ କଳ୍ପନା ବି ହାରି ମାନିବାକୁ ବାଧ୍ୟ ହୁଏ । ନିହାତି ଏକ ସତକଥା ମୋ ଜୀବନରେ ଘଟିଯାଇଛି, ଯାହାକୁ କହିଲେ ହୁଏତ କେହି ବିଶ୍ୱାସ କରିବେ ନାହିଁ । ମୁଁ ସ୍ୱପ୍ନ ଦେଖିଛି କହି ଏହାକୁ ଅନେକେ ଉଡ଼ାଇ ଦେଇପାରନ୍ତି । କାରଣ କାହାରି ମନରେ ବିଶ୍ୱାସ ଜନ୍ମାଇବା ପାଇଁ ମୋଠାରେ କିଛି ପ୍ରମାଣ ନାହିଁ । ପୁଣି ସରକାରୀ ନିର୍ଦ୍ଦେଶ, ଯେମିତି କାନକୁ ଦି'କାନ ନ ହୁଏ । ଏହି ଗୋପନୀୟତା ନଷ୍ଟକଲେ ଦଣ୍ଡର ମାତ୍ରା ଅତି କଠୋର ।

ଏହି ଅତି ଗୋପନୀୟ ଘଟଣାଟି ନେଇ ମୋ ଜୀବନରେ କେତେ କ'ଣ ଯେ ଓଲଟପାଲଟ ହେବାକୁ ବସିଛି, ତାର କଳନା ନାହିଁ । ନିଉୟର୍କକୁ ଫେରିଆସି ଦେଖେ, ଏହି ସହରରୁ

ସାମୟିକ ଅନ୍ତର୍ଦ୍ଧାନ ମୋର ନବଦମ୍ପତ୍ତିଆ ଜୀବନରେ ସୃଷ୍ଟି କରିଛି ଏକ ବିରାଟ ଝଡ଼; ଯାହା ମୋ ଜୀବନର ସବୁକିଛି ଭାଙ୍ଗି ଚୁର୍‌ମାର୍ କରି ମିଶାଇଦେଇଛି ନିଉୟର୍କ ଉପସାଗର ସହିତ ।

ମନ ଭିତରେ ଅସଂଖ୍ୟ ପ୍ରଶ୍ନର ଝଡ଼—ତେବେ ସେ କ'ଣ ବିଶ୍ୱାସ କରିବନି ମୋ କଥା—? ନିଉୟର୍କରୁ ସାମୟିକ ଅନ୍ତର୍ଦ୍ଧାନ ହେବାର କୈଫିୟତ କଣ ଦେଇପାରିବ ମୋର ଏଇ ଅନୁଭୂତି ? ସେ ଏହାକୁ ନିପଟ ମିଛକଥା କହି ଉଡ଼ାଇଦେବ ନାହିଁ ତ !

ପ୍ରଶ୍ନର ପରିସମାପ୍ତି ହେବାକୁ ନାହିଁ; ବରଂ ବେଳକୁବେଳ ମନରେ ଆହୁରି ଜଟିଳ ପ୍ରଶ୍ନର ଉଦ୍ରେକ ହେଉଛି । ତେବେ ଏହା ସ୍ୱତଃସିଦ୍ଧ ଯେ ସେଣ୍ଡିର ରାଗ ମୋ ଉପରେ ବହୁ-ମାତ୍ରାରେ ବଢ଼ିଯାଇଛି । ମାର୍କିନ ଲଳନା—ଥରେ ରାଗିଲେ ତାକୁ ଶାନ୍ତ କରିବା କଷ୍ଟକର । ହଜାର ହଜାର କୈଫିୟତ ପାଣି ହୋଇଯିବ, ତଥାପି ରାଗ ଶାନ୍ତହେବନି । ସେ ଭାବିବ ମୁଁ ତାକୁ ପ୍ରତାରଣା କରିଛି—ଯେଉଁ ପ୍ରତାରଣାର ଶାସ୍ତି ମାର୍କିନ ରମଣୀଠାରେ ଅତି କଠିନ ।

ଯେଉଁ ସେଣ୍ଡି ଆଜି ଅବସ୍ଥାଚକ୍ରରେ ମୋ ଉପରେ ଏମିତି କୋପାବିଷ୍ଟ, ସେ ଦିନେ ଥିଲି ମୋଠାରେ କୋମଳତାର ଅବତାର । ସେଣ୍ଡିର କୋମଳ ହୃଦୟର ପ୍ରମାଣ ପାଇଲି ଯେଉଁ-ଦିନ ତା' ସହିତ ମୋର ପ୍ରଥମ ସାକ୍ଷାତ ହୁଏ, ଅଧ୍ୟାପକ କାପ୍‌ଲାନ୍‌ଙ୍କ ଗବେଷଣାଗାରରେ । ମୁଁ ନୂଆହୋଇ ନିଉୟର୍କ ଆସିଥାଏ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବାପାଇଁ । ଅଧ୍ୟାପକ କାପ୍‌ଲାନ୍‌ଙ୍କର ସେ ହେଉଛି ରିସର୍ଚ୍ଚ ଆସିଷ୍ଟାଣ୍ଟ । ମୁଁ ଯେଉଁଦିନ ସେହି ବିଭାଗରେ ଯୋଗଦିଏ , ତାର ସେହି ନୀଳାଳୋଳ ନୟନର ଚାହାଣିରେ ସେ ମୋତେ ବାନ୍ଧିଦେଇଥିଲା ନିଜ ସହିତ । ନିଉୟର୍କ ନଗରୀର ବାସିନ୍ଦା, ଏକ ସମ୍ଭ୍ରାନ୍ତ ପରିବାରରେ ତାର ଜନ୍ମ । ପିତା ତାର ବିରାଟ ପୁସ୍ତକ ବ୍ୟବସାୟୀ ଜନ ଉଇଲେ କୋମ୍ପାନୀର ମୋଟା ଦରମାପ୍ରାପ୍ତ ଏକ କର୍ମଚାରୀ । ମା' ମାର୍ଗାରେଟ୍ ଉଚ୍ଚଶିକ୍ଷିତା ଓ ଆଧୁନିକା । ଆମ ଦୁହିଁଙ୍କର ପ୍ରଥମ ସାକ୍ଷାତ୍‌ର ପୁରସ୍କାରସ୍ୱରୂପ ସେ ମୋତେ ନିମନ୍ତ୍ରଣ କରି ଡାକି ନେଇଥିଲା ତାର ନିଉୟର୍କସ୍ଥିତ ଓ୍ୱେଷ୍ଟସାଇଡ୍ ବାସଭବନକୁ । କଲମ୍ବିଆ ବିଶ୍ୱବିଦ୍ୟାଳୟଠାରୁ ଅଳ୍ପଦୂରରେ ତାର ବାସଭବନ । ପ୍ରଥମ ଦିନର ଅତିଥି ଚର୍ଚ୍ଚାରେ ଅତ୍ୟନ୍ତ ମୁଗ୍ଧ ହୋଇପଡ଼ିଲି । ମୁଁ ଭାରତୀୟ ହେଲେ ବି ତାଙ୍କ ଘରେ ଯେଉଁ ଆଦର, ତାହା ମୋତେ ତାଙ୍କ ପରିବାର ସହିତ ବାନ୍ଧିଦେଇଥିଲା ଚିରକାଳପାଇଁ । ଘରଠାରୁ ଏତେ ଦୂରରେ ରହି ମଧ୍ୟ ତାଙ୍କ ପରିବାରର ଆତିଥ୍ୟ ଯୋଗୁଁ ନିଜ ପରିବାରର ଅଭାବକୁ ମୁଁ ଏକରକମ ଭୁଲିଯାଇଥିଲି । ସେହି-ଦିନଠାରୁ ସେଣ୍ଡି ଓ ମୋ ମଧ୍ୟରେ ବନ୍ଧୁତା ଦିନକୁଦିନ ଗାଢ଼ତର ହେବାକୁ ଲାଗିଲା । ମୋ ଅନୁରୋଧରେ ସେଣ୍ଡି ଆସିଷ୍ଟାଣ୍ଟସିପ୍ ଛାଡ଼ିଦେଇ ପିଏଇଚ. ଡି. କରିବାପାଇଁ ମୋର ସହାଧ୍ୟାୟିନୀ ହେଲା । ଆମେ ଦୁହେଁ ଅଧ୍ୟାପକ କାପ୍‌ଲାନ୍‌ଙ୍କ ଅଧୀନରେ ଆଗେଇଚାଲିଲୁ ବିଜ୍ଞାନର ନୂଆ ନୂଆ ତଥ୍ୟ ଆବିଷ୍କାର କରିବାପାଇଁ ।

ହଠାତ୍ ମନେପଡ଼ିଗଲା ସେଣ୍ଡ଼ିର ସେହି ପ୍ରଥମ ଦିନର ସୁନ୍ଦର, ଶାନ୍ତ ମୁଖମଣ୍ଡଳ । କିନ୍ତୁ ଠିକ୍ ତାର ପରମୁହୂର୍ତ୍ତିରେ ସେଇ ଚିରହାସ୍ୟଭରା ମୁଖମଣ୍ଡଳ ଉଭେଇଯାଇ ତା' ସ୍ଥାନରେ ଦେଖାଦେଲା ତାର ଗାମ୍ଭୀର୍ଯ୍ୟଭରା ନୟନଯୁଗଳ । ତାର ସେଇ ଦୋଷକଷାଯୁକ୍ତ ଦୃଷ୍ଟିକୁ ସହ୍ୟ କରିବା ମୋ ପକ୍ଷରେ ଯେମିତି କଷ୍ଟକର ହୋଇପଡ଼ୁଛି । ତାହେଲେ କିଣ ସେଣ୍ଡିକୁ ବୁଝାଇହେବନି ? ମୋର କୈଫିୟତକୁ ସେ ଯଦି ବିଶ୍ୱାସ ନ କରେ—ତେବେ··· ବିଶ୍ୱାସ କରିବନି କାହିଁକି ? ଇଏ ତ ମୋର, କି ଆଉ କାହାରି ମନଗଢ଼ା କଥା ନୁହେଁ, ଖାଣ୍ଟି ସତକଥା ।

ପୁଣି ମନେପଡ଼ିଗଲା, ଜଣେ ଭାରତୀୟ ବନ୍ଧୁଙ୍କ ତାଗିଦ୍ । ତୁମେ ଯଦି ନିଜ ଆଖିରେ ଦେଖିବ ଯେ ପଥରଟାଏ ବିନା ଉତ୍ତାପରେ ତରଳି ପାଣି ହୋଇଯାଉଛି ବା ମାଙ୍କଡ଼ଟାଏ ଗୀତ ଗାଉଛି, ତଥାପି ତାହା ତମେ କାହା ଆଗରେ ସତକଥା କି ନିଜ ଆଖିରେ ଦେଖିବା କଥା-କହି ପ୍ରକାଶ କରିବନି । କାରଣ, ଲୋକେ କହିବେ, ତୁମେ ଏକ ନିପଟ ମିଛୁଆ ।

ଏ କ'ଣ ତାହେଲେ ସେଇମିତିକା କଥା ।

ହଠାତ୍ ମନେପଡ଼ିଗଲା ମେରିଆ କଥା । ସେଣ୍ଡିର ପ୍ରଧାନ ସଙ୍ଗିନୀ ମେରିଆ । ସେଣ୍ଡି ଜରିଆରେ ତା' ସହିତ ମୋର ବନ୍ଧୁତା ବି ବେଶ୍ । ସେଣ୍ଟ୍ରାଲ୍ ପାର୍କଠାରୁ ଆରମ୍ଭ କରି ଆମେରିକାର ବସ୍ତୁକାଗାରେ ଆମ ତିନିଜଣଙ୍କର ମେଳ ହୁଏ । କେତେବେଳେ ଚର୍ଚ୍ଚରେ, କେତେବେଳେ ହ୍ରଦକୂଳରେ, କେତେବେଳେ ବଣଭୋଜିରେ ବା ନାଚଘରେ ଆମ ତିନିଜଣଙ୍କର ମିଳନ ଖୁବ୍ ଜମିଉଠେ । ମେରିଆର ଯୁବକ ବନ୍ଧୁମାନେ ମଧ୍ୟ ଅନେକ ସମୟରେ ଆମ ସହିତ ଯୋଗଦିଅନ୍ତି । ବଡ଼ ହସଖୁସିରେ ସେଇ ଦିନଗୁଡ଼ାକ କଟିଯାଏ ଆମର । ଏଇ ମେରିଆ ହୁଏତ ମୋର ଏହି ଦୁର୍ଦ୍ଦିନରେ ସାହାଯ୍ୟ କରିପାରେ, ସେ ଯଦି ବିଶ୍ୱାସ କରେ ମୋ କଥାଟା । ତେବେ ସେଣ୍ଡିକୁ ବୁଝାଇବା ଦାୟିତ୍ୱ ସେ ବହନ କରିବାକୁ କୁଣ୍ଠାବୋଧ କରିବନି ।

କଲମ୍ବିଆରେ କିଛିଦିନ କଟିଗଲା ପରେ ଯୁବତୀ ଲିଜା ଅଧ୍ୟାପକ କାପ୍‌ଲାନ୍‌ଙ୍କଠାରୁ ନିଯୁକ୍ତି ପାଇଲା ମୋର ଏକ ସହକର୍ମୀ ଭାବରେ । ମୋ ଗବେଷଣା ଦିନକୁଦିନ ପ୍ରସାରିତ ହେଉ-ଥିବାରୁ ଆଉ ଏକ ସହକାରୀର ଆବଶ୍ୟକତା ପ୍ରଫେସର ଅନୁଭବ କଲେ । ତାରି ଫଳରେ ଲିଜା ପାଇଲା ନିଯୁକ୍ତି । ଲିଜାର ନିଯୁକ୍ତିକୁ ବିଶେଷତଃ ମୋ ସହକର୍ମୀ ଭାବରେ ପସନ୍ଦ କରି-ପାରିଲାନି ସେଣ୍ଡି । ଲିଜା ସେଣ୍ଡି ଅପେକ୍ଷା ଅଧିକ ରୂପସୀ ଥିବାରୁ ଲିଜାର ଉପସ୍ଥିତି ସେଣ୍ଡିକୁ ବିକ୍ଷୁବ୍ଧ କରୁଥିଲା । ଲିଜା ଯଦିଓ ମୋ ସହିତ କାମ କରୁଥିଲା, ତାହା ସହିତ ମୋର ଘନିଷ୍ଠତା ବଢ଼ାଇବାକୁ ମୁଁ ପ୍ରଶ୍ରୟ ଦେଉନଥିଲି । କାରଣ ? ମାର୍କିନ ପରିବାର ଭିତରେ ପୁଅଝିଅଙ୍କ ମେଳରେ ଚଳିବାକୁ ହେଲେ ନାନା ଆଡ଼କୁ ଦୃଷ୍ଟିଦେବାକୁ ପଡ଼େ । ଟିକିଏ ଅସାବଧାନ ହୋଇଗଲେ ସବୁକିଛି ଗୋଳମାଳ ହୋଇଯାଏ । ମୁଁ ନିଜେ ଖୁବ୍ ସାବଧାନ ହୋଇ ଲିଜାଠାରୁ ଦୂରେଇ ରହିବାକୁ ଚେଷ୍ଟାକଲେ ମଧ୍ୟ ସେଣ୍ଡିର ଆଖିରେ

ସନ୍ଦେହ ଯେ ନଥିଲା ତା' ନୁହେଁ । କୌଣସି କାରଣବଶତଃ ମୁଁ ଯଦି ସଅଳ ସଅଳ ଗବେଷଣାଗାରକୁ ଚାଲିଯାଇଥାଏ ଓ ଦୁର୍ଭାଗ୍ୟବଶତଃ ଲଜା ଯଦି ଆଗରୁ ଚାଲିଆସିଥାଏ ତେବେ ସେଣ୍ଡି ଏହାକୁ ଭଲଆଖିରେ ଦେଖିପାରେନା । ସତେ ଯେମିତି ଏ କଥା ଶୁଣିଲାକ୍ଷଣି ତାର ନୀଳଚପଳ ଆଖି ସନ୍ଦେହର ଘନ କୃଷ୍ଣଛାୟାରେ ଭରି ହୋଇଯାଇ ଦୀପ୍ତିହୀନ ଦିଶେ । ଅନ୍ୟ ବିଭାଗରେ କାମ କରୁଥିଲେ ମଧ୍ୟ ମେରିଆ ସେଣ୍ଡିର ସନ୍ଦେହକୁ ଆହୁରି ଘନୀଭୂତ କରିବାକୁ ଚେଷ୍ଟାକରେ ।

ନଉସ୍ପର୍କରୁ ମୋର ଆକସ୍ମିକ ଅନ୍ତର୍ଦ୍ଧାନକୁ ଏକ କୁତ୍ସିତ ରୂପଦେଇ ସେଣ୍ଡିଠାରେ ଏମିତିଭାବରେ ପହଞ୍ଚାଯାଇଛି ଯେ ନଉସ୍ପର୍କ ଆସିବା ସଙ୍ଗେ ସଙ୍ଗେ ସେ କଥାର କିଞ୍ଚିତ୍ ଆଭାସ ପାଇ ମୋର ହୃତ୍‌କମ୍ପ ଜାତହେଲା । ମାତ୍ର ଏ କୁତ୍ସା ରଚନା ମୂଳରେ କାହାର ହାତ ଅଛି, ମୁଁ ଭାବି ଠିକ୍ କରିପାରିଲି ନାହିଁ ।

ସେଣ୍ଟ୍ରାଲ୍ ପାର୍କର ଏକ ଛୋଟିଆ ପୁଷ୍କରିଣୀ କୂଳରେ ପଡ଼ିଥିବା ଖଣ୍ଡିଏ ମୁଗୁନିପଥର ଉପରେ ବସି ଏହିସବୁ କଥା ଭାବିଯାଉଥିଲି । ହଠାତ୍ ନିକଟବର୍ତ୍ତୀ ରାସ୍ତାରେ ଗୋଟିଏ ଘୋଡ଼ାଗାଡ଼ିରେ ଚାଲିଗଲା ମେରିଆ । ଘୋଡ଼ାଗାଡ଼ିରେ ସେ ଥିଲା ଏକା । ମେରିଆକୁ ଧରିପାରିଲେ ପ୍ରକୃତ କଥାଟା ଜଣାପଡ଼ିଯିବ—ଏଇଆ ଭାବି ମୁଁ ମେରିଆ ମେରିଆ ଡାକି ଘୋଡ଼ାଗାଡ଼ି ପଛରେ କିଛିଦୂର ଦୌଡ଼ିଗଲି । ମୋ ଡାକ କିନ୍ତୁ ମେରିଆ କାନରେ ପଡ଼ିବା ପୂର୍ବରୁ ଘୋଡ଼ାଗାଡ଼ିଟି ସେଣ୍ଟ୍ରାଲ୍ ପାର୍କର ସେଇ ସର୍ପିଳ ରାସ୍ତାଦେଇ ବହୁଦୂର ଚାଲି-ଯାଇଥିଲା । ଆଉ ଅନୁଧାବନ ନ କରି ଫେରିଆସୁଛି, ଦେଖିଲି ଅଦୂରରେ ସେଣ୍ଡି ମୋ ଆଡ଼କୁ ଆସୁଛି ଧୀର ପଦକ୍ଷେପରେ ।

ସେଣ୍ଡିକୁ ଦେଖି ମୋ ଛାତି ଦାଉଁକିନା ହୋଇଗଲା । ସେଣ୍ଡିକୁ ହଠାତ୍ ଏମିତି ଭାବରେ ଭେଟିବି ବୋଲି କେବେ କଳ୍ପନା କରିନଥିଲି । କ'ଣ କହିବି, ଭାବି ଭାଷା ପାଇଲିନି । ଏତେ ସମୟ ଧରି ସଞ୍ଚୟ କରିଥିବା ମୋର ସମସ୍ତ ସାହସ ସେଣ୍ଡିକୁ ଦେଖିବା ମାତ୍ରକେ ପାଣିଫୋଟକା ଭଳି ମିଳେଇଗଲା । ସେଣ୍ଡି ଧୀରେ ଧୀରେ ପାଖେଇଆସୁଥିଲା । ତା'ର ମୁଖର ଗାମ୍ଭୀର୍ଯ୍ୟ ଓ ଚାହାଣିର ତୀବ୍ରତା ସୂଚାଇ ଦେଉଥାଏ ତା' ମନ ଭିତରର କୋପ ।

ସେଣ୍ଡି ଖୁବ୍ ନିକଟରେ ପହଞ୍ଚିଲାକ୍ଷଣି ମୋ ପାଟିରୁ ବାହାରିପଡ଼ିଲା—"ଏଇ ସେଣ୍ଡି ଯେ, ହଠାତ୍ ଏଠି—?" ଆଉ କ'ଣ କହିବାକୁ ଯାଉଥିଲି, କହିପାରିନି । ସେଣ୍ଡି ମୋ ଆଡ଼ୁ ମୁହଁ ବୁଲାଇ ମୋତେ ଅତିକ୍ରମକରି ଚାଲିଗଲା । ସେଣ୍ଡି ପଛେ ପଛେ ଅନୁସରଣ କରି କହିଲି—"ସେଣ୍ଡି, ତୁମେ ବୋଧହୁଏ ମୋ ଉପରେ ରାଗିଛ !"

ସେଣ୍ଡି କିଛି ଉତ୍ତର ନଦେଇ ଆଗକୁ ଆଗକୁ ଚାଲିଯାଉଥିଲା । ପୁଣି ତା' ପଛରେ କିଛିଦୂର ଗୋଡ଼ାଇଯାଇ କହିଲି—"ତୁମେ ଯେ ମୋତେ ପୂର୍ବାପର ଭୁଲ ବୁଝିଛ, ଏହା ତୁମର ହାବଭାବରୁ ସ୍ପଷ୍ଟ ବୁଝାପଡ଼ୁଛି ସେଣ୍ଡି !" ତଥାପି ସେ ନିରୁତ୍ତର ।

ଆହୁରି କିଛିଦୂର ଯାଇ କହିଲି, "ତୁମେ ଯଦି ମୋତେ ବିଶ୍ୱାସ କର ସେଣ୍ଡି, ମୁଁ ସ୍ପଷ୍ଟଭାବରେ କହିବି ତୁମେ ମୋତେ ପୂର୍ବାପର ଭୁଲବୁଝିଛ ।"

ମୋ କଥାକୁ କର୍ଣ୍ଣପାତ ନ କରି ସେଣ୍ଟି ସେହିପରି ଆଗକୁ ଚାଲିଯାଉଥାଏ । ଶେଷରେ ମୁଁ ତା ଆଗକୁ ଦୌଡ଼ିଯାଇ ତା ରାସ୍ତା ଓଗାଳି କହିଲି—"ତୁମେ ମୋ କଥା ଟିକିଏ ଶୁଣିବାକୁ ଚେଷ୍ଟାକର ସେଣ୍ଟି ! ଶୁଣିସାରି ଯଦି ରାଗିବ, ସେଥିରେ ମୋର ଆପତ୍ତି ନାହିଁ । ତେବେ ମୋ ଆତ୍ମା ସେଥିରେ ଟିକିଏ ଶାନ୍ତିପାଇବ ।"

ସେଣ୍ଟି ଗତି ବନ୍ଦକରି ଠିଆହେଲା । ଲକ୍ଷ୍ୟ କଲି, ତାର ରୋଷକଷାୟିତ ନୟନ ଆହୁରି କଠୋର ହୋଇଉଠିଛି । ସେ ଟିକିଏ ଚଡ଼ାଗଲାରେ କହିବାକୁ ଆରମ୍ଭ କଲା—"ତୁମେ ଯେତେ କୈଫିୟତ ଦେଲେ ମଧ୍ୟ ଗୋଟିଏ କଥାର ଉତ୍ତର ଦେଇପାରିବନି ରମେଶ ! ତୁମର ଏହି ଆକସ୍ମିକ ଅନ୍ତର୍ଦ୍ଧାନ ସମ୍ବନ୍ଧେ ମୋର ସନ୍ଦେହ ଯଦି ସତ ହୋଇ ନଥାନ୍ତା, ତେବେ ତୁମେ ଏ ଭିତରେ ତୁମର ଅବସ୍ଥିତି କଥା ମୋତେ ନଜଣାଇ ଏଭଳି ପରିସ୍ଥିତି ସୃଷ୍ଟି କରିବାକୁ ଦେଇନଥାନ୍ତ !"

"ମୁଁ ମାନୁଛି ସେଣ୍ଟି; ଯଦି ତୁମେ ଟିକିଏ ମୋ କଥା ଶୁଣନ୍ତ, କେଉଁ ପରିସ୍ଥିତିରେ ପଡ଼ି ମୁଁ ନୀରବ ରହିବାକୁ ବାଧ୍ୟହେଲି; ହୁଏତ ତୁମେ ଏତେ ରାଗନ୍ତ ନାହିଁ । ମୋ ଆକସ୍ମିକ ଅନ୍ତର୍ଦ୍ଧାନ ହେତୁ ଏଭଳି ଏକ ଜଟିଳ ପରିସ୍ଥିତି ଯେ ଉପୁଜିଯାଇଛି, ସେଥିପାଇଁ ମୁଁ ଅତ୍ୟନ୍ତ ଦୁଃଖିତ । ମୋର ଏ ଦୁଇ ସପ୍ତାହ ଧରି ନୀରବତା, ତୁମ ମନରେ ନିଶ୍ଚୟ ଗଭୀର ଦୁଃଖ ଜାତକରିଛି, ଏହା ମୁଁ ସ୍ପଷ୍ଟଭାବରେ ଉପଲବ୍ଧି କରିପାରୁଛି । ତୁମେ ବ୍ୟଥିତ ହୋଇଥିବ ଏ କଥା ଜାଣି ମଧ୍ୟ ମୁଁ ତୁମ ବ୍ୟଥା ଦୂର କରିବାକୁ କ୍ଷମ ହୋଇନି ।

ମୋ ମୁହଁରୁ କଥା ଛଡ଼ାଇନେଇ ସେଣ୍ଟି କହିଲା, "ତୁମେ ଯେ ମୋ ମନର ବ୍ୟଥା ଦୂର କରିବାକୁ ଖାଲି କ୍ଷମ ହୋଇନ—ଚେଷ୍ଟା ମଧ୍ୟ କରିନ ।"

"ତୁମେ ମୋ ଅବସ୍ଥା ଜାଣିବାକୁ ଟିକିଏ ଚେଷ୍ଟା କର ସେଣ୍ଟି, ତା'ପରେ ତୁମେ ମୋତେ ଯେଉଁ ଦୋଷ ଦେବ, ମୁଁ ମାନିବାକୁ ରାଜିଅଛି ।"

ଲକ୍ଷ୍ୟକଲି ସେଣ୍ଟିର ରାଗ ଧୀରେ ଧୀରେ ଶାନ୍ତ ହୋଇଆସୁଥିଲା । ଗମ୍ଭୀର ମୁଖ ତା'ର ପୁଣି ସରସ ହୋଇଆସୁଥିଲା ଶରତର ମେଘବିମୁକ୍ତ ଆକାଶ ଭଳି ।

ସେଣ୍ଟିର ହାତକୁ ଧରି ଜୋର୍‌କରି ନିକଟସ୍ଥ ହ୍ରଦକୂଳରେ ବସାଇଦେଇ କହିଲି—"ମୁଁ ଏତେଦିନ କେଉଁଠି ଥିଲି, ତୁମର ଅନୁମାନ କ'ଣ ଶୁଣେ ସେଣ୍ଟି !"

"ମୋର ଅନୁମାନ ?"

"ହଁ, ଅନୁମାନ, ପୁଣି ତୁମର ।"

"ତା ହେଲେ ତୁମେ କ'ଣ କହିବାକୁ ଚାହଁ, ତୁମେ ଲାସ୍‌ଭେଗାସ୍ ଯାଇନଥିଲ ?"

"ନାଁ, ତା ତ ମୁଁ ଅସ୍ୱୀକାର କରୁନି ।"

"ତେବେ ମୋ ସନ୍ଦେହରେ ଭୁଲ ରହିଲା କେଉଁଠି ?"—ସେଣ୍ଟି ଟିକିଏ ଦର୍ପ ଦେଖାଇ କହିଲା ।

"କିନ୍ତୁ ମୋ ଲାସ୍‌ଭେଗାସ୍ ଯିବା ପଛରେ ତୁମେ ଯେତେସବୁ କଳ୍ପନା କରିପାରିଛ;

ସେସବୁ ଯେ ଠିକ୍ ନୁହେଁ, ଏହା ମୁଁ ଯଦି କହେ ?"

"କିନ୍ତୁ ଉପଯୁକ୍ତ ପ୍ରମାଣ ଦେଇ ପାରିବ ତ ! ଖାଲି କହିଲେ ତ କେହି ବିଶ୍ୱାସ କରିବେନି ତୁମ କଥା ।"

"ମୋ ନାମରେ କୁତ୍ସା ରଟନା ଶୁଣିବା ପରେ ତୁମେ ଯଦି ଟିକିଏ ଭାବିଥାନ୍ତ, ତେବେ ଆଜି ହୁଏତ...."

"ଭାବିବାର ଆବଶ୍ୟକତା ତ ମୁଁ କେଉଁଠି ଦେଖିନି ରମେଶ !"

ସେଣ୍ଡି ର କଥା ଶୁଣି ଚୁପ୍ ରହିଲି । ଭାବିଲି, କେମିତି ମୋର ଅନୁଭୂତିଟା ସତ୍ୟ ବୋଲି ପ୍ରମାଣ କରିବି ଏଠି । ସେଣ୍ଡି ଯଦି ଏହାକୁ ମିଛ ବୋଲି କହି ଉଡ଼ାଇଦିଏ ?

ସେଣ୍ଡି ଆରମ୍ଭ କଲା—"ତୁମେ ଲାସ୍‌ଭେଗାସ୍ ଯିବା ପୂର୍ବଦିନ ଆମର ଏହି ସେଣ୍ଟ୍ରାଲ ପାର୍କରେ କ'ଣ ସିଦ୍ଧାନ୍ତ ହୋଇଥିଲା ମନେ ଅଛି ତ ରମେଶ ? ଆମର ଠିକ୍ ହୋଇଥିଲା ଯେ ଅଧ୍ୟାପକ କାପ୍‌ଲାନ୍ ସେଣ୍ଟଲୁଇ ବୁଲିଯାଉଥିବାରୁ ଆମେ ଦୁହେଁ ସାଙ୍ଗ ହୋଇ ସପ୍ତାହକ ପାଇଁ ଲାସ୍‌ଭେଗାସ୍ ବୁଲିଯିବା । ସେଥିପାଇଁ ଆମର ନିଉୟର୍କର ଆଇଡ୍‌ଲ ଓ୍ୱାଇଲଡ୍ ଉଡ଼ାଜାହାଜଘାଟିରୁ ଲାସ୍‌ଭେଗାସ୍ ଅଭିମୁଖେ ଉଡ଼ାଜାହାଜ ଧରିବା କଥା । କିନ୍ତୁ ସିଦ୍ଧାନ୍ତ ଅନୁଯାୟୀ ମୁଁ ଯିବାଦିନ ସକାଳେ ଆସି ତୁମ ଏପାର୍ଟମେଣ୍ଟରେ ପହଞ୍ଚିଲାବେଳକୁ ତୁମର ପତ୍ତା ନାହିଁ । ତୁମେ ଯଦି ଚାଲିଗଲ ତେବେ ମୋତେ ଫୋନ୍‌ରେ କି ଚିଠିରେ ଜଣାଇଦେବା ଉଚିତ ନଥିଲା କି ତମର ? ତା ଛଡ଼ା...."

ଚୁପ୍ ରହିଗଲା ସେଣ୍ଡି, ସତେ ଯେମିତି ସେ ଆଉ କ'ଣ କହିବାକୁ ଯାଉଥିଲା; କହିପାରିଲାନି ।

ସେଣ୍ଡି କ'ଣ କହିବାକୁ ଚାହୁଁଛି ଜାଣିବା ପାଇଁ ଉତ୍ସୁକ ହୋଇ ତା' ଆଡ଼କୁ ଅନାଇ ରହିଲି । କିଛି ସମୟ ଚୁପ୍ ରହିବାପରେ ପୁଣି ରହି ରହି ଆରମ୍ଭ କଲା—"ତୁମ ଅନ୍ତର୍ଦ୍ଧାନ ସହିତ ନିଉୟର୍କରୁ ଲିଜାର ଅନୁପସ୍ଥିତି ସମ୍ବନ୍ଧରେ ତୁମେ କ'ଣ କୈଫିୟତ ଦେବ ଶୁଣେ ?"

"ଲିଜାର ଅନ୍ତର୍ଦ୍ଧାନ ? କେଉଁ ଲିଜା ? ଲିଜା ସିନ୍‌ଉଇକ୍ ?"

"ସତେ ଯେମିତି ଜାଣିନ କିଛି ? ତୁମ ଭାଗ୍ୟକୁ ମେରିଆ ଏଠି ନାହିଁ । ସେ ତୁମର ଓ ଲିଜାର ମିଳିତ ଅନ୍ତର୍ଦ୍ଧାନ ପଛରେ କି ଗୂଢ଼ ରହସ୍ୟ ଅଛି, ଯେମିତି ଭାବରେ ଉଦ୍‌ଘାଟନ କରିଛି, ଆମେରିକାର କୌଣସି ଗୋଇନ୍ଦା ପୋଲିସ୍ ବି ଏପରି ଆବିଷ୍କାର କରିପାରି ନ ଥିବ !"

"ବାଃ, ବେଶ୍ ମଜା ତ ! ଟିକିଏ କହିବ କି ସେଣ୍ଡି ! ମେରିଆର ସେହି ରହସ୍ୟପୂର୍ଣ୍ଣ ଆବିଷ୍କାର କଥା । ତାର ଆବିଷ୍କାର କ'ଣ ଲିଜା ଓ ମୋ ବିଷୟରେ ?"

"ମୋ ମୁହଁରୁ ଶୁଣିବା ଅପେକ୍ଷା ତା ମୁହଁରୁ ଶୁଣିଲେ ଭଲହୁଆନ୍ତା ରମେଶ !"

"କିନ୍ତୁ ମେରିଆ ଯେତେବେଳେ ଏଠି ନାହିଁ, ତୁମ ମୁହଁରୁ ଶୁଣିଲେ କିଛି କ୍ଷତି ନାହିଁ

ସେଣ୍ଟି ! ବେଶ୍ ଆମୋଦ ଲାଗିବ ମୋତେ ଶୁଣିବାକୁ ।"

"ନିଜକୁ ଏତେ ନିର୍ଦ୍ଦୋଷ ବୋଲି ଦେଖାଅନି ରମେଶ ! ପ୍ରମାଣ ଦେଇ ନପାରିଲେ ତୁମ କଥାକୁ ଏଠି ବିଶ୍ୱାସ କରିବାକୁ ଜଣେ ସୁଦ୍ଧା ବାହାରିବେ ନାହିଁ ।"

"ମୋ ଦୋଷଟା ଆଗେ ଶୁଣେ, ପରେ ପ୍ରମାଣ ଦେଇପାରିବି କି ନା ସେ କଥା ପଡ଼ିବ ।"

"ହେଉ ଶୁଣ, ଜୁନ ମାସ ବାଇଶି ତାରିଖ, ସକାଳ ନ'ଟା ସମୟରେ ତୁମେ ଓ ଲିଜା ନିଉୟର୍କର ଆଇଡ଼ଲ୍‌ଓ୍ୱାଇଲଡ଼ ଉଡ଼ାଜାହାଜଘାଟୀରୁ ପୂର୍ବ ନିର୍ଦ୍ଧାରିତ ଲାସ୍‌ଭେଗାସ୍ ଅଭିମୁଖେ ଉଡ଼ାଜାହାଜ ନ ଧରି ନିଉୟର୍କର ଲାଗୁଆଡ଼ିଆ ଉଡ଼ାଜାହାଜଘାଟୀରୁ ଉଡ଼ାଜାହାଜ ଧରିଥିଲ ନିଉମେକ୍‌ସିକୋ ରାଜ୍ୟର ରାଜଧାନୀ ସାଣ୍ଟାଫେ ସହର ଅଭିମୁଖେ । ସାଣ୍ଟାଫେରେ ତୁମେ ଦୁହେଁ ଲିଜାର ସାବତ ମା' ପାଖରେ ଦିନଟାଏ ଥିଲ । ସେଠାରୁ ତୁମେ ବସଯୋଗେ ଗଲ ଲାସ୍‌ଭେଗାସ୍ ଅଭିମୁଖେ । ନିଉମେକ୍‌ସିକୋ ରାଜ୍ୟର ଲାସ୍‌ଭେଗାସ୍ ନୁହେଁ ; ନେଭେଡ଼ା ରାଜ୍ୟର ସୁପ୍ରସିଦ୍ଧ ଲାସ୍‌ଭେଗାସ୍ ସହର । ଲାସ୍‌ଭେଗାସ୍‌ର ପ୍ରସିଦ୍ଧ ହୋଟେଲ ସାହାରାରେ ତୁମେ ଓ ଲିଜା କିଛିଦିନ ଅବସ୍ଥାନ କରିଥିଲ। ସେଠି ତୁମେ ଲିଜାକୁ ବିବାହକରି ସେହି ହୋଟେଲରେ କିଛିଦିନ ସ୍ୱାମୀ ସ୍ତ୍ରୀ ଭାବରେ କଟାଇଥିଲ । ଆଭିଜାତ୍ୟଭରା ହୋଟେଲ ସାହାରାରେ ତୁମର ପ୍ରଥମ ମଧୁଯାମିନୀ କଟିଥିଲା । ଲାସ୍‌ଭେଗାସ୍‌ର ବୈଚିତ୍ର୍ୟପୂର୍ଣ୍ଣ ଆବହାଓ୍ୱା ଭିତରେ ତୁମେ ଦୁହେଁ ଜୀବନର ବହୁ କିଛି ଆସ୍ୱାଦ ଉପଭୋଗ କରି ଫେରିଲାବେଳେ ତୁମେ ଦୁହେଁ ପରସ୍ପରକୁ ଛାଡ଼ପତ୍ର ଦେଇ ଯେଉଁ କୁମାର କୁମାରୀ ଥିଲ, ଠିକ୍ ସେଇ ଭାବରେ ନିଉୟର୍କକୁ ଫେରିଆସିଲ । ଲିଜା ଲାସ୍‌ଭେଗାସ୍‌ରେ ମିସେସ୍ ଚୌଧୁରୀ ଭାବରେ ଯେ କିଛିଦିନ ଅବସ୍ଥାନ କରୁଥିଲା, ଏଠାରେ ଆମ କାହାରି ସେଥିରେ ସନ୍ଦେହ ନାହିଁ । ଲିଜା ନିଉୟର୍କକୁ ଫେରିଆସିଥିବା କଥା ଆଜି ସକାଳେ ଶୁଣିଲୁ । ତୁମକୁ ହଠାତ୍ ସେଣ୍ଟ୍ରାଲ ପାର୍କରେ ଦେଖି ମେରିଆକୁ ପଠାଇଛୁ ଲିଜା ଘରକୁ ପ୍ରକୃତ କଥା ଜାଣିବା ପାଇଁ ।"

"ଓଃ, ତାହେଲେ ମୋ ବିରୁଦ୍ଧରେ ଗୋଟାଏ ବିରାଟ ଏଫ୍. ବି. ଆଇ. ଅନୁସନ୍ଧାନ ଚାଲିଛି ଏଠି ! ମୋ ସମ୍ବନ୍ଧରେ ତୁମେମାନେ କେତେ କ'ଣ ଭାବିସାରିଛ ଓ ବିରାଟ କଳନା ସବୁ ଯେ ଗଢ଼ିତୋଳିଛ, ଶୁଣିଲାବେଳୁ ଭାବୁଛି ଯେ ତୁମମାନଙ୍କ ଭିତରୁ ପ୍ରତ୍ୟେକେ ଜଣେ ଜଣେ ବଡ଼ଧରଣର ଔପନ୍ୟାସିକ ହୋଇଯାଇନାହଁ କେମିତ ?"

ସେଣ୍ଟି ଆଉ ମୁଁ ସେଣ୍ଟ୍ରାଲ ପାର୍କର ସେହି ପୁଷ୍କରିଣୀକୂଳରେ ବସି କଥାବାର୍ତ୍ତା ହେଉଥିବାବେଳେ, ହଠାତ୍ ଗୋଟିଏ କାର୍ ପ୍ରଧାନ ରାସ୍ତାରୁ ଗଡ଼ି ପୁଷ୍କରିଣୀ ଆଡ଼କୁ ଆସିଲା । ଗାଡ଼ିଟି କିଛିଦୂର ଆସି ଠିଆହେଲା । ସେଥିରୁ ଓହ୍ଲାଇଲେ ମେରିଆ ଓ ଲିଜା । ସେମାନଙ୍କୁ ଦେଖି ସେଣ୍ଟି ଦୌଡ଼ିଗଲା ସେମାନଙ୍କୁ ପାଛୋଟି ଆଣିବା ପାଇଁ । ସେଣ୍ଟିର ପିଲାଳିଆ ଭାବ ଦେଖି ମୁଁ ମନେ ମନେ ହସୁଥାଏ । ସାମାନ୍ୟ ଏକ ମିଛ ଗୁଜବ୍‌ରେ ସେଣ୍ଟି କେତେଦୂର

ଯେ ଭାବିଯାଇପାରେ ଦେଖି ଖାଲି ଆଶ୍ଚର୍ଯ୍ୟ ହେଉଥିଲି ତା ନୁହେଁ; ତା' ଭାବପ୍ରବଣତାର ସୁବିଧା ନେଇ କେତେ ଲୋକ ଯେ ତାକୁ ପ୍ରତାରଣା କରିପାରନ୍ତି ଭାବି ବିସ୍ମିତ ହେଉଥିଲି ।

ମୋର ଚନ୍ଦ୍ରାସ୍ପୃହ ଛଦ୍ମନ୍ଧକରି ହଠାତ୍ ମେରିଆ, ସେଣ୍ଟି ଓ ଲିଜା ମୋ ନିକଟରେ ଆସି ହାଜର ହୋଇଗଲେ । ମେରିଆ ଆଗେଇଆସି ମୋ ହାତ ଧରିପକାଇ କହିଲା, "କ୍ଷମା କରିବ ରମେଶ, ଆମେ ଏକ ଭୁଲ୍ ଖବରରେ ପ୍ରତାରିତ ହୋଇ ତୁମ ସମ୍ବନ୍ଧରେ କେତେ କ'ଣ ଭାବିଯାଇଛୁ ଓ ସେଥିପାଇଁ ମୁଁ ବଡ ଦୁଃଖିତ ଓ ଲଜ୍ଜିତ; ସେଣ୍ଟି ମଧ୍ୟ ।"

"ହଁ ରମେଶ, ମୁଁ ବଡ଼ ଦୁଃଖିତ ଓ ଲଜ୍ଜିତ ମଧ୍ୟ—" ସେଣ୍ଟି ମୋ ହାତ ଧରିପକାଇ କହିଲା, "ମୁଁ ତୁମକୁ ଯେଉଁ ଦୋଷ ଦେଇଥିଲି, ତା' ନିହାତ ଅମୂଳକ । ତୁମ ସମ୍ପର୍କରେ ଏମିତି ଏକ କୁତ୍ସିତ କଳ୍ପନା କରିଥିବାରୁ ମୁଁ ଖୁବ୍ ମର୍ମାହତ । ମୋତେ କ୍ଷମା କରିବ ରମେଶ !"

ଆମ କଥାବାର୍ତ୍ତାର ଢଙ୍ଗଢାଙ୍ଗ ଦେଖି ଚକିତ ହେଉଥିଲା ବିଚାରି ଲିଜା । ଏହା ଭିତରେ ଏମିତି କ'ଣ ଘଟିଗଲା, ଯାହାପାଇଁକି ଏତେଗୁଡ଼ାଏ କ୍ଷମା ଓ ହାତଧରାଧରି ଚାଲିଛି ଦେଖି ସେ ପୂରାପୂରି କାଠ ହୋଇଗଲାଣି । ସେ ବେଳେବେଳେ ମୋ ମୁହଁକୁ ଓ ବେଳେ-ବେଳେ ମେରିଆ ଓ ସେଣ୍ଟି ମୁହଁକୁ ବଲବଲ କରି ଅନାଉଥିଲା, ଯେମିତିକି ସେ କିଛି ବୁଝିପାରୁନି ଆମ କାହାରି କଥା ।

ସେଣ୍ଟିର ସନ୍ଦେହ ଦୂରକରିବା ପାଇଁ ମୁଁ ସେମାନଙ୍କୁ ବସିବାକୁ ଅନୁରୋଧ କଲି । ସମସ୍ତେ ବସିସାରିବା ପରେ ଆରମ୍ଭ କଲି—"ମୁଁ ଗତ ପନ୍ଦରଦିନ ଧରି କାହିଁକି, କେମିତି ଓ କେଉଁ ପରିସ୍ଥିତିରେ ଅନ୍ତର୍ହିତ ହେଲି ତୁମ୍ଭେମାନେ ଶୁଣିଲେ ବିସ୍ମିତ ହେବ । ମୋ ଅନ୍ତର୍ଦ୍ଧାନ ପଛରେ ଏତେବଡ଼ ରହସ୍ୟ ଯେ ଥାଇପାରେ, ହୁଏତ ତୁମେମାନେ କଳ୍ପନା କରିନଥିବ । ମୋ ନିରୁଦ୍ଦିଷ୍ଟ ରହସ୍ୟ ନେଇ ଆଜ ତୁମମାନଙ୍କୁ ଯେଉଁ କଥା କହିବି, ତୁମେମାନେ ତ ବିଶ୍ୱାସ କରିପାରିବନି, ଏତେ ବଡ ନିଉୟର୍କ ନଗରୀରେ ଲୋକଟିଏ ମଧ୍ୟ ପାଇବ କି ନାହିଁ ସନ୍ଦେହ; ଯେ କି ମୋ କଥାକୁ ବିଶ୍ୱାସ କରିପାରିବ ।"

ତିନିହେଁ ମୋ ମୁହଁକୁ ଉତ୍କଣ୍ଠାର ସହିତ ଅନାଇରହିଲେ କ'ଣ କହିବି ଶୁଣିବା ପାଇଁ ।

"ଜୁନ୍ ମାସ ବାଇଶି ତାରିଖ । ସେଦିନ ମୁଁ ଆଉ ସେଣ୍ଟି ଆଇଡ୍‌ଲଓ୍ୱାଇଲ୍ଡ ଉଡ଼ାଜାହାଜଘାଟିରୁ ନେଭେଦାର ଲାସ୍‌ଭେଗାସ୍ ସହର ଉଦ୍ଦେଶ୍ୟରେ ଯିବା ଠିକ୍ ହୋଇଥାଏ । ଏହି ସେଇ ପାର୍କ; ଯେଉଁଠି ଆମେ ତା' ପୂର୍ବଦିନ ସନ୍ଧ୍ୟାରେ ବସି ଆମ ପ୍ରୋଗ୍ରାମର ଟିକିନିଖି ଯୋଜନା ତିଆରି କରିଥିଲୁ । ଆମ ରହିବା ପାଇଁ ହୋଟେଲ ସାହାରାରେ ଦୁଇଟି କୋଠରି ରିଜର୍ଭ ହୋଇଥାଏ । ସନ୍ଧ୍ୟା ସମୟରେ ପ୍ରୋଗ୍ରାମ କରିସାରି ବସାକୁ ଫେରୁଛି, ହଠାତ୍ ଟେଲିଗ୍ରାମ୍ ପାଇଲି, ନିଉମେକ୍‌ସିକୋ ରାଜ୍ୟରେ ବାସକରୁଥିବା ମୋର ବନ୍ଧୁ ମିଷ୍ଟର ଭେଙ୍କଟରମଣ ନିରୁଦ୍ଦିଷ୍ଟ । ଗତ ଦୁଇ ତିନି ଦିନ ଧରି ତାଙ୍କର

ଖୋଜଖବର ନାହିଁ । ଏ କଥା ଭେଙ୍କଟରମଣଙ୍କ ଜନୈକ ବନ୍ଧୁ ମୋଠାକୁ ତାର କରି ଜଣାଇଥାନ୍ତି ସାଣ୍ଟାଫେ ସହରରୁ ।

"ଆମେରିକାରେ ମୋର ଯେତେ ଅନ୍ତରଙ୍ଗ ଭାରତୀୟ ବନ୍ଧୁ ଥିଲେ, ସେମାନଙ୍କ ଭିତରେ ଏହି ଭେଙ୍କଟରମଣ ହିଁ ଥିଲା ମୋର ସବୁଠାରୁ ବଡ଼ ଅନ୍ତରଙ୍ଗ । ଆମେ ଦୁହେଁ ସାଥି ହୋଇ ଭାରତବର୍ଷରୁ ଏଠାକୁ ଆସିଥିଲୁ ଉଚ୍ଚଶିକ୍ଷା ପାଇଁ । ମୁଁ ଯୋଗଦେଲି କଲମ୍ବିଆ ବିଶ୍ୱବିଦ୍ୟାଳୟରେ, ବନ୍ଧୁ ମୋର ଯୋଗ ଦେଲେ ନିଉମେକ୍ସିକୋ ରାଜ୍ୟସ୍ଥ ସାଣ୍ଟାଫେ ବିଶ୍ୱବିଦ୍ୟାଳୟରେ । ଆମେ ଦୁହେଁ ପରସ୍ପରଠାରୁ ବହୁ ଦୂରରେ ଥିଲେହେଁ ଆମ ଭିତରର ଅନ୍ତରଙ୍ଗତା ଏତେ ନିବିଡ଼ ଥିଲା ଯେ ଆମେ ଉପଲବ୍ଧି କରିପାରୁ ନ ଥିଲୁଁ ଆମେ ପରସ୍ପରଠାରୁ ଏତେ ଦୂରରେ ଅଛୁ ବୋଲି । ପ୍ରତି ସପ୍ତାହରେ ଆମେ ପରସ୍ପରକୁ ପତ୍ର ନଲେଖି ରହିପାରୁ ନଥିଲୁଁ । ସାଣ୍ଟାଫେ ବିଶ୍ୱବିଦ୍ୟାଳୟରେ ବନ୍ଧୁ ଯୋଗଦେଲେ ଭାଷା ବିଭାଗରେ । ଭେଙ୍କଟରମଣ ସଂସ୍କୃତ ଭାଷାରେ ଖୁବ୍ ପାରଙ୍ଗମ । ସେ ମୋ ପିତାମହଙ୍କ ପ୍ରିୟ ଛାତ୍ରଭାବରେ ବନାରସରେ ପ୍ରସିଦ୍ଧିଲାଭ କରିଥିଲେ । ବନାରସରେ ସଂସ୍କୃତ ଭାଷାରେ ଯେତେ ବଡ଼ ବଡ଼ ପଣ୍ଡିତ ଜୀବିତ ଅଛନ୍ତି, ସେମାନଙ୍କ ମଧ୍ୟରେ ମୋ ପିତାମହ ଅଗ୍ରଗଣ୍ୟ । ସଂସ୍କୃତ ଭାଷା ବିଶେଷତଃ ବୈଦିକଯୁଗର ସଂସ୍କୃତ ଭାଷାରେ ସେ ସାରା ପୃଥିବୀରେ ଜଣେ ଅଦ୍ୱିତୀୟ ବିଶେଷଜ୍ଞ ଭାବରେ ପରିଗଣିତ ହୁଅନ୍ତି । ଆମ ହିନ୍ଦୁଧର୍ମର ପ୍ରଧାନ ଧର୍ମଗ୍ରନ୍ଥ 'ବେଦ' ଉପରେ ଯଦି କାହାର ପୂରାପୂରି ଦଖଲ ଅଛି, ତେବେ ସେ ହେଉଛନ୍ତି ମୋ ପିତାମହ । ତାଙ୍କ ଲିଖିତ ବହୁ ସଂସ୍କୃତ ଗ୍ରନ୍ଥ ଏବେ ବି ଡୁମର ହାରଭାର୍ଡ, ଚିକାଗୋ ଆଦି ବିଶ୍ୱବିଦ୍ୟାଳୟରେ ପଢ଼ାହେଉଛି । ମୋ ବାପା ମଧ୍ୟ ସଂସ୍କୃତରେ ଖୁବ୍ ପାରଙ୍ଗମ । ବେଦାନ୍ତଶାସ୍ତ୍ରରେ ତାଙ୍କ ସମକକ୍ଷ ହେବାପାଇଁ ସାରା ଭାରତରେ କେହି ନାହିଁ । ମୁଁ କେବଳ ସେଇ ପଥରୁ ଖସିଆସି ଉଦ୍ଭିଦ ବିଜ୍ଞାନରେ ପଶିଯାଉଛି; ନୋହିଲେ ସଂସ୍କୃତ ଆମ ବଂଶ-ପରମ୍ପରାର ପାରିବାରିକ ଚର୍ଚ୍ଚା । ବନ୍ଧୁ ଭେଙ୍କଟରମଣ ମୋ ପିତାଙ୍କର ମଧ୍ୟ ପ୍ରିୟ ଶିଷ୍ୟ । ତାଙ୍କର ତତ୍ତ୍ୱାବଧାନରେ ଗବେଷଣା କରି ପିଏଇଚ. ଡି. ପାଇବାପରେ ଆମେରିକା ଆସିଥିଲେ ପୋଷ୍ଟଡକ୍ଟରେଟ୍ ଗବେଷକ ନିଯୁକ୍ତି ପାଇ । ଭେଙ୍କଟରମଣଙ୍କ ପ୍ରତିଭାକୁ ଖାଲି ବାପା ଯେ ପ୍ରଶଂସା କରନ୍ତି ତା' ନୁହେଁ, ଜେଜେବାପା ମଧ୍ୟ ଖୁବ୍ ପସନ୍ଦ କରନ୍ତି । ତାଙ୍କ ମତରେ ଏହିଭଳି କେତୋଟି ଛାତ୍ର ଥିଲେ ସଂସ୍କୃତ ଭାଷାର ଅବନତି ଘଟିବନି ଆମ ଦେଶରେ ।"

"ବନ୍ଧୁ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ ଖବର ପାଇ ମୁଁ ଯେ କ'ଣ କରିବି କିଛି ଠିକ୍ କରିପାରିଲିନି । ଆମେରିକା ଭଳି ଏଡ଼େ ସୁସଭ୍ୟ ରାଜ୍ୟରେ ବନ୍ଧୁଙ୍କର ଅନ୍ତର୍ଦ୍ଧାନ ମୋତେ ବିଚିତ୍ର ବୋଧହେଲା । ମୁଁ ସଙ୍ଗେ ସଙ୍ଗେ ଠିକ୍‌କଲି ଯେ ମୋର ସାଣ୍ଟାଫେ ଯିବା ଉଚିତ । ସେଠାରେ ବନ୍ଧୁଙ୍କର ଖୋଜଖବରକରି କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିବା ବାଞ୍ଛନୀୟ । ତେଣୁ ଲାସ୍‌ଭେଗାସ୍ ପ୍ରୋଗ୍ରାମକୁ ସ୍ଥଗିତ ରଖିବା ଛଡ଼ା ଅନ୍ୟ କିଛି ଉପାୟ ନଥିଲା ।

ସେତେବେଳେ ମୁଁ ଫୋନ୍ ଧରିଲି ତୁମ ଘରକୁ ସେଣ୍ଟି ।"

"କିନ୍ତୁ ମୁଁ ତ ତୁମ ଫୋନ୍ ପାଇନି ରମେଶ !" ସେଣ୍ଟି ଉତ୍ତର ଦେଲି ।

"ମୁଁ ଯେତେବେଳେ ତୁମକୁ ଫୋନ୍ କଲି, ତୁମ ଘରେ କେହି ନଥିଲେ । ଡିକ୍ଟୋଫୋନ୍ ମୋତେ ଜଣାଇଦେଲା ତୁମ ବାପା ଓ ମା' ଯାଇଛନ୍ତି ରେଡ଼ିଓସିଟି ମିଉଜିକ୍ ହଲ୍‌କୁ ସିନେମା ଦେଖି, ତୁମେ ଯାଇଛ ମେରିଆ ଘରକୁ ।"

"ମେରିଆ ଘରକୁ ଫୋନ୍ କରିବା ପାଇଁ ଡିକ୍ଟୋଫୋନ୍ ତ ତୁମକୁ ନିଶ୍ଚୟ ନିର୍ଦ୍ଦେଶ ଦେଇଥିବ, ସେଥିସହି ମେରିଆର ଫୋନ୍ ନମ୍ବର ବ ?"

"ମେରିଆ ଫୋନ୍ ନମ୍ବର ଯେ ମୋତେ ଅଜଣାଥିଲା ତା ନୁହେଁ, ଡିକ୍ଟୋଫୋନ୍ ନମ୍ବରକୁ ଅପେକ୍ଷା ନକରି ମୁଁ ସଙ୍ଗେ ସଙ୍ଗେ ମେରିଆ ଘରକୁ ଫୋନ୍‌କଲି, ଫୋନ୍ ସେତେବେଳେ ଏନ୍‌ଗେଜେଡ୍ ଥିଲା ।"

"ପରେ ତ ପୁଣି ଫୋନ୍ କରିପାରିଥାନ୍ତ ?"

"କିନ୍ତୁ ମୋର ସେତେବେଳେ ମନର ଯେଉଁ ଅବସ୍ଥା, ଆଉ ଥରେ ମେରିଆ ଘରକୁ ଫୋନ୍ କରିବା କି ତୁମ ଡିକ୍ଟୋଫୋନ୍‌ଠାରେ ବାର୍ତ୍ତା ରଖିଦେଇ ଯିବା କଥା ମୋ ମୁଣ୍ଡରେ ପଶି ନଥିଲା । ସେହି ସନ୍ଧ୍ୟାଠାରୁ ପରଦିନ ସକାଳ ପର୍ଯ୍ୟନ୍ତ ବନ୍ଧୁଙ୍କର ନିରୁଦ୍ଦିଷ୍ଟ କଥାହିଁ ଖାଲି ଭାବୁଥିଲି । ବନ୍ଧୁଙ୍କର ଅନ୍ତର୍ଦ୍ଧାନ ନେଇ ଯେତେପ୍ରକାର ସମ୍ଭାବ୍ୟ ଥାଇପାରେ, ସବୁଗୁଡ଼ିକ ଆଲୋଚନା ଓ ପର୍ଯ୍ୟାଲୋଚନା କରୁଁ କରୁଁ କେତେବେଳେ ଯେ ରାତି ପାହିଗଲା, ଜାଣି ପାରିଲିନି ।"

"ତହିଁଆରଦିନ ସକାଳ । ଗତ ରାତିରୁ ସାଣ୍ଟାଫେ ଯିବା ଉଡ଼ାଜାହାଜର ସମୟ ଓ ନମ୍ବର ସବୁ ଫୋନ୍‌କରି ଜାଣିରଖିଥିଲି । ସକାଳ ଛ'ଟାରେ ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟିରୁ ଉଡ଼ାଜାହାଜ ସାଣ୍ଟାଫେ ଛାଡ଼ିବ ବୋଲି ସଅଳ ସଅଳ ବାହାରି ପଡ଼ିଲି । ବସ୍‌ଯୋଗେ ଲାଗୁଆର୍ଡ଼ିଆ ଏଆରପୋର୍ଟକୁ ଯିବା ପାଇଁ ଏପାର୍ଟମେଣ୍ଟରୁ ସିଧା-ସଳଖ ବାହାରିଲି ବ୍ରଡ଼ୱେ ଓ ୪୮ ନମ୍ବର ଷ୍ଟ୍ରୀଟ୍ ଛକକୁ । ସେଠାରୁ ବସ୍ ଧରି ମୁଁ ଲାଗୁଆର୍ଡ଼ିଆ ଏଆରପୋର୍ଟ ଅଭିମୁଖେ ଯିବି । ଏପାର୍ଟମେଣ୍ଟରୁ ବାହାରି ଅଷ୍ଟମ ଏଭିନିଉରେ କିଛି ଦୂର ଆଗେଇଛି, ହଠାତ୍ ଦେଖାହେଲା ଲିଜା ସହିତ । ଲିଜା ଯାଉଥିଲା ସାଣ୍ଟାଫେ ତା ନିଜ ବାପାଙ୍କ ପାଖକୁ । ଲିଜାର ସାବତବାପା ତାକୁ ଉଡ଼ାଜାହାଜଘାଟି ପର୍ଯ୍ୟନ୍ତ ପହଞ୍ଚାଇଦେବାକୁ ଯାଉଥିଲେ ।"

"ଲିଜା ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟି ଅଭିମୁଖେ ଯାଉଛି ଶୁଣି ମନ ଖୁସି ହୋଇଗଲା । ଯେତେବେଳେ ସେ ଜାଣିଲା ଯେ ମୁଁ ବି ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟିକୁ ଯାଉଛି ସେ ଗାଡ଼ି ବନ୍ଦକରି ଗାଡ଼ିର ସାମନା ଦରଜା ଖୋଲି ମୋତେ ଗାଡ଼ି ଭିତରକୁ ଯିବାପାଇଁ ଅନୁରୋଧ ଜଣାଇଲା । ଲିଜା ଗାଡ଼ି ଚଳାଉଥିଲା, ତା' ବାପା ପଛସିଟ୍‌ରେ ବସିଥିଲେ । ତା' ବାପାଙ୍କୁ ମୁଁ ନମସ୍କାର ଜଣାଇ ଲିଜା ପାଖସିଟ୍‌ରେ ବସିଲି । ଆମ ଗାଡ଼ି

ବ୍ରଡ଼ୱେରୁ ବାହାର ମୁହାଁଇଲି ବ୍ରଞ୍ଚ୍ ଆଡ଼େ । ସେଠାରୁ ଏହା ବ୍ରୁକ୍ଲିନ୍ ଦେଇ ଯିବ ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟୀକୁ ।”

“ଆମେ ବ୍ରଞ୍ଚ ଅତିକ୍ରମ କରି ବ୍ରୁକ୍ଲିନ୍ ଭିତରକୁ ପଶୁଛୁଁ—ଟ୍ରାଇବରୋ ପୋଲ ଉପରେ ଟ୍ରାଫିକ ଗହଳି ହୋଇଗଲା; ତେଣୁ ଖୁବ ଧୀରେ ଧୀରେ ଗାଡ଼ି ଚଲାଇବାକୁ ପଡ଼ିଲା ଲିଜାକୁ । ଠିକ୍ ସେତିକିବେଳେ ଆମ ବିପରୀତ ଦିଗରୁ ଧୀରେ ଧୀରେ ଗାଡ଼ି ଚଲାଇ ଆସୁଥିଲା ଜେମ୍ସ । ଜେମ୍ସକୁ ମୁଁ ଡାକିବାକୁ ଚେଷ୍ଟାକଲି । ଭାବିଥିଲି ତା’ର ହାତରେ ମୋ ନିଉୟର୍କ ଛାଡ଼ିବା ଖବର ତୁମଠାକୁ ପଠାଇଦେଇଥାନ୍ତି । ସେ ମୋ ଡାକ ନ ଶୁଣି ଗାଡ଼ି କଟାଇନେଇ ଚାଲିଗଲା; ଆମଆଡ଼କୁ ଟିକିଏ ବି ଅନାଇଲାନି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମୋତେ ! ଜେମ୍ସ ଆମକୁ ଦେଖି ନାହିଁକି କିଛି ନପଚାରି ଚାଲିଗଲା, ମୁଁ କି ଲିଜା କେହି କିଛି ବୁଝିପାରିଲୁ ନାହିଁ । ସମ୍ଭବତଃ ସେ ଆମ ସହିତ କିଛି କଥାବାର୍ତ୍ତା ହେବାକୁ ଚାହୁଁ ନଥିଲା । ତା’ ପାଖକୁ ଲାଗି ବସିଥିବା ତାର ଗାର୍ଲଫ୍ରେଣ୍ଡ ସହିତ ଆମେ କାଳେ ପରିଚିତ ହୋଇଯିବୁ ସେଇ ଭୟରେ ବୋଧହୁଏ ସେ ଆମଠାରୁ ଦୂରେଇ ଯିବାକୁ ଚାହୁଁଥିଲା ।”

“ଏଁ, ଜେମ୍ସର ଗାର୍ଲଫ୍ରେଣ୍ଡ ?”—ମେରିଆ ଚମକିପଡ଼ିଲା । “ପୁଣି ଜେମ୍ସ ସହିତ ଗାଡ଼ିରେ ?”—ଆଉ କହି ପାରିଲା ନାହିଁ ମେରିଆ । ରାଗରେ ସେ ଏତେ ତମତମ ହୋଇଯାଇଥିଲା ଯେ ତା ପାଟିରୁ କିଛି ଭାଷା ବାହାରୁନଥିଲା ।

“ଜେମ୍ସ ସହିତ ତୋର ତ ଏନଗେଜ୍‌ମେଣ୍ଟ ଆରମ୍ଭ ହୋଇଯାଇଛି ମେରିଆ ! ଏଭଳି ଅବସ୍ଥାରେ···ସେ”—ଆଉ ପଚାରି ପାରିଲାନି ହେଣ୍ଡି ।

“ସେହି ତ ମୋତେ ଆସି ଲିଜା ଓ ରମେଶ ଲାସ୍‌ଭେଗାସ୍ ଅଭିମୁଖେ ଯାଉଥିବା କଥା କହିଥିଲା । ଲିଜା ଚଲାଉଥିବା ଗାଡ଼ିରେ ସେମାନେ ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟୀ ଅଭିମୁଖେ ଯାଉଥିବା ସେ ନିଜେ ଦେଖିଛି ବୋଲି ଯେତେବେଳେ କହିଲା, ମୋର ଆଉ ସନ୍ଦେହ କରିବାର କିଛି ନଥିଲା । ଲାସ୍‌ଭେଗାସ୍‌ରେ ସେମାନେ କେଉଁଠି ରହିବେ, କ’ଣ କରିବେ, ସବୁ କିଛି କଳ୍ପନା ତାର । ତାର କଥାକୁ ବିଶ୍ୱାସ କରି ମୁଁ ତୋତେ ସବୁ ଭୁଲ ଖବର ଦେଇଥିଲି ହେଣ୍ଡି ! ମୁଁ ବଡ଼ ଦୁଃଖିତ; ଜେମ୍ସ ନିଜେ ଏତେ କାଣ୍ଡକରି ନିର୍ଦ୍ଦୋଷ ରମେଶ ମୁଣ୍ଡରେ ଏତେଗୁଡ଼ାଏ ଅଠା ବୋଳି ଦେଇପାରିଲା ।”

ମୁଁ ପୁଣି କହିଚାଲିଲି—“ଆମେ ଲାଗୁଆର୍ଡ଼ିଆ ଉଡ଼ାଜାହାଜଘାଟୀରେ ପହଞ୍ଚିଲାବେଳକୁ ସାଣ୍ଟାଫେ ଅଭିମୁଖେ ଉଡ଼ାଜାହାଜ ଛାଡ଼ିବା ଉପରେ । ତେଣୁ ତରତରରେ ଲିଜାର ପିତାଙ୍କଠାରୁ ବିଦାୟ ନେଇ ଉଡ଼ାଜାହାଜରେ ବସିଲୁ । ଟିକେଟ କରିବାକୁ ଆମର ବେଳ ନଥିଲା । ଉଡ଼ାଜାହାଜରେ ବସିସାରିଲେ ଟିକେଟ କରିବୁ ବୋଲି ଏୟାରହୋଷ୍ଟେସଙ୍କୁ ଜଣାଇଦେଲୁ । ଠିକ୍ ସମୟରେ ଆମେ ସାଣ୍ଟାଫେରେ ପହଞ୍ଚିଗଲୁ । ଲିଜାକୁ ନେବାପାଇଁ ତା ନିଜର ବାପା ଓ ସାବତମା’ ଉଡ଼ାଜାହାଜଘାଟୀକୁ ଆସିଥିଲେ । ଲିଜାଠାରୁ ବିଦାୟନେଇ

ମୁଁ ବାହାରିଥିଲି ମୋ ବନ୍ଧୁଙ୍କ ଏପାର୍ଟମେଣ୍ଟ ଅଭିମୁଖେ । ଭେଙ୍କଟରମଣଙ୍କ ବନ୍ଧୁ ସତ୍ୟେଶ ମୁଖାର୍ଜୀ ଯେ କି ମୋଠାକୁ ତାରବାର୍ତ୍ତା ପଠାଇଥିଲେ, ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ ନେଇ ତାଙ୍କୁ ପ୍ରଥମେ ଭେଟିବା ପାଇଁ ଠିକ୍‌କଲି । ତେଣୁ ଭେଙ୍କଟରମଣଙ୍କ ବାସଭବନଆଡ଼େ ନଯାଇ ମୁଖାର୍ଜୀଙ୍କ ଏପାର୍ଟମେଣ୍ଟଆଡ଼େ ଟେକ୍‌ସି ଚଲାଇବାକୁ କହିଲି ।

ସତ୍ୟେଶ ମୁଖାର୍ଜୀଙ୍କ ସହ ଦୁଇଘଣ୍ଟା ଆଲୋଚନା ପରେ ବି ବନ୍ଧୁ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନର କିଛି କୂଳକିନାରା ପାଇଲିନି । ମୁଖାର୍ଜୀଙ୍କଠାରୁ ଯାହା ଇସାରା ପାଇଲି ସେଥିରୁ ଜଣାପଡୁଥିଲା ହୁଏତ ବନ୍ଧୁଙ୍କୁ ହରଣଚାଲ କରିନିଆଯାଇଛି । ବନ୍ଧୁ ନିଜର ଗୁପ୍ତ ପ୍ରଣୟରେ ଲିପ୍ତହୋଇ ପ୍ରେମିକାଙ୍କୁ ଧରି କେଉଁଆଡ଼େ ସାମୟିକ ପଳାୟନର ସମ୍ଭାବନାକୁ ଆମେ ଗ୍ରହଣ କରିପାରିଲୁନି । ଭେଙ୍କଟରମଣଙ୍କୁ ମୁଁ ଯେପରି ଜାଣେ, କୌଣସି ଯୁବତୀ ସହିତ ଗୁପ୍ତ ପ୍ରଣୟ ପାଇଁ ତାଙ୍କୁ ସନ୍ଦେହ କରାଯାଇ ନପାରେ । ମିଷ୍ଟର ମୁଖାର୍ଜୀ ମଧ୍ୟ ସେଭଳି କୌଣସି ସନ୍ଦେହକୁ ପ୍ରଶ୍ରୟ ଦେଇପାରୁନଥାନ୍ତି; କାରଣ ତା ଯଦି ହୋଇଥାନ୍ତା ଏତେଦିନ ଭିତରେ ଆମେ ସେଥିର କିଛି ଆଭାସ ନିଶ୍ଚୟ ପାଇପାରିଥାନ୍ତୁ ।

ତା'ଛଡ଼ା ବନ୍ଧୁ ଭେଙ୍କଟରମଣ ଏମିତି ସ୍ଖଳିତ ଚରିତ୍ରର ଯୁବକ ନୁହନ୍ତି, ଯାହାଙ୍କଠାରେ ଏମିତି ଏକ ହୀନସନ୍ଦେହ ଆରୋପ କରାଯାଇପାରେ । ତେବେ ପ୍ରଥମ ସନ୍ଦେହଟିକୁ ଆମେ ଗ୍ରହଣ କରିପାରି ନଥାଉଁ । ଭେଙ୍କଟରମଣଙ୍କୁ କିଏ ବା କାହିଁକି ହରଣଚାଲ କରିବ ? ପୁଣି ଆମେରିକାରେ ! ଏଠାରେ ବା ତାଙ୍କର ଏମିତି କିଏ ଶତ୍ରୁ ଅଛି ଯେ ତାଙ୍କୁ ହରଣଚାଲ କରିନେବ ? ବଡ଼ ଧନ୍ଦାଗ୍ରସ୍ତ ଚିତ୍ତରେ ମୁଁ ଓ ମିଃ ମୁଖାର୍ଜୀ ନିକଟସ୍ଥ ପୋଲିସ୍ ଷ୍ଟେସନକୁ ଗଲୁ । ଥାନାରେ ଏତଲା ଦେବା ଛଡ଼ା ଆମର ଅନ୍ୟ ଉପାୟ ନଥିଲା ।

ସାଣ୍ଟାଫେରେ ଦୁଇ ତିନିଦିନ ଅପେକ୍ଷା କରି ବନ୍ଧୁଙ୍କର କିଛି ସନ୍ଧାନ ନ ମିଳିବାରୁ ମୁଁ ନିଉୟର୍କ ଫେରିଆସିବା ପାଇଁ ଠିକ୍‌କଲି । ପୋଲିସ ବିଭାଗ ତାଙ୍କୁ ଖୋଜି ବାହାରକରିବା ପାଇଁ ବହୁ ଚେଷ୍ଟାକରି ମଧ୍ୟ କିଛି ଫଳ ହେଲାନାହିଁ । ନିଉୟର୍କ ଫେରିବା ପୂର୍ବରୁ ଭାବିଲି, ଯେତେବେଳେ ଏତେ କଷ୍ଟକରି ଏତେ ଦୂର ଆସିଛି, ନିକଟବର୍ତ୍ତୀ ଲାସ୍‌ଭେଗାସ୍ ସହର ବୁଲି ନଯିବି କାହିଁକି ? ହୁଏତ ବନ୍ଧୁଙ୍କର କିଛିସନ୍ଧାନ ସେଭଳି ଜାଗାରେ ମିଳିଯାଇପାରେ ? ଆମେ ଯେଉଁ ସନ୍ଦେହଟିକୁ ଗ୍ରହଣ କରିପାରୁନଥିଲୁ ସେଇଟି ଯଦି କୌଣସି ପ୍ରକାରେ ସତ ହୋଇଥାଏ ?

ସାଣ୍ଟାଫେଠାରୁ ନେଭେଡ଼ା ରାଜ୍ୟର ଲାସ୍‌ଭେଗାସ୍ ସହର ବେଶି ଦୂର ନୁହେଁ । ନିଉମେକ୍‌ସିକୋ ରାଜ୍ୟରେ ଆଉ ଗୋଟିଏ ଲାସ୍‌ଭେଗାସ୍ ସହର ଥିଲେହେଁ ସେ ସହରଟି ନେଭେଡ଼ା ରାଜ୍ୟର ଲାସ୍‌ଭେଗାସ୍ ଭଳି ସେତେ ପରିଚିତ ନୁହେଁ । ଏଣୁ ସାଣ୍ଟାଫେରେ ଦିନେ ଦୁଇଦିନ ରହିବା ପରେ ଦିନେ ସକାଳ ବସ୍‌ରେ ଲାସ୍‌ଭେଗାସ୍ ଅଭିମୁଖେ ବାହାରିପଡ଼ିଲି । ବନ୍ଧୁ ମୁଖାର୍ଜୀ ବସ୍ ଷ୍ଟେସନ

ପର୍ଯ୍ୟନ୍ତ ଅସିଥିଲେ ମୋତେ ବିଦାୟ ଦେବାପାଇଁ । ସାଣ୍ଟାଫେ ଛାଡ଼ିବାବେଳେ ବନ୍ଧୁଙ୍କୁ କହିଆସିଲି, ଭେଙ୍କଟରମଣଙ୍କର ଯଦି କିଛି ସନ୍ଧାନ ସେ ପାଆନ୍ତି ତେବେ ମୋତେ ଲାସ୍‌ଭେଗାସ୍‌ସ୍ଥିତ ମୋର ହୋଟେଲ ଠିକଣାରେ ଜଣାଇବେ ।"

## ଦୁଇ

ଲାସ୍‌ଭେଗାସ୍‌ରେ ପହଞ୍ଚୁ ପହଞ୍ଚୁ ପ୍ରାୟ ସନ୍ଧ୍ୟା ଛ'ଟା । ଗ୍ରେ ହାଉଣ୍ଡ୍ କମ୍ପାନୀର ସିନାକ୍‌ରୁଇଜର୍ ବସ୍ ସାଣ୍ଟାଫେଠାରୁ ମରୁଭୂମି ପରେ ମରୁଭୂମି ପାରହୋଇ ଲାସ୍‌ଭେଗାସ୍‌ରେ ପହଞ୍ଚିଲାବେଳକୁ ସୂର୍ଯ୍ୟ ପ୍ରାୟ ଅସ୍ତହେବା ଉପରେ । ସହରର ବିଭିନ୍ନ ରାସ୍ତାଦେଇ ବସ୍ ଯେତେବେଳେ ଷ୍ଟେସନ୍‌ରେ ପହଞ୍ଚେ, ଲାସ୍‌ଭେଗାସ୍‌ର ସୌନ୍ଦର୍ଯ୍ୟରେ ମୁଁ କମ୍ ମୋହିତ ହୋଇନଥାଏ । ବସ୍ ଷ୍ଟେସନ୍‌ରେ ଓହ୍ଲାଇ ସିଧା ଚାଲିଲି ଟେକ୍‌ସିଟିଏ ଧରି ହୋଟେଲ ଅଭିମୁଖେ । ଲାସ୍‌ଭେଗାସ୍‌ର ପ୍ରଧାନ ରାସ୍ତା ଲାସ୍‌ଭେଗାସ୍ ବୋଲ୍‌ଭାର୍ଡ଼ ଉପରେ ପୃଥିବୀପ୍ରସିଦ୍ଧ ହୋଟେଲ ସାହାରା ଅବସ୍ଥିତ ।

ଲାସ୍‌ଭେଗାସ୍ ଯିବା ପୂର୍ବରୁ ଏହି ସହରଟି ଯୁକ୍ତରାଷ୍ଟ୍ର ଭିତରେ ଏକ ଅଦ୍ଭୁତ ସହର ବୋଲି ଜାଣିନଥିଲି । ନେଭେଡ଼ା ରାଜ୍ୟର କୋହଳ ଆଇନ୍ ହେତୁ ଏଠାରେ ବହୁତ କିଛି କାମ କରିହୁଏ, ଯାହାକି ଆମେରିକାର ଅନ୍ୟ କୌଣସି ସହରରେ କରିବା ଅସମ୍ଭବ । ଏଠି ମଦ, ମାଇକିନାଠାରୁ ଆରମ୍ଭକରି ଜୁଆ, ଚୋରି, ଡକାଏତି, ଠକାମି ପର୍ଯ୍ୟନ୍ତ ସବୁକିଛି ଭରପୂର । ଲାସ୍‌ଭେଗାସ୍‌ର ଅସଂଖ୍ୟ ହୋଟେଲ୍, ମୋଟେଲ, ନାଇଟ୍ କ୍ଲବ୍‌ରେ ଦିନରାତି ଜୁଆଖେଳ, ନାଚ ଓ ମଦର ଅସରନ୍ତି ସ୍ରୋତ ଏମିତି ଭାବରେ ଛୁଟିଚାଲିଥାଏ, ମୁଁ ଶୁଣି ତଟସ୍ଥ । ଚୋର ଡକାଏତଙ୍କ ଆଡ଼୍ଡ଼ା ଏଠି ଏତେ ବେଶି ଯେ, ଯେକୌଣସି ହୋଟେଲ କି ନାଚଘରକୁ ପଶିଗଲେ ତା'ର ଆଭାସ୍ ନପାଇ ରହିପାରିବନି । ଆମେରିକାର ଅନ୍ୟାନ୍ୟ ବହୁରାଜ୍ୟରେ ଜୁଆଖେଳ ବେଆଇନ୍ ହେଲେହେଁ ଏଠି ଜୁଆଖେଳର ଯେଉଁ ଆଡ଼୍ଡ଼ା ଓ ଜୁଆଖେଳ ଭିତରେ ଭିତରେ ରୂପାଜୀବୀ ଲଳନାମାନଙ୍କର ଯେଉଁ ଅଭିନୟ, ପ୍ରାକୃତିକ ଜୀବନଯାପନଠାରୁ ଦୂରରେ ରହୁଥିବା ଯୁବକଯୁବତୀଙ୍କୁ ଏହା ଏକ ସ୍ୱର୍ଗଭଳି ବୋଧହେବା ବିଚିତ୍ର ନୁହେଁ । ଏଠି ପୁଣି ଲମ୍ପଟ-ଲମ୍ପଟୀମାନଙ୍କର କାମ କିଛି କମ୍ ନୁହେଁ । ବିବାହକୁ ଏକ ତୁଚ୍ଛ ବନ୍ଧନ ମନେକରି ଓ ଏ ଭିତରେ ଆବଦ୍ଧ ନ ହୋଇ ବାରଘଣ୍ଟା କି

ଚବିଶଘଣ୍ଟା ପାଇଁ ଦାମ୍ପତ୍ୟଜୀବନ ଉପଭୋଗ କରିବା ଉଦ୍ଦେଶ୍ୟରେ ଆମେରିକାର ଯେଉଁ ଅସଂଖ୍ୟ ଲମ୍ପଟ—ଲମ୍ପଟୀ ଅଛନ୍ତି; ସେମାନେ ଏଠାକୁ ଏକ ତୀର୍ଥସ୍ଥାନ ଭାବି ଆସନ୍ତି । ସେମାନଙ୍କ ବ୍ୟଭିଚାରର କଥା ଶୁଣି କାନରେ ହାତ ନଦେଇ ରହିପାରିଲିନି । ସନ୍ଧ୍ୟାବେଳେ ବିବାହ, ମଧ୍ୟରାତ୍ରରେ ମଧୁଶଯ୍ୟା, ପ୍ରତ୍ୟୁଷରେ ଛାଡ଼ପତ୍ର ବ୍ୟବସ୍ଥା ପୃଥିବୀର କୌଣସି ଅଞ୍ଚଳରେ ନଥିଲେହେଁ ଏଠି ଯେମିତି ଭାବରେ ପ୍ରଚଳିତ, ଶୁଣିଲେ ଘୃଣାରେ ଯେ କେହି ମୁଖ ବିକୃତ କରିବ । ପ୍ରତିଦିନ କେତେ କୁମାର-କୁମାରୀ ଏହିଭଳି ଦାମ୍ପତ୍ୟ-ଜୀବନ ଉପଭୋଗ କରିବା ପାଇଁ ଏଠାକୁ ଯେ ଆସନ୍ତି, ତାର କଳନା ନାହିଁ । ଲାସ୍‌ଭେଗାସ୍‌ର ଏହିଭଳି ବହୁ ବର୍ଣ୍ଣନା ତୁମେମାନେ ନିଶ୍ଚୟ ଶୁଣିଥିବ । ହେଲେ ଏଗୁଡ଼ିକ ତୁମମାନଙ୍କୁ ଖରାପ ଲାଗେ କି ନା ମୁଁ ଜାଣେନି; କିନ୍ତୁ ଆମ ଦୃଷ୍ଟିରେ ଏହା ଅତି ଜଘନ୍ୟ; ଲାସ୍‌ଭେଗାସ୍ ତୁମ ଦେଶର ଯେ ଏକ କଳଙ୍କ, ତୁମେମାନେ ଯାହା ଭାବ ନା କାହିଁକି, ଏହା କହିବାକୁ ମୁଁ ସଙ୍କୋଚ ମନେକରିବି ନାହିଁ ।

ଲାସ୍‌ଭେଗାସ୍‌ର ଏହିଭଳି ଅସଂଖ୍ୟ କୁକର୍ମ ଶୁଣିନଥିବାରୁ ହୋଟେଲରେ ପହଞ୍ଚି ସାନ୍ଧ୍ୟକର୍ମ ଶେଷକରି ବାହାରିପଡ଼ିଲି ଲାସ୍‌ଭେଗାସ୍‌ର ସାନ୍ଧ୍ୟକାଳୀନ ଦୃଶ୍ୟ ଉପଭୋଗ କରିବାପାଇଁ । ଲାସ୍‌ଭେଗାସ୍‌କୁ ଏକାକୀ ଯାଇଥିବାରୁ ଓ ହୋଟେଲରେ ଏକାକୀ ରହୁଥିବାରୁ କେତେ ରୂପାଜୀବୀ ଲଳନା ଆସି ଯୁଟିଗଲେ ମୋତେ ସାମୟିକ ସଙ୍ଗ ପ୍ରଦାନ କରିବା-ପାଇଁ । ବିଶେଷତଃ ଲାସ୍‌ଭେଗାସ୍‌ର ସାନ୍ଧ୍ୟଭ୍ରମଣବେଳେ ଏକାକୀ କେହି ବୁଲିବାର ପ୍ରାୟ ଦେଖାଯାଏନି । ସାନ୍ଧ୍ୟକାଳୀନ ସୁମଧୁର ମୁହୂର୍ତ୍ତଗୁଡ଼ିକୁ ଏକାକୀ ବୁଲି କିଏ କାହିଁକି ବା ନଷ୍ଟ କରିବ ? କିନ୍ତୁ ମୁଁ ସେମାନଙ୍କୁ ନିରାଶକରି ଏକାକୀ ବାହାରିପଡ଼ିଲି, ପ୍ରଧାନ ରାସ୍ତା ଲାସ୍‌ଭେଗାସ୍ ବୋଲଭାର୍ଡ଼ ଉପରକୁ ।

ରାସ୍ତାର ଦୁଇ ଧାରରେ ଅସଂଖ୍ୟ ହୋଟେଲ,ନାଇଟ କ୍ଲବ୍ ଓ ନାଚଘର । ଜୁଆଖେଳର କଳରୋଳ, ରୂପଜୀବୀ ଲଳନାମାନଙ୍କର କଳହାସ୍ୟ ଛୁଟିଆସୁଥାଏ ରାସ୍ତା ଉପରକୁ । ଅନ୍ୟମନସ୍କ ଭାବରେ ସେସବୁ ଆଡ଼କୁ କାନ ନ ଦେଇ ରାସ୍ତାରେ ଧୀରେ ଧୀରେ ମୁଁ ଆଗେଇ ଚାଲିଥାଏ । ମନଭିତରେ ମୋର ସେଇ ଗୋଟିଏ ଭାବନା, ବନ୍ଧୁ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ । ହଠାତ୍ ପଛରୁ ମୋ ନାଁ ଧରି କିଏ ଡାକିବାର ଶୁଣି ଚମକିପଡ଼ିଲି ।

ବୁଲିପଡ଼ି ଦେଖିଲି ବନାରସର ଦେଶପାଣ୍ଡେ ମୋତେ ଡାକି ଡାକି ମୋ ନିକଟକୁ ଦୌଡ଼ିଆସୁଛନ୍ତି । ଦେଶପାଣ୍ଡେ ବନାରସର ଲୋକ,ପୁଣି ପିତାମହଙ୍କ ଆଉ ଜଣେ ପ୍ରିୟଛାତ୍ର । ଦେଶପାଣ୍ଡେଙ୍କୁ ହଠାତ୍ ଏଠାରେ ଦେଖି ମୁଁ ନିଜ ଆଖିକୁ ବିଶ୍ୱାସ କରିପାରିଲିନି । ଗୃର ପାଞ୍ଚଦିନ ତଳେ ସେ ବନାରସରେ ଥିଲେ । ତାଙ୍କର ଆମେରିକା ଆସିବା କଥା କିଛି ନଥିଲା, ହଠାତ୍ ତାଙ୍କୁ ଏଠି ଦେଖି ମୁଁ ଆଶ୍ଚର୍ଯ୍ୟ ନ ହେବି ବା କେମିତି ? ଦେଶପାଣ୍ଡେ ଆମେରିକା ଆସିବାର ଥିଲେ, ଆମ ଘରେ ନିଶ୍ଚୟ ଜାଣିଥାନ୍ତେ । ତା, ଛଡ଼ା ମୁଁ ମଧ୍ୟ ସେ ଖବର ପାଇଥାନ୍ତି । ଦେଶପାଣ୍ଡେ ତ ମୋତେ ନ ଜଣାଇ ଆମେରିକା ଆସିନଥାନ୍ତେ ? ତେଣୁ

ଏଭଳି ପରିସ୍ଥିତିରେ ତାଙ୍କ ଉପସ୍ଥିତି ମୋତେ ବିସ୍ମିତ କରିଦେଇଥିଲା ।

ଦେଶପାଣ୍ଡେ ପାଖରେ ଆସି ପହଞ୍ଚିବାରୁ ମୁଁ ତାଙ୍କୁ କ'ଣ ପଚାରିବି ଭାବିପାରିଲି ନାହିଁ । ତାଙ୍କୁ ଦେଖି ମୋ ମୁଣ୍ଡର ସବୁକିଛି ଗୋଳମାଳ ହୋଇ ଯାଇଥିଲା । ମୋ ପାଖକୁ ଆସି ସେ ପଚାରିଲେ—"ନିଉୟର୍କରୁ ହଠାତ୍ ତୁମେ କ'ଣ ଏଠି, ରମେଶ ?" ଉତ୍ତର ଦେଲି—'ହଁ, ଅବସ୍ଥାକ୍ରମେ ଏଠାକୁ ଚାଲିଆସିଛି । ତୁମେ ବୋଧହୁଏ ଜାଣିଥିବ, ଭେଙ୍କଟରମଣ ସାଣ୍ଟାଫେରୁ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛି । ଯୁକ୍ତରାଷ୍ଟ୍ରର ପୋଲିସ୍ ବିଭାଗ ତା'ର କିଛି ଖୋଜ୍‌ଖବର ପାଇପାରୁନାହାନ୍ତି । ତା'ର ପତ୍ତା ଲଗାଇବା ପାଇଁ ନିଉୟର୍କରୁ ସାଣ୍ଟାଫେ ଆସି ସେଠାରୁ ଏଠାକୁ ଚାଲିଆସିଛି ।"

ଦେଶପାଣ୍ଡେ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ ହେବାକଥା ଶୁଣି ଆଶ୍ଚର୍ଯ୍ୟ ହେବା ପରିବର୍ତ୍ତେ ମୁରୁକି ହସି କହିଲେ—'ଓ, ଏଥିପାଇଁ ତୁମର ଏଠାକୁ ଆଗମନ ! ଦୁଇପାଖର ଏଇ ଯେଉଁ ସବୁ ଆକର୍ଷଣ; ସେସବୁ ପାଇଁ ନୁହେଁ ତ !"

ଦେଶପାଣ୍ଡେ ଆଶ୍ଚର୍ଯ୍ୟ ନହୋଇ ମୁରୁକି ମୁରୁକି ହସିବା ଓ ମୋତେ ଥଟ୍ଟା କରିବା ଦେଖି ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି । ଭେଙ୍କଟରମଣ ଖାଲି ମୋର ବନ୍ଧୁ ନୁହନ୍ତି, ସେ ବି ଦେଶପାଣ୍ଡେଙ୍କ ଅନ୍ତରଙ୍ଗ ବନ୍ଧୁ । ବନ୍ଧୁଙ୍କ ଅନ୍ତର୍ଦ୍ଧାନ ପାଇଁ ମୁଁ ଏତେ ମୁଣ୍ଡ ଖେଳାଉଛି ଅଥଚ ସେ ମୁରୁକି ମୁରୁକି ହସୁଛନ୍ତି । ମୁଁ ହଠାତ୍ ଅନୁମାନ କରିପାରିଲିନି କଥା କ'ଣ ? ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ ମୋଠାରେ ଯେତିକି ପ୍ରହେଳିକାମୟ ହୋଇଉଠିଛି ତା'ଠାରୁ ଅଧିକ ପ୍ରହେଳିକାମୟ ଦେଶପାଣ୍ଡେଙ୍କ ପାଖରେ ହୋଇଉଠିବା କଥା । ଆମେରିକାରେ ହଠାତ୍ ଆବିର୍ଭାବ ଓ ସେଥିସହ ବନ୍ଧୁ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ କଥା ଶୁଣି ମୁରୁକି ମୁରୁକି ହସ ମୋଠାରେ ଆହୁରି ରହସ୍ୟମୟ ହୋଇ ଠିଆହେଲା ।

ଆହୁରି ଆଶ୍ଚର୍ଯ୍ୟହୋଇ ପଚାରିଲି—"ତୁମେ ଭେଙ୍କଟରମଣଙ୍କ ଅନ୍ତର୍ଦ୍ଧାନ କଥା ଶୁଣି ମୁରୁକି ମୁରୁକି ହସୁଚ କିଣ ଦେଶପାଣ୍ଡେ ? ସେ ପରା ତୁମର ଅନ୍ତରଙ୍ଗ ବନ୍ଧୁ ! ତୁମର ଏଥିରେ ଦୁଃଖିତ ହେବା ଉଚିତ ନୁହେଁ କି ?"

ନିଜର ହାସ୍ୟ ସମ୍ବରଣ କରି ନପାରି ଦେଶପାଣ୍ଡେ କହିଲେ—"ଭେଙ୍କଟରମଣ ଅନ୍ତର୍ଦ୍ଧାନ ହୋଇନାହିଁ ରମେଶ, ତାଙ୍କୁ ହରଣଚାଲି କରାଯାଇଛି ।"

ହରଣଚାଲି ? ଚମକି ପଡ଼ିଲି । "ତୁମେ ଜାଣିଲ କେମିତି ?" ଆଶ୍ଚର୍ଯ୍ୟ ହୋଇ ଦେଶପାଣ୍ଡେଙ୍କୁ ଅନେଇ ରହିଲି ।

"ଆମେରିକାରେ ତ କେହି ଅନ୍ତର୍ଦ୍ଧାନ ହୁଏନି ବନ୍ଧୁ, ଲୋକଙ୍କୁ ହରଣଚାଲି କରାଯାଏ । ସେ ତ ପୁଣି ଏ ଜାଗାର ବିଶେଷତ୍ୱ ।"

"ଆମେ ବି ତ ସେଆ ଭାବୁଥିଲୁ । ସାଣ୍ଟାଫେରେ ଭେଙ୍କଟରମଣଙ୍କ ବନ୍ଧୁ ମିଃ ମୁଖାର୍ଜୀଙ୍କର ମତ ମଧ୍ୟ ସେଇଆ । "କିନ୍ତୁ ଦେଶପାଣ୍ଡେ, ଭେଙ୍କଟରମଣଙ୍କୁ ହରଣଚାଲି କରିବାର ଉଦ୍ଦେଶ୍ୟ କ'ଣ ହୋଇପାରେ ? କିଏ ବା ହରଣଚାଲି କରିବ ତାଙ୍କୁ ?"

"ସେ ଗୋଟିଏ ବିଶିଷ୍ଟ ଇତିହାସ"—ମୁଖରେ ତାଙ୍କର ଗାମ୍ଭୀର୍ଯ୍ୟ ଭାବ ଫୁଟିଉଠିଲା। ଯେଉଁ କାରଣଯୋଗୁଁ ଭେଙ୍କଟରମଣଙ୍କୁ ହରଣଚାଲ କରାଯାଇଛି, ଠିକ୍ ସେଇ କାରଣରୁ ମୋତେ ଚବିଶ ଘଣ୍ଟା ଭିତରେ ବନାରସରୁ ଏଠାକୁ ଅଣାଯାଇଛି। ଠିକ୍ ସେଇ କାରଣ ହେତୁ ଆଜି ତୁମ ନିକଟକୁ ଜରୁରୀ ଖବର ପଠାଯାଇଛି, ତୁମେ ବାରଘଣ୍ଟା ଭିତରେ ଏଠାରେ ଆସି ପହଞ୍ଚିବା ପାଇଁ।"

"ଏଁ, ମୋ ନିକଟକୁ? ବାରଘଣ୍ଟା ଭିତରେ ଏଠାରେ ପହଞ୍ଚିବାକୁ?"—ଦେଶପାଣ୍ଡେଙ୍କ କଥା ଶୁଣି ମୋ ମୁଣ୍ଡର ସବୁକିଛି ଗୋଳମାଳ ହୋଇଗଲା। ବଡ଼ ବିଚିତ୍ର! ଭେଙ୍କଟରମଣଙ୍କ ହରଣଚାଲ, ଦେଶପାଣ୍ଡେଙ୍କ ଆମେରିକା ଆଗମନ, ମୋଠାକୁ ଜରୁରୀ ବାର୍ତ୍ତା, ଏସବୁ ଯୋଡ଼ି ଏଥିଭିତରୁ କିଛି ଅର୍ଥ ବାହାର କରିବା ମୋ ପକ୍ଷରେ ସମ୍ଭବପର ହେଲାନି। ମୁଁ କିଛି ଭାବିପାରିଲିନି, ମୁଁ ଏ କ'ଣ ସବୁ ଶୁଣୁଛି, ବିସ୍ମୟରେ ଦେଶପାଣ୍ଡେଙ୍କ ମୁହଁକୁ ବଲବଲ କରି ଅନାଇରହିଲି।

ମୋତେ ଅତ୍ୟଧିକ ଆଶ୍ଚର୍ଯ୍ୟାନ୍ୱିତ ଦେଖି ଦେଶପାଣ୍ଡେ କହିଲେ—"ମୁଁ ତୁମକୁ ଆଉ ଅଧିକ ବିସ୍ମୟାଭିଭୂତ ହେବାକୁ ଦେବିନି ରମେଶ! ତେବେ ଏତିକି କହୁଛି ଯେ ଏକ ଅତି ଗୋପନୀୟ କଥାନେଇ ମୁଁ ଆମେରିକା ଆସିଛି। ଆମେରିକା ସରକାରଙ୍କ ଯୁଦ୍ଧ ବିଭାଗଦ୍ୱାରା ମୁଁ ଏତେ ଗୋପନୀୟ ଭାବରେ ଏଠାକୁ ଭାରତରୁ ଆନୀତ ହୋଇଛି ଯେ ଆମ ପରିବାର ଓ ତୁମ ପରିବାର ଛଡ଼ା ମୋ ଆମେରିକା ଆସିବା କଥା ଆଉ କେହି ଜାଣିନାହାନ୍ତି। ଏମିତିକି ଭାରତ ସରକାରଙ୍କର ଗୋଟିଏ ବିଭାଗ ଛଡ଼ା ଅନ୍ୟ କୌଣସି ବିଭାଗ ଏ ଖବର ପାଇନାହାନ୍ତି; ଉତ୍ତରପ୍ରଦେଶ ସରକାର ଓ ବନାରସ ବିଶ୍ୱବିଦ୍ୟାଳୟ କଥା ଛାଡ଼। ବନାରସ ବିଶ୍ୱବିଦ୍ୟାଳୟକୁ ଜଣାଇ ଦିଆଯାଇଛି ମୁଁ କଲିକତା ଯାଇଚି ବୋଲି। ତୁମେ ବିଶ୍ୱାସ କରି ପାରିବନି ରମେଶ, ଏହି ଲସ୍‌ଭେଗାସ୍ ସହର ନିକଟବର୍ତ୍ତୀ ଏକ ସ୍ଥାନରେ ଏମିତି ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଯାଇଛି, ଯାହାକି ଯୁକ୍ତରାଷ୍ଟ୍ର-ଆମେରିକାର ସାମରିକ କର୍ମକର୍ତ୍ତା ତଥା ସରକାରଙ୍କ ମୁଣ୍ଡକୁ ଏକରକମ ପାଗଳ କରିଦେଇଛି। ଏତେବଡ଼ ରାଜ୍ୟରେ କେହି ଜଣେ ସୁଦ୍ଧା ବୁଝିପାରୁନାହାନ୍ତି—ଏହି ଘଟଣାଟି କ'ଣ? ଘଟଣାଟି ବୁଝିବା ପାଇଁ ଯୁକ୍ତରାଷ୍ଟ୍ର ସାମରିକ ବିଭାଗ ନିର୍ଦ୍ଦେଶରେ ମୋତେ ଭାରତବର୍ଷରୁ ଅଣାଯାଇଛି ଓ ଭେଙ୍କଟରମଣଙ୍କୁ ସାଣ୍ଟାଫେରୁ ହରଣଚାଲ କରାଯାଇଛି।"

"ଆଉ ସେଇଥିପାଇଁ ମୋଠାକୁ ଜରୁରୀ ବାର୍ତ୍ତା ପଠାଯାଇଛି, ନୁହେଁ?"

'ହଁ'—ଦେଶପାଣ୍ଡେ ଗମ୍ଭୀର ହୋଇଯାଇ କହିଲେ। ଲକ୍ଷ୍ୟକଲି ସେ ଏଇ କଥା କେଇ ପଦ କହିଲାବେଳେ ବଡ଼ ଚିନ୍ତିତ ଥିଲାଭଳି ଜଣାପଡ଼ୁଥିଲେ।

"ତୁମକୁ ମୋ ସହିତ ଯିବାକୁ ପଡ଼ିବ ରମେଶ!"—ଦେଶପାଣ୍ଡେ ଧୀରଗଳାରେ କହିଲେ।

"କେଉଁଠାକୁ ?" ପଚାରିଲି ।

"ତୁମକୁ କେତେ ଲୋକ ଅପେକ୍ଷା କରି ବସିଛନ୍ତି ଜାଣିଛ ?"

"ମୋତେ ?"

"ହଁ, ତୁମକୁ ।"

"କିନ୍ତୁ କଥାଟା କ'ଣ ନ ଜାଣିଲା ପର୍ଯ୍ୟନ୍ତ ମୁଁ ତ କିଛି ଭାବିପାରୁନି । ତୁମର ଏଭଳି କଥା ଶୁଣି ମୋର ମୁଣ୍ଡର ସବୁ ଗୋଳମାଳ ହୋଇଯାଉଛି ।"

ଚାରିଆଡ଼କୁ ଅନାଇ ସେ ଚୁପ୍ ଚୁପ୍ କହିଲେ, "ତୁମେ ଜାଣିଛ ରମେଶ, କେତେଜଣ ଗୋଇନ୍ଦା ପୋଲିସ ମୋତେ ଅନୁଧାବନ କରୁଛନ୍ତି ? ମୋର ଗତିବିଧି ପୂରାମାତ୍ରାରେ ନିୟନ୍ତ୍ରଣ କରାଯାଇଛି । ଗତ ଚାରି ପାଞ୍ଚ ଦିନ ଧରି ସେଇ ମିଲେଟାରୀ କେମ୍ପରେ ରହି ରହି ମୋତେ ବିରକ୍ତ ଲାଗିଲାଣି । ମୁଁ ଯେତେବେଳେ କହିଲି, ମୁଁ ଯଦି ବାହାରୁ ଟିକିଏ ବୁଲି ନ ଆସେ ତେବେ ମୁଁ ପାଗଳ ହୋଇଯିବି, ସେତେବେଳେ ସେମାନେ ମାତ୍ର ଦୁଇଘଣ୍ଟା ପାଇଁ ଲାସ୍‌ଭେଗାସ୍ ବୁଲିଆସିବା ପାଇଁ ଛୁଟିଦେଇଛନ୍ତି । ନିର୍ଦ୍ଦେଶ, ମୁଁ ଯେମିତି କାହା ସହିତ ଏ ସମ୍ପର୍କରେ କିଛି କଥାବାର୍ତ୍ତା ନକରିଏ । କାଳେ ମୁଁ କାହା ସହିତ କଥା ହେବି, ସେ ଭୟରେ ସେମାନେ ମୋ ପଛରେ ଗୋଇନ୍ଦା ପୋଲିସ୍ ପଠାଇ ଦେଇଛନ୍ତି । ଏଇ ମୁଁ ତୁମ ସହିତ କଥାବାର୍ତ୍ତା ହେବା ସଙ୍ଗେ ସଙ୍ଗେ ସେ ଖବର ସାମରିକ କର୍ତ୍ତୃପକ୍ଷଙ୍କ ନିକଟକୁ ଚାଲିଯାଇଥିବ । କିଏ କହିଣେ ହଠାତ୍ ସେନାଛାଉଣୀରୁ ଚାଲି ନ ଆସିବ ଏଠାକୁ ?"

ଦେଶପାଣ୍ଡେ ଏତିକି ଶେଷ କରିଛନ୍ତି କି ନାହିଁ, ଦୁଇଜଣ ସାମରିକ ଅଫିସର ଆମ ନିକଟରେ ଆସି ହାଜର । ସେମାନଙ୍କୁ ଦେଖି ଦେଶପାଣ୍ଡେ କହିଲେ—"ଆପଣମାନଙ୍କ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଖବର ଦିଅନ୍ତୁ, ନିଉୟର୍କରୁ ଯେଉଁ ମିଷ୍ଟର ରମେଶଚନ୍ଦ୍ର ଚୌଧୁରୀଙ୍କ ଆସିବା କଥା ଥିଲା, ସେ ଆସିଯାଇଛନ୍ତି । ମୁଁ ତାଙ୍କୁ ନେଇ ସେନାଛାଉଣୀକୁ ଯାଉଛି । ତାଙ୍କୁ ସଙ୍ଗରେ ନେବାପାଇଁ ମୁଁ ଯାଉଛି ତାଙ୍କ ହୋଟେଲକୁ ।"

"ଅତି ଉତ୍ତମ' କହି ସାମରିକ ଅଫିସରଦ୍ୱୟ ସେଠାରୁ ଆଖିପିଛୁଳାକେ ଅନ୍ତର୍ହିତ ହୋଇଗଲେ । ଏସବୁ କାରବାର ଦେଖି ମୁଁ ଚୁନିଆଁ । ବଡ ବ୍ୟସ୍ତ ହୋଇ ଦେଶପାଣ୍ଡେଙ୍କୁ ପଚାରିଲି—"କ'ଣ କଥା କୁହ ତ ଦେଶପାଣ୍ଡେ ? ଏସବୁ କାରବାର ଦେଖି ମୋତେ ବେଶ୍ ଡର ଲାଗିଲାଣି ।"

—ସେ କଥା କ'ଣ ଆଉ ଏଠି କହିହେବ ? ଚାଲ, ତୁମ ହୋଟେଲକୁ ଯିବା । ସେଠାରେ ସବୁକଥା ଅତି ଗୋପନରେ କହିବି । ସେକଥା ଏଠି କହିଲେ ମୋ ମୁଣ୍ଡ ରହିବଟି ? ରାସ୍ତାଘାଟ, ଘରଦ୍ୱାର ସବୁର ଯେ କାନ ଅଛି । ଅନ୍ତତଃ ଅନ୍ୟ କାହା ପାଇଁ ନହେଲେ ମଧ୍ୟ ମାର୍କିନ୍ ସାମରିକ କର୍ତ୍ତୃପକ୍ଷଙ୍କ ପାଇଁ ।

ଆମେ ସଙ୍ଗେ ସଙ୍ଗେ ଚାଲିଲୁ ହୋଟେଲ ସାହାରା ଅଭିମୁଖେ । ବାଟରେ ଗଲାବେଳେ ଦେଶପାଣ୍ଡେ କହିଲେ—"ଭେଙ୍କଟରମଣ ପାଇଁ ଚିନ୍ତା କରନାହିଁ ରମେଶ ! ଏଠାରୁ ନଅ

ମାଇଲ ଦୂର ସ୍କୋଆନ୍ ସେନାଗୁଡ଼ର୍ଣୀରେ ସେ ବେଶ୍ ଆରାମରେ ଅଛୁ ।"

ହୋଟେଲରେ ପହଞ୍ଚି ମୁଁ ମୋ କୋଠରି ଖୋଲିଲି । ଦେଶପାଣ୍ଡେ କୋଠରି ଭିତରକୁ ପଶିଆସି ଦୁଆର ବନ୍ଦକଲେ । ଝରକା ଭିତରୁ ବନ୍ଦକରି କୋଠରିର କାନ୍ଥ ପାଖରେ କାନ ଦେଇ ପରୀକ୍ଷା କରିବାକୁ ଲାଗିଲେ, କୋଠରିର କଥାବାର୍ତ୍ତା ବାହାରକୁ ଶୁଣାଯାଇ ପାରିବ କି ନାହିଁ । କିଛି ସମୟ ପରୀକ୍ଷା କରିବା ପରେ ନିଶ୍ଚିନ୍ତହୋଇ ଫେରିଆସି ମୋ ସାମନା ପଟ ସୋଫାଉପରେ ବସି ଆରମ୍ଭକଲେ—"ତୁମେ ହୁଏତ ଜାଣିନ ରମେଶ ! ମୁଁ ଆଜି ତୁମକୁ ଯେଉଁ କଥା କହିବି ସେ କଥା କେହି ବିଶ୍ୱାସ କରିପାରିବନି । ତୁମେ ବିଜ୍ଞାନର ଛାତ୍ର, ହୁଏତ ସେ କଥା ତୁମେ ବିଶ୍ୱାସ କରିପାରିବ । କିନ୍ତୁ ମୁଁ ଆଉ ଭେଙ୍କଟରମଣ କଥାଟା ଶୁଣିଲାବେଳୁ ସ୍ୱପ୍ନପୁରୀରେ ଭାସିଲାଭଳି ବୋଧକରୁଛୁ । ଆମେ ବେଳେବେଳେ ଭ୍ରମ କରି ପକାଉଛୁଁ, ଆମେ ସ୍ୱପ୍ନ ଦେଖୁନାହୁଁ ତ ?"

ମୋ ବିସ୍ମୟ ଆହୁରି ବଢ଼ିବାକୁ ଲାଗିଲା । ମୋତେ ଆଉ ଅଧିକ ବିସ୍ମିତ ହେବାକୁ ନ ଦେଇ ଦେଶପାଣ୍ଡେ କହିଚାଲିଲେ—"ତୁମେ ବିଶ୍ୱାସ କର ବା ନକର, ଆମେରିକାର ଏହି ମରୁଭୂମିରେ ଅନେକ ଲୋକ କେଉଁଠାରୁ ଆସି ପହଞ୍ଚିଛି; ଯାହାକୁ ଚିହ୍ନିବା କଷ୍ଟକର ହୋଇ-ପଡ଼ିଛି ଯୁକ୍ତରାଷ୍ଟ୍ରର ସାମରିକ କର୍ତ୍ତୃପକ୍ଷଙ୍କୁ । ସେ କେଉଁଠୁ ଆସିଲା, କେମିତି ଆସିଲା, କେବେ ଆସିଲା ସଠିକ୍ ଭାବରେ ଜାଣିହେଉନି । ସାମରିକ ବିଭାଗର ବିଶେଷଜ୍ଞମାନେ କିଏ କେତେ କ'ଣ କହୁଛନ୍ତି । କିଏ କହୁଛନ୍ତି ଇଏ ରୁଷିଆର ଗୁପ୍ତଚର ତ, କିଏ କହୁଛନ୍ତି ଇଏ ଆଫ୍‌ଗାନିସ୍ଥାନର ଲୋକ । ପୋଷାକପତ୍ରରୁ ଜାଣିହେଉନି କିଛି । ପୋଷାକପତ୍ର ଦେଖିଲେ କେହି କହିବନି ରୁଷିଆର କି ଆଫଗାନିସ୍ଥାନର ଲୋକ ବୋଲି । ପୋଷାକପତ୍ର ପୃଥିବୀର କୌଣସି ଦେଶର ପୋଷାକ ସହିତ ମିଳୁନାହିଁ ।

ସାମରିକ ବିଭାଗର ବହୁ ଅଫିସରଙ୍କ ବିଶ୍ୱାସ, ସେ ରୁଷିଆ ଦେଶର ଲୋକ ବୋଲି । ରୁଷିଆ ଦେଶର ଦକ୍ଷିଣ-ପୂର୍ବ ଏସିଆ ଅଞ୍ଚଳରେ ଥିବା ଅଧିବାସୀଙ୍କ ସହିତ ଏହି ଲୋକଟିର ଚେହେରା ବେଶ୍ ମେଳଖାଉଛି । ଆମେରିକାର ଗୋଇନ୍ଦା ବିଭାଗ କାଜାକିସ୍ଥାନ, ତାଜାକିସ୍ଥାନ ଆଦି ଅଞ୍ଚଳର ବହୁ ଲୋକଙ୍କ ଫଟୋ ସଂଗ୍ରହ କରିଛନ୍ତି, ଯେଉଁ ଫଟୋରୁ ଏହି ଲୋକଟା ରୁଷିଆ ଦେଶର ଲୋକଭଳି ଜଣାପଡ଼ୁଛି । କିନ୍ତୁ ତା' ପୋଷାକ ଓ ଭାଷା ରୁଷିଆ ଦେଶର ପୋଷାକ ଓ ଭାଷାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସାମରିକ ଅଫିସରମାନଙ୍କ ମତ, ନିଜକୁ ରୁଷୀୟ ବୋଲି ନଜଣାଇବାକୁ ସେ ଏମିତି ଆଶ୍ଚର୍ଯ୍ୟଜନକ ପୋଷାକ ପିନ୍ଧିଛି ଓ ଏମିତି ଅଜବ୍ ଅଶୁଣା କଥାଗୁଡ଼ିଏ କହୁଛି ।

କିନ୍ତୁ ବହୁ ସାମରିକ ଅଫିସର ଏହି ମତକୁ ବିରୋଧ କରୁଛନ୍ତି । ସେମାନଙ୍କର ମତ, ଏ ଲୋକଟି ରୁଷିୟାର କିମ୍ବା ଆଫ୍‌ଗାନିସ୍ଥାନର ଲୋକ ନୁହେଁ । ତାର ଅଜ୍ଞାତରେ ତାର ମନର ନାନାପ୍ରକାର ପ୍ରବାହକୁ ବିଭିନ୍ନ ଯନ୍ତ୍ର ସାହାଯ୍ୟରେ ପରୀକ୍ଷାକରି ସେମାନେ ଦେଖିସାରିଲେଣି ଯେ, ସେ ଲୋକଟି ଗୁପ୍ତଚର ନୁହେଁ । ହେଲେ ଅନ୍ୟ ସାମରିକ ଅଫିସରମାନଙ୍କ ବିଶ୍ୱାସ

ହେଉନାହିଁ । ଗୁପ୍ତଚର ମତପୋଷଣ କରୁଥିବା ସେଇ ଗୋଷ୍ଠୀ ପଗ୍ଭରୁଛନ୍ତି—ତେବେ ଏ କେଉଁଠାର ଲୋକ ?

ଏହି ପ୍ରଶ୍ନ ଭିନ୍ନ ମତଗୋଷ୍ଠୀ ସାମରିକ ଅଫିସରଙ୍କ ମୁଣ୍ଡକୁ ଗୋଳମାଳିଆ କରିଦେଉଛି । ଏହି ନବାଗତଟି ରୁଷିଆର ଲୋକ ନୁହେଁ ବୋଲି ସେମାନେ ନିଧାର୍ଯ୍ୟ ଭାବେ କହି ପାରୁନାହାନ୍ତି ।"

ଏପର୍ଯ୍ୟନ୍ତ କେହି କଅଣ ଜାଣି ପାରିନାହାନ୍ତି ଯେ ସେ ଲୋକଟି କି ଭାଷା କହୁଛି ?—ମୁଁ ପଗ୍ଭରିଲି ।

—ଏହି ଲୋକଟି ଧରାହେବାର ବାରଦଣ୍ଡା ଭିତରେ ଆମେରିକାର ସତର ଗୋଟି ବିଶ୍ୱବିଦ୍ୟାଳୟରୁ ବଡ ବଡ଼ ଭାଷା-ବିଶେଷଜ୍ଞମାନେ ଏହି ଲୋକଟିର ଭାଷାଟିକୁ ତନ୍ନ ତନ୍ନ କରି ପରୀକ୍ଷା କରିସାରିଲେଣି ।

—ଭାଷା-ବିଶେଷଜ୍ଞମାନେ କଅଣ କିଛି ନିଷ୍ପତ୍ତିରେ ପହଞ୍ଚି ପାରିନାହାନ୍ତି ଏପର୍ଯ୍ୟନ୍ତ ?

—ପଗ୍ଭରିଲି ।

—ହିଁ । ସେମାନେ ବହୁ ପରୀକ୍ଷା ପରେ ମତ ଦେଲେ ଯେ ଲୋକଟି ସଂସ୍କୃତ ଭଳି କୌଣସି ଏକ ଭାଷା କହୁଛି ।

—ଆଁ, ସଂସ୍କୃତ ? ଚମକିପଡ଼ିଲି । କଅଣ ସେ ଆମ ଦେଶର ଗୁପ୍ତଚର ? ପୁଣି ଆମେରିକାରେ !

—ନାଁ ନାଁ, ସେ ଗୁପ୍ତଚର ନୁହେଁ । ସଂସ୍କୃତ ଭାଷା କହୁଛି କି କଅଣ, ପରୀକ୍ଷା କରିବା ପାଇଁ ହାରଭାର୍ଡ଼, ଚିକାଗୋ ଆଦି ବିଶ୍ୱବିଦ୍ୟାଳୟରୁ ସଂସ୍କୃତ-ବିଶେଷଜ୍ଞମାନେ ଆସିଲେ । ସେମାନେ ଲୋକଟିର ଭାଷା କିଛି ବୁଝିପାରିଲେ ନାହିଁ । ବଡ଼ ଅଦ୍ଭୁତ ! ଲୋକଟି ସଂସ୍କୃତ ଭାଷାଭଳି ଏକ ଭାଷା କହୁଛି; କିନ୍ତୁ ସେମାନେ ବୁଝି ପାରୁନାହାନ୍ତି । ବଡ଼ ଅଡ଼ୁଆରେ ପଡ଼ିଲେ । ତା' ଭାଷାକୁ ନ ବୁଝିଲା ପର୍ଯ୍ୟନ୍ତ ସାମରିକ ଅଫିସରମାନେ ନିଶ୍ଚିନ୍ତ ହେଉଛନ୍ତି କେମିତି ?

ବହୁ ଚିନ୍ତା କରି କରି ହାରଭାର୍ଡ଼ ବିଦ୍ୟାଳୟର ସଂସ୍କୃତ ଅଧ୍ୟାପକ ମ୍ୟାକ୍‌ମିଲନ କହିଲେ —"ମୁଁ ଯାହା ଜାଣୁଛି, ଏହି ଲୋକଟି କୌଣସି ଲିଖିତ ସଂସ୍କୃତ ଭାଷା, କହୁନି । ସେ ଯେଉଁ ଭାଷା କହୁଛି, ମୋର ଅନୁମାନରୁ ତା' ହେଉଛି କଥିତ ସଂସ୍କୃତଭାଷା, ଯେଉଁ ଭାଷାକୁ ବୁଝିବା ଆମ ପକ୍ଷରେ ସମ୍ଭବପର ନୁହେଁ । ଆଜକୁ ପାଞ୍ଚ ହଜାରରୁ ଅଧିକ ବର୍ଷତଳେ ଏହି ଭାଷା କଥିତ ଭାବରେ ଦକ୍ଷିଣ-ପଶ୍ଚିମ ଏସିଆ ମହାଦେଶର ଲୋକେ କହୁଥିବାର ସମ୍ଭାବନା । ହିନ୍ଦୁମାନଙ୍କର ପୁରାତନ ଧର୍ମଗ୍ରନ୍ଥ ବେଦ ରଚିତ ହେବା ପୂର୍ବରୁ ହିନ୍ଦୁମାନେ ଏହି ଭାଷାରେ କଥାବାର୍ତ୍ତା ହେଉଥିବାର ଅନୁମାନ । ଶେଷରେ ଯିବା ପୂର୍ବରୁ ସେ ମତଦେଇଗଲେ ପ୍ରିନ୍‌ସଟନ୍ ବିଶ୍ୱବିଦ୍ୟାଳୟର ସଂସ୍କୃତ ଅଧ୍ୟାପକ ପ୍ରଫେସର ମେକ୍‌ମିଲ୍‌ଙ୍କୁ ଡକାଇ ଆଣାଇ ଏ ଭାଷାକୁ ପରୀକ୍ଷା କରାଇଲେ ଏ ଭାଷା ସମ୍ବନ୍ଧରେ କିଛି ସନ୍ଧାନ ମିଳିବାର ସମ୍ଭାବନା ।"

ସଙ୍ଗେ ସଙ୍ଗେ ସ୍ପେଶାଲ୍ ଉଡ଼ାଜାହାଜ ଛୁଟି ଚାଲିଲା ପ୍ରିନ୍‌ସଟନ୍ । ଛଅ ଘଣ୍ଟା ମଧ୍ୟରେ ଅଧ୍ୟାପକ ମେକ୍‌ଗିଲ୍‌ଙ୍କୁ ନେଇ ପହଞ୍ଚିଗଲା । ଅଧ୍ୟାପକ ମେକ୍‌ଗିଲ୍ ଯୁ କ୍ତରାଷ୍ଟ୍ରର କେବଳ ଜଣେ ସଂସ୍କୃତ-ବିଶେଷଜ୍ଞ ନୁହନ୍ତି, ଆମ ବେଦରେ ମଧ୍ୟ ସେ ଜଣେ ଅଦ୍ୱିତୀୟ ମାର୍କିନ୍ ବିଶେଷଜ୍ଞ ।

"ମେକ୍‌ଗିଲ୍‌ଙ୍କ ନାଆଁ ଶୁଣିଛି ।" ମୁଁ କହିଲି—"ତାଙ୍କର ବେଦ ଉପରେ ବହୁ ଇଂରାଜୀ ଟୀକା ଅଛି । ମୋର ମନେପଡ଼ୁଛି ମୁଁ କେତୋଟି ଲେଖା ତାଙ୍କର ପଢ଼ିଛି । ତାଙ୍କର ସାମବେଦ ଉପରେ ଯେଉଁ ଟୀକା ତାକୁ ପଢ଼ିଛ ଦେଶପାଣ୍ଡେ ? ୧୯୭୧ ମସିହା ପ୍ରକାଶନ । ପିତାମହଙ୍କୁ ସେ ଉତ୍ସର୍ଗ କରିଛନ୍ତି ଗ୍ରନ୍ଥଟିକୁ । ସେ ବନାରସରେ ଦୁଇବର୍ଷ ଥିବା ସମୟରେ ପିତାମହଙ୍କ ସହିତ ତାଙ୍କର ବେଶ୍ ବନ୍ଧୁତା ଥିଲା । ହଁ, ସେ କଅଣ କହିଲେ ?"

—ବୃଦ୍ଧ ମେକ୍‌ଗିଲ୍ ବହୁତ ଚେଷ୍ଟାକରି କିଛି ଧରି ପାରିଲେନି । ଶେଷରେ ସେ ଏତିକି କହିଲେ, ଯା'ର ପ୍ରଭାବ ବିଶେଷ ଭାବରେ ପଡ଼ିଲା ଏହି ସମସ୍ୟାର ସମାଧାନ ଉପରେ । ସେ କହିଲେ ମୁଁ ପୂରାପୂରି ନିଶ୍ଚିତ ଯେ ଏହି ଲୋକ ଯେଉଁ ଭାଷା କହୁଛି;ସେ ଭାଷା ହେଉଛି ରୁଷିଆର ଦକ୍ଷିଣ ଅଞ୍ଚଳରେ ଆଜକୁ ପାଞ୍ଚ ହଜାର ବର୍ଷତଳେ ବାସ କରୁଥିବା ଆର୍ଯ୍ୟମାନଙ୍କର କଥିତ ଭାଷା । ଏହି କଥିତ ଭାଷାରୁ ହିଁ ବୈଦିକ ଭାଷାର ଉତ୍ପତ୍ତି । ଏସିଆ ମହାଦେଶର ଉତ୍ତର-ପଶ୍ଚିମ ଅଞ୍ଚଳରେ ବା ଆଜିକାଲିକାର ରୁଷିଆ ଦେଶର ଦକ୍ଷିଣ ଅଞ୍ଚଳରେ ବେଦ ରଚିତ ହୋଇଥିବାର ଯେଉଁ ଅନୁମାନ କରାଯାଉଛି, ସେହି ଅନୁମାନ ଯଦି ସତ୍ୟ ହୋଇଥାଏ, ତେବେ ଏହା ନିଶ୍ଚିତ ଯେ ଏହି ଲୋକ ସେହି ଯୁଗର କଥିତ ସଂସ୍କୃତଭାଷା କହୁଛି । ହିନ୍ଦୁମାନଙ୍କର ପୁରାତନ ଧର୍ମଗ୍ରନ୍ଥ ବେଦର ସର୍ବପ୍ରଥମ ରଚନା ନୁହେଁ ଭାରତବର୍ଷରେ । ଏହା ରଚିତ ହୋଇଥିଲା କେନ୍ଦ୍ର ବା ଦକ୍ଷିଣ-ପଶ୍ଚିମ ଏସିଆରେ—ଆଜିକାଲି ଆମେ ଯାହାକୁ କହୁଛୁ ଦକ୍ଷିଣ ରୁଷିଆ ।

ଆଁ, ମୋଟେ ନୁହେଁ । ଚମକିପଡ଼ି ପଚାରିଲି—ବେଦ ରଚିତ ହୋଇଥିଲା ରୁଷିଆ ଦେଶରେ ? ବୃଦ୍ଧ ମେକ୍‌ଗିଲ୍‌ଙ୍କର ଏହା ପାଗଳାମି ନୁହେଁ ତ ? ତୁମର ମତ କଅଣ ସେଇଥି ଦେଶପାଣ୍ଡେ ?

ଆଃ, ତାହା କଅଣ ବର୍ତ୍ତମାନର ସମସ୍ୟା ରମେଶ ? ତାହା ହେଉଛି ଅଧ୍ୟାପକ ମେକ୍‌ଗିଲ୍‌ଙ୍କ ବ୍ୟକ୍ତିଗତ ମତ । ସେଥିରେ ଆମର ଯାଏ କେତେ ଆସେ କେତେ ? ତେବେ ସେ ପ୍ରିନ୍‌ସଟନ ଫେରିଯିବା ପୂର୍ବରୁ ସାମରିକ କର୍ତ୍ତୃପକ୍ଷଙ୍କୁ ଏତିକି କହିଗଲେ—ବୈଦିକ ଯୁଗ ପୂର୍ବରୁ ଆର୍ଯ୍ୟମାନେ ଯେଉଁ ସଂସ୍କୃତଭାଷା କହୁଥିଲେ, ସେହି ଭାଷା ହିଁ ସମ୍ଭବତଃ ଏହି ଲୋକର ଭାଷା । ଏ ଭାଷାରେ ବିଶେଷଜ୍ଞ ଥିବା ପଣ୍ଡିତ ସାରା ପୃଥିବୀରେ ଜଣେ ଲୋକ ଅଛି ବୋଲି ମୁଁ ଜାଣେ । ତୁମେମାନେ ଯଦି ତାଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିପାରିବ, ତାହାହେଲେ ଏହି ନବାଗତର ଭାଷାକୁ ବୁଝିବାକୁ ବିଶେଷ କଷ୍ଟକର ହେବନାହିଁ । ସେ ପଣ୍ଡିତଙ୍କର ନାଁ ହେଉଛି କ୍ଷିତୀଶ୍ ଚନ୍ଦ୍ର ଚୌଧୁରୀ, ଘର ବନାରସରେ । ଆଜକୁ ତିରିଶ ବର୍ଷ ତଳେ ସେ ବନାରସ ବିଶ୍ୱବିଦ୍ୟାଳୟର ସଂସ୍କୃତ ଅଧ୍ୟାପକ ଥିଲେ । ସେ ବର୍ତ୍ତମାନ ପର୍ଯ୍ୟନ୍ତ

ଜୀବିତ ଅଛନ୍ତି । ବହୁତ ବୃଦ୍ଧ ହୋଇଗଲେଣି । ତାଙ୍କ ଛଡ଼ା ମୋ ଜାଣିବାରେ ଆଉ କେହି ନାହିଁ, ଯେ କି ଏହି ନବାଗତର ଭାଷାକୁ ବୁଝିପାରିବ । ତେଣୁ ତୁମ୍ଭେମାନେ ତାଙ୍କ ସହିତ ଯୋଗସୂତ୍ର ସ୍ଥାପନକର ।

ସଙ୍ଗେ ସଙ୍ଗେ ନୂଆଦିଲ୍ଲୀ ସହିତ ଓ୍ୱାଶିଂଟନ୍‌ର କଥାବାର୍ତ୍ତା ଚାଲିଲା । ରାତାରାତି ସାମରିକ ବିଭାଗର ଜେଟ୍‌ବିମାନ ଚାଲିଲା ଭାରତ ଅଭିମୁଖେ । ସଙ୍ଗେ ସଙ୍ଗେ ଭାରତ ସରକାରଙ୍କ ବୈଦେଶିକ ବିଭାଗ ସେକ୍ରେଟେରୀ ଜେନେରାଲ୍‌ଙ୍କୁ ଧରି ଯୁକ୍ତରାଷ୍ଟ୍ର ସରକାରଙ୍କ ଜେନୈକ ଜେନେରାଲ୍ ରାତି ଦୁଇଟା ସମୟରେ ବନାରସରେ ତୁମ ଘରେ ଆସି ହାଜର । ସଙ୍ଗେ ସଙ୍ଗେ ତୁମ ପିତାମହଙ୍କୁ ସବୁ କଥା କହନ୍ତେ ସେ କହିଲେ—ଦେଖୁଛ ତ ତୁମ୍ଭେମାନେ ମୋ ଅବସ୍ଥା । ଏମିତି ଅବସ୍ଥାରେ ମୋର ଆମେରିକା ଯିବା କଅଣ ସମ୍ଭବପର ? ତେବେ ମୋର ଜନୈକ ଛାତ୍ରଙ୍କୁ ମୁଁ ତୁମ୍ଭମାନଙ୍କ ସହିତ ପଠାଇପାରେ, ଯେ କି ତୁମ୍ଭମାନଙ୍କୁ ଏ ଦିଗରେ ସାହାଯ୍ୟ କରିବାକୁ ସମର୍ଥ ହେବ । ତାକୁ ସାହାଯ୍ୟ କରିବା ପାଇଁ ମୋର ଆଉ ଜଣେ ଛାତ୍ର; ଯେ କି ତୁମ ଦେଶର ସାଣ୍ଟାଫେ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଛି. ତାକୁ ମଧ୍ୟ ସାଙ୍ଗରେ ନେଇପାର । ତା ଛଡ଼ା ମୋର ଜଣେ ନାତି ନିଉୟର୍କର କଲମ୍ବିଆ ବିଶ୍ୱବିଦ୍ୟାଳୟର ଗବେଷକ । ଏ ତିନିଜଣଯାକ ବୈଦିକ ଯୁଗର କଥିତ ସଂସ୍କୃତଭାଷାରେ ବେଶ୍ ସୁଦକ୍ଷ । ମୋର ଆଶା ମୁଁ ଏକା ଯାଇଥିଲେ ଯାହା କରିପାରିଥାନ୍ତି ତାଠାରୁ ଏ ତିନିହେଁ କିଛି କମ୍ କରିବେ ନାହିଁ ।

ପିତାମହଙ୍କ ନିର୍ଦ୍ଦେଶମତେ ମୁଁ ବନାରସ ଛାଡ଼ିଲି ଆମେରିକା ଅଭିମୁଖେ ସେହି ସାମରିକ ବିମାନରେ । ମୁଁ ପହଞ୍ଚିବା ପରେ ଭେଙ୍କଟରମଣଙ୍କୁ ହରଣଚାଲ କରାଗଲା ସାଣ୍ଟାଫେ ବିଶ୍ୱବିଦ୍ୟାଳୟରୁ । ସାମରିକ ବିଭାଗ ତୁମକୁ ହରଣଚାଲ କରିବାକୁ ସାହସ କଲେନି । କାରଣ, ତୁମେ ନିଉୟର୍କରେ ରହୁଥିବାରୁ ଏହି ହରଣଚାଲ ସାରା ଯୁକ୍ତରାଷ୍ଟ୍ରରେ ହୁଏତ ପ୍ରଚାରିତ ହୋଇଯାଇପାରେ । ତୁମେ ଜାଣିଛ, ଏହି ଖବର ସାମରିକ ବିଭାଗର ସବୁ ବିଭାଗ ଜାଣିନାହାନ୍ତି । ଯୁକ୍ତରାଷ୍ଟ୍ରର ପୋଲିସ୍ ଏପରିକି ଏଫ୍. ବି. ଆଇ. ଠାରୁ ଏହାକୁ ଗୋପନ ରଖାଯାଇଛି ।

ତାହେଲେ ସେ ଲୋକଟି କେଉଁ ଦେଶର ବୋଲି ଜଣାପଡ଼ିଲା ?

ମେକ୍‌ଗିଲ୍‌ଙ୍କ ମତକୁ ଉଦ୍ଧାର କରି ସାମରିକ ଅଫିସରମାନେ ନିଶ୍ଚିତ ଭାବେ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଏହି ଲୋକଟି ରୁଷିଆ ଦେଶର ଲୋକ । ରୁଷିଆ ଦେଶର ଲୋକ ଆମେରିକା ଆସିବାର ଆଉ କଅଣ କାରଣ ହୋଇପାରେ ? ଗୁପ୍ତଚର କାମ ନିଶ୍ଚୟ ।

ସାମରିକ ବିଭାଗକୁ ଗୋଟିଏ ବଡ଼ ଖାଦ୍ୟ ମିଳିଯାଇଥିବ ନିଶ୍ଚୟ ।

ସେ କଥା କହିବାକୁ ଅଛି; ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟଙ୍କୁ ଜଣାଇ ଦିଆଯାଇଥିଲା ଏ ରୁଷିଆ ଗୁପ୍ତଚର କଥା । ଏହି କମ୍ୟୁନିଷ୍ଟ ଗୁପ୍ତଚରକୁ ନେଇ ସାରା ଯୁକ୍ତରାଷ୍ଟ୍ରର ସାମରିକ ଅଫିସରମାନେ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ ।

—ତୁମେ ଆସି କଅଣ କଲ ତା' ହେଲେ ?

ମୁଁ ଆସି ପହଞ୍ଚିବା ପରେ ଭେଙ୍କଟରମଣଙ୍କୁ ଏଠାକୁ ଅଣାଗଲା । ଭେଙ୍କଟରମଣ ସାଣ୍ଟାଫେରେ ଏକ ନିର୍ଜ୍ଜନ ରାସ୍ତାରେ ଯାଉଥିଲେ । ତାଙ୍କୁ ଦୁଇଜଣ ସାମରିକ ଅଫିସର୍ ମୁହଁ ବାନ୍ଧିଦେଇ ସମସ୍ତଙ୍କ ଅଜଣାରେ ଏଠାକୁ ନେଇଆସିଲେ ।

ଭେଙ୍କଟରମଣ ଏହାକୁ ଦେଖି ଆଶ୍ଚର୍ଯ୍ୟ ତ ହୋଇଯାଇଥିବ ?

ଆଶ୍ଚର୍ଯ୍ୟ ? ଭୟରେ ତାର ଚେତା ବୁଡ଼ିଯାଇଥିଲା । ଏଠି ଆସି ପହଞ୍ଚିଲାବେଳକୁ ସେ ଅଚେତ । ତାକୁ ପାଣି ଛିଟି ମୁଁ ଚେତା କରାଇଲି ।

ତୁମକୁ ଦେଖି ସେ ତ ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇଯାଇଥିବ ?

ସେ କଥା ଆଉ କହିବାକୁ ଅଛି । ସେ ଭୟରେ ଯେମିତି ଜୁଡ଼ୁଜୁଡ଼ୁ ହୋଇଯାଇଥିଲା; ମୋତେ ଦେଖିନଥିଲେ ହୁଏତ କେତେବେଳଠୁଁ ତାର ହୃଦ୍‌ସ୍ପନ୍ଦନ କ୍ରିୟା ବନ୍ଦଯୋଗୁଁ ସେ ଇହଧାମ ତ୍ୟାଗ କରସାରନ୍ତାଣି ।

ମୋ ପାଖରୁ ସବୁକଥା ଶୁଣି ତାର ବିଶ୍ୱାସ ଆସିଲା । ସେ ଏତେ ଭୟତ୍ରସ୍ତ ହୋଇଯାଇଥିଲା ଯେ ତାର ମୁଣ୍ଡରେ କିଛି କଥା ପଶୁନଥିଲା । ଯେତେବେଳେ ସେ ଜାଣିଲା ବିପଦର କିଛି ସମ୍ଭାବନା ନାହିଁ, ତାକୁ ଭଲ ଉଦ୍ଦେଶ୍ୟରେ ହରଣଚାଲ କରାଯାଇଛି, ସେ ତା ମନପ୍ରାଣ ଦେଇ ଯୋଗଦେଲା ସେଇ ନବାଗତଟିର ଭାଷା ବୁଝିବାପାଇଁ । ଆମେ ବହୁତ ଚେଷ୍ଟାକରି ଆବିଷ୍କାର କଲୁ ଯେ ନବାଗତଟି ବୈଦିକ ଯୁଗର କଥିତ ସଂସ୍କୃତଭାଷା କହୁଛି ।

ଆଁ, ବୈଦିକ ଯୁଗର କଥିତ ସଂସ୍କୃତଭାଷା ? ସେ ତ ପାଞ୍ଚହଜାର ବର୍ଷ ତଳର ଭାଷା ! ତାକୁ ଯେ କେହି ଜାଣିଥିବ, ମୋର ତ ବିଶ୍ୱାସ ଆସୁନି ।

ହଁ, ଆମର ସେଥିରେ ସନ୍ଦେହ ନାହିଁ ।

ତାକୁ ପଚାରିଲାବେଳକୁ ସେ କଅଣ କହୁଛି ? ସେ ଏ ଭାଷା ଜାଣିଲା କେଉଁଠୁ !

ସେ କହୁଛି, ଏ ହେଉଛି ତାର ମାତୃଭାଷା ।

ଆଁ, ମାତୃଭାଷା ? ଅସମ୍ଭବ । ପୃଥିବୀରେ କଅଣ ଏବେ ବି କେଉଁଠି ଲୋକ ଅଛନ୍ତି; ଯେଉଁମାନେ କି ପାଞ୍ଚହଜାର ବର୍ଷ ତଳର କଥିତ ଭାଷା କହି-ବୋଲି ପାରନ୍ତି । ସେ କେଉଁ ସ୍ଥାନର ଲୋକ ବୋଲି କହୁଛି ?

ତା ଭାଷା ବୁଝିବାରେ ଆମର ଢେର୍ ଅସୁବିଧା ହେଉଛି । ଆମର ବିଶ୍ୱାସ ତୁମେ ଆମ ସହିତ ଯୋଗଦେଲେ ଆମେ କେହି ନବାଗତ ସଂପର୍କରେ ଅନେକ କିଛି ଜାଣିପାରିବା । ତୁମେ ତୁମ ପିତାମହଙ୍କ ଗୁଣ ଯେତେ ହାସଲ କରିଛ, ଆମେ କଅଣ ପାରିଛୁ ? ବୈଦିକ ଯୁଗର କଥିତ ଭାଷା ବୁଝିବା ଦିଗରେ ତୁମର ଦକ୍ଷତା ଯେ ଆମ ଦୁହିଁଙ୍କଠାରୁ ଅଧିକ ଏହା କଅଣ ତୁମେ ଭୁଲିଯାଉଛ ?”

“ଆଁ”—ସେଣ୍ଡି ଚମକି ପଡ଼ିଲା ମୋ କଥା ଶୁଣୁ ଶୁଣୁ । “ତୁମେ ସଂସ୍କୃତ ଭାଷାରେ କ’ଣ ତାହାହେଲେ ଜଣେ ପଣ୍ଡିତ ?”

"ସେଇଟା ମୋର ହବ ସେଣ୍ଟି ! ମୁଁ ଉଦ୍ଭିଦବିଜ୍ଞାନରେ ଜଣେ ବୈଜ୍ଞାନିକ ହେଲେହେଁ ସଂସ୍କୃତଭାଷାରେ ମୋର ବ୍ୟୁତ୍ପତ୍ତି ଥିଲା ମୋ ପିତା ଓ ପିତାମହଙ୍କ ପ୍ରଭାବରୁ ।"

"ସେ ଲୋକଟି ତାହାହେଲେ କେଉଁ ସ୍ଥାନର ବୋଲି ତୁମ ବନ୍ଧୁ କହିଲେ ରମେଶ ?" —ସେଣ୍ଟି, ମେରିଆ ଓ ଲିଜା ତିନିହେଁ ଏକସମୟରେ ପଚାରିଲେ ।

"ତୁମଭଳି ଠିକ୍ ଏହି ପ୍ରଶ୍ନ ପଚାରିଥିଲି ସେଦିନ ମୋର ବନ୍ଧୁ ଦେଶପାଣ୍ଡେଙ୍କୁ ଲିସ୍-ଭେଗାସ୍ସ୍ଥ ହୋଟେଲ ସାହାରାର ରୁଦ୍ଧକୋଠରି ଭିତରେ ।"

"ସେ କଅଣ ଉତ୍ତର ଦେଲେ ?"—ତିନିଜଣଙ୍କର ମିଳିତ କଣ୍ଠର ପ୍ରଶ୍ନ ।

ସେ ଲୋକଲାର କଥାବାର୍ତ୍ତାରୁ ଆମେ ଯାହା ଅନୁମାନ କଲୁ, ସେ ହେଉଛି ଆର୍ଯ୍ୟବଂଶଜ । ଅବସ୍ଥାଚକ୍ରରେ ପଡ଼ି ସେ ସୈନ୍ଧବ ଉପତ୍ୟାକାରେ ବାସ କରୁଥିଲା—ଦେଶ-ପାଣ୍ଡେ କହିଲେ ।

ତାହାହେଲେ ସେ କ'ଣ ବର୍ତ୍ତମାନ ପାକସ୍ଥାନର ଲୋକ ?—ମୁଁ ପଚାରିଲି ।

ନାଁ, ସେ ପାକସ୍ଥାନର ଲୋକ ନୁହେଁ । ସେ ଯେଉଁ ସମୟର କଥା କହୁଛି, ସେତେବେଳେ ପାକସ୍ଥାନ ଦୂରର କଥା, ଭାରତବର୍ଷର ବି ଉତ୍ପତ୍ତି ହୋଇନଥିଲା ।

ଆଁ, ଭାରତବର୍ଷ ? ମୋର ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ । ଦେଶପାଣ୍ଡେ ଯେ କଅଣ କହିବାକୁ ଚାହୁଛ, ବୁଝିପାରିଲିନି ।

ସେ କେଉଁ ଧର୍ମର ଲୋକ ?—ପଚାରିଲି ।

ସେ ଯେଉଁ ଧର୍ମର ନାଆଁ କହୁଛି ଆମେ କିଛି ବୁଝିପାରୁନୁ । ସେ ସେମିତି କୌଣସି ଧର୍ମର ଲୋକ ଭଳି ଜଣାପଡୁନି । ଯେମିତି ଜଣାପଡୁଛି, ଧର୍ମ କଅଣ ସେ ଜାଣେନି । ଭଗବାନ ଆଦି କିଛି ଜାଣେନି କି ସେକଥା କିଛି ବୁଝୁନି ।

ବଡ଼ ଅଦ୍ଭୁତ ଲୋକ ତା'ହେଲେ ? ସେ ଏମିତି ଅବୋଧ ବୋଲି ଅଭିନୟ କରୁନାହିଁ ତ ? କିଏ ଜାଣେ, ବହୁ ଗୁପ୍ତଚର ଏମିତି ବେଳେବେଳେ ଅଭିନୟ କରନ୍ତି ?

ନାଁ, ସେ ତା ନୁହେଁ, ଆମେ ପୂର୍ବଭାବରେ ନିଶ୍ଚିତ । ତା କଥାରୁ ଆମେ ଗୋଟିଏ କଥା ବୁଝୁଛୁ, ସେ ହେଉଛି ଅତି ପୁରାତନ ଯୁଗର ଲୋକ; ଏ ଯୁଗର ଲୋକ ନୁହେଁ । ଆମେ ଯାହା ଅନୁମାନ କରୁଛୁ, ସେ ଆଜକୁ ପ୍ରାୟ ପାଞ୍ଚ ବର୍ଷ ତଳେ ସେଇ ଅଞ୍ଚଳରେ ବସବାସ କରୁଥିଲା ।

ପାଞ୍ଚ ହଜାର ବର୍ଷ ତଳେ ? ସେ କଅଣ ପାଞ୍ଚ ହଜାର ବର୍ଷ ତଳର ମଣିଷ ?

ହଁ, ଆମର ଅନୁମାନ ହିଁ ତାହା ।

ସେ କଥା ଶୁଣି ମୋ ମୁଣ୍ଡ ଘୂରିଗଲା । ପାଞ୍ଚ ହଜାର ବର୍ଷ ତଳର ମଣିଷ ଏବେ ବି ବଞ୍ଚିଛି ରକ୍ତମାଂସ ଶରୀରରେ !

ତୁମେ ସ୍ୱପ୍ନ ଦେଖୁନାହିଁ ତ ଦେଶପାଣ୍ଡେ ? ତୁମ ମଥା ଠିକ୍ ଅଛି ତ ? ମୋତେ କିନ୍ତୁ ସବୁ ଗୋଳମାଳିଆ ଜଣାପଡୁଛି । ମନେହେଉଛି ତୁମ ମଥା ଯେମିତି ଠିକ୍ ନାହିଁ ।

ବିଶ୍ୱାସ କର ରମେଶ—ମୋ ମଥା ଠିକ୍ ଅଛି । ତୁମକୁ ମୂଳରୁ କଅଣ କହିଥିଲି ମନେ-ଅଛି ତ ? କହିଥିଲି, ମୁଁ ଏମିତି କଥା କହିବି, ତୁମେ କେବେ ବିଶ୍ୱାସ କରିପାରିବନି । ତୁମେ କାହିଁକି, ଏଡ଼େବଡ଼ ପୃଥିବୀରେ ବିଶ୍ୱାସ କରିବାକୁ ଜଣେ ଲୋକ ପାଇବା କଷ୍ଟକର ।

"ପାଞ୍ଚ ହଜାର ବର୍ଷ ତଳର ଲୋକ ?" ଯୁବତୀ ଚକିତହୋଇ ଚମକିପଡ଼ିଲେ । ସେଣ୍ଟି କହିଲି, "ଏହା କଣ କେବେ ସମ୍ଭବପର ହୋଇପାରେ ? ପାଞ୍ଚ ହଜାର ବର୍ଷ ତଳର ଲୋକ ଏବେ ବି ଆମଭଳି ରକ୍ତମାଂସର ଶରୀର ନେଇ ବଞ୍ଚିରହିଛି ? କିନ୍ତୁ ପ୍ରାଣୀବିଜ୍ଞାନ ତାହା ବା ସ୍ୱୀକାର କରିବ କେମିତି ? କୌଣସି ପ୍ରାଣୀ ପକ୍ଷରେ ବିଶେଷତଃ ମଣିଷ ପକ୍ଷରେ ପାଞ୍ଚ ହଜାର ବର୍ଷ ବଞ୍ଚିବା କେବେ ବି ସମ୍ଭବପର ହୋଇ ନ ପାରେ !"

"ତୁମେ ଆଜି ଯେତିକି ଆଶ୍ଚର୍ଯ୍ୟ ହେଉଛ ସେଣ୍ଟି, ତା ଠାରୁ ମୁଁ ଢେର୍ ଅଧିକ ଆଶ୍ଚର୍ଯ୍ୟ ହୋଇଥିଲି ସେଦିନ ହୋଟେଲ ଖାଦ୍ୟାଗାରରେ । ମୋର ବନ୍ଧୁଙ୍କର ବକ୍ତବ୍ୟ ମୋତେ ଖାଲି ଅସମ୍ଭବ ବୋଧ ହେଉନଥିଲା; ଜଣାପଡ଼ୁଥିଲା ପାଗଳର ପ୍ରଳାପ ବୋଲି । ମୁଁ ଯେତେବେଳେ ଦେଶପାଣ୍ଡେଙ୍କୁ ପଚାରିଲି, ସେ ଲୋକ ପାଞ୍ଚହଜାର ବର୍ଷ ତଳେ କେଉଁଠି ବସବାସ କରୁଥିଲା, ସେ କ'ଣ ଉତ୍ତର ଦେଲେ ଜାଣ ?

ସେ କହିଲେ, ସେ ଲୋକ ବସବାସ କରୁଥିଲା ସୈନ୍ଧବ ଉପତ୍ୟକାରେ—ସିନ୍ଧୁ ନଦୀ କୂଳରେ ଥିବା ଏକ ପ୍ରସିଦ୍ଧ ସହରରେ । ସେ ଲୋକ ସେହି ସହରର ଯେଉଁ ନାମ କହୁଛି, ସେ ନାମରୁ କିଛି ଜଣାପଡ଼ୁନି । ସହରର ଯେଉଁ ବର୍ଣ୍ଣନା ଦେଉଛି, ସେଥିରୁ ଏଠାକାର ହିନ୍ଦୁସଭ୍ୟତା-ବିଶେଷଜ୍ଞମାନେ ମତ ଦେଉଛନ୍ତି, ସେଇ ସହରଟି ହେଉଛି ପାଞ୍ଚ ହଜାର ବର୍ଷ ତଳର ମହେଞ୍ଜୋଦାରୋ ସହର । ମହେଞ୍ଜୋଦାରୋ ସହର ସେ ଯେଉଁ ନାମ କହୁଛି, ସେ ନାଆଁ କେଉଁ ପୁସ୍ତକରେ ନାହିଁ । ହୁଏତ ହୋଇ-ପାରେ, ଆମେ ଯାହାକୁ ଆଜିକାଲି ମହେଞ୍ଜୋଦାରୋ ନାଁରେ ଚିହ୍ନିତ କରୁଛୁ, ସେତେବେଳେ ସେ ସହରର ନାମ ହୁଏତ ଆଉ କିଛି ଅଲଗା ଥିଲା । ହୁଏତ କବାଗତଟି ଯେଉଁ ନାଆଁ କହୁଛି, ତାହାହିଁ ହୋଇପାରେ ମହେଞ୍ଜୋଦାରୋ ସହରର ପ୍ରକୃତ ନାମ ।

କେଉଁ ନାଆଁ ସେ କହୁଥିଲା ଦେଶପାଣ୍ଡେ ? ବନ୍ଧୁଙ୍କୁ ପଚାରିଲି ।

ମୋର ଠିକ୍ ମନେ ନାହିଁ । ସେଠାକୁ ଗଲେ ବଲେ ଜାଣିପାରିବ ।

ତାକୁ ଦେଖି ତୁମର କ'ଣ ମନେହେଉଛି ଯେ' ସେ ମହେଞ୍ଜୋଦାରୋ ସଭ୍ୟତା ଅମଳର ଲୋକ ବୋଲି ।

ଅସମ୍ଭବ ନୁହେଁ । ସେ ମହେଞ୍ଜୋଦାରୋ ସହରର ଯେଉଁ ବର୍ଣ୍ଣନା ଦେଇଯାଉଛି, ଏଠାକାର ମହେଞ୍ଜୋଦାରୋ-ସଭ୍ୟତାର ବିଶେଷଜ୍ଞମାନେ ମତ ଦେଉଛନ୍ତି, ତାହା ମାଟିତଳୁ ଖୋଳାହୋଇଥିବା ମହେଞ୍ଜୋଦାରୋ ସହରର ବର୍ଣ୍ଣନା ସହିତ ପୂରାପୂରି ମିଳିଯାଉଛି । ଏଠାକାର ମହେଞ୍ଜୋଦାରୋ-ସଭ୍ୟତା-ବିଶେଷଜ୍ଞମାନଙ୍କ ମତ ଯେ, ସେ ସେହି ସଭ୍ୟତାର ଲୋକ । ମହେଞ୍ଜୋଦାରୋ ସଭ୍ୟତା ଉପରେ ବିଶେଷ ଜ୍ଞାନଥିବା ଇଂରେଜ ଓ ଜର୍ମାନ୍

ବୈଜ୍ଞାନିକମାନେ ମଧ୍ୟ ସେଇ ମତ ଦେଇସାରିଲେଣି ।

—ମାର୍କିନ୍ ସାମରିକ ବିଭାଗ କଣ ତା ବିଶ୍ୱାସ କରୁଛନ୍ତି ?

—ମୋଟେ ନୁହେଁ, ସେମାନେ ଏହି ବିଶେଷଜ୍ଞମାନଙ୍କ ମତ ପ୍ରତି ମୋଟେ ଗୁରୁତ୍ୱ ଦେଉନାହାନ୍ତି । ସେମାନଙ୍କର ଏବେ ବି ବିଶ୍ୱାସ, ଏହି ଲୋକଟି ହେଉଛି ରୁଷିଆର ଗୁପ୍ତଚର । ଅବୋଧ ଭାବରେ ସୁନ୍ଦର ଅଭିନୟ କରି ସେମାନଙ୍କୁ ବୋକାବନାଉଛି ।

—ଜୀବବିଜ୍ଞାନୀମାନେ ଲୋକଟି ବିଷୟରେ କି ମତ ଦେଉଛନ୍ତି ? ସେମାନେ ଲୋକଟିକୁ କେତେ ବୟସର ବୋଲି କହୁଛନ୍ତି ?

—ଜୀବର ବୟସ ନିର୍ଦ୍ଧାରଣ ବିଷୟରେ ଦକ୍ଷତା ହାସଲ କରିଥିବା ଯୁକ୍ତରାଷ୍ଟ୍ରର ପ୍ରାୟ କୋଡ଼ିଏ ପଚିଶ ଜଣ ବିଶେଷଜ୍ଞ ଅଲଗା ଅଲଗା ଭାବରେ ପରୀକ୍ଷା କରି ମତ ଦେଇ ସାରିଲେଣି ଯେ, ଏ ଲୋକର ବୟସ ତିରିଶ ବର୍ଷରୁ ଅଧିକ ନୁହେଁ । ବହୁ ବୈଜ୍ଞାନିକଙ୍କର ମତ, ଏହି ନବାଗତର ବୟସ ପଞ୍ଚିଶରୁ ତିରିଶ ଭିତରେ ।

—ତାହେଲେ ଏ ଲୋକ ପାଞ୍ଚହଜାର ବର୍ଷ ତଳର ଲୋକ ହୋଇ ନପାରେ । କେଶର ଗଠନକ୍ରମରୁ କହିଦେଇ ହେବ, ଏ ଲୋକର ପ୍ରକୃତ ବୟସ କେତେ ! ଜୀବବିଜ୍ଞାନୀମାନଙ୍କ ମତକୁ ମୁଁ ପୂରାପୂରି ଗ୍ରହଣ କରିବି—କାରଣ ମୁଁ ବି ଜଣେ ଜୀବବିଜ୍ଞାନୀ ।

—କିନ୍ତୁ ନୃତତ୍ତ୍ୱବିଜ୍ଞାନୀମାନେ କଣ ମତ ଦେଇଛନ୍ତି ଜାଣିଛ ?—ଦେଶପାଣ୍ଡେ କହିଲେ । ହଁ, ସେମାନଙ୍କ ମତ କଅଣ—ପଚାରିଲି ।

—ସେମାନଙ୍କ ମତ ହେଉଛି ଏହି ନବାଗତର ଶରୀରଗଠନ, ଶରୀରର ବର୍ଣ୍ଣ, ମୁଖମଣ୍ଡଳର ଗଠନ, ଆକୃତି, ପାଞ୍ଚହଜାର ବର୍ଷ ତଳର ଆର୍ଯ୍ୟଲୋକଙ୍କର ସେସବୁ ସହିତ ମିଳିଯାଉଛି । ସେମାନେ ଏହି ନବାଗତର ଶରୀରର ବିଭିନ୍ନ ଅଂଶକୁ ମାପି ନିର୍ଧାର୍ଯ୍ୟ ଭାବରେ ପ୍ରମାଣ କରିଛନ୍ତି ଯେ ଏ ଲୋକ ଆର୍ଯ୍ୟବଂଶଜ—ପୁଣି ବିଶୁଦ୍ଧ ଆର୍ଯ୍ୟ । ପୃଥିବୀରେ ବର୍ତ୍ତମାନ ବସବାସ କରୁଥିବା ଆର୍ଯ୍ୟମାନଙ୍କ ଭଳି ଏ ମିଶ୍ରବଂଶଜ ନୁହେଁ । ସେମାନଙ୍କ ମତ, ପୃଥିବୀର କୌଣସି ଅଞ୍ଚଳରେ ଏଭଳି ଶୁଦ୍ଧ ବଂଶଜ ଆର୍ଯ୍ୟ ବସବାସ କରୁନାହାନ୍ତି । ଏହି ଲୋକଟି ଯେତେବେଳେ ଶୁଦ୍ଧ ଆର୍ଯ୍ୟବଂଶଜ ତେବେ ସେ ପାଞ୍ଚହଜାର ବର୍ଷ ତଳେ ବାସକରୁଥିବା ଅମିଶ୍ରିତ ଆର୍ଯ୍ୟଜାତି ଭିତରୁ ନିଶ୍ଚୟ ଜଣେ ।

—କିନ୍ତୁ ମହେଞ୍ଜୋଦାରୋରେ ତ ଆର୍ଯ୍ୟମାନେ ବାସ କରୁ ନ ଥିଲେ ? ଏ ପୁଣି ସେଠାରୁ ଆସିଲା କେମିତି ?—ପଚାରିଲି ।

—ତା ସହିତ ଆଲୋଚନାରୁ ଆମେ ଯାହା ଅନୁମାନ କରୁଛୁ, ସେ ପ୍ରକୃତରେ ମହେଞ୍ଜୋଦାରୋର ଅଧିବାସୀ ନୁହେଁ । ସେ ମହେଞ୍ଜୋଦାରୋଠାରୁ ବହୁ ଦୂରରେ ଏକ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିଲା । ସେ ଶ୍ରେଷ୍ଠ ହୋଇଥିବାବେଳେ ତା' ପିତାମାତା ଇହଧାମ ତ୍ୟାଗ କରିଥିଲେ । ସେ ନିଜ ମେଷ ଓ ଗୋରୁ ପାଳି ଜୀବନଧାରଣ କରୁଥିଲା । ମେଣ୍ଢା, ଗୋରୁ ଆଦି ଚରାଇ ପେଟ ପୋଷିବା ତାର କାମ ଥିଲା । ତା' ନିଜର ମେଣ୍ଢା ଓ

ଦୌରୁ ସ୍ବୈରହୋଇଯିବାରୁ ସେ ଜଣେ ଶ୍ରମିକ ଭାବରେ ମହେଞ୍ଜୋଦାରୋ ସହରରେ ଆଶ୍ରୟ ନେଇଥିଲା । ମହେଞ୍ଜୋଦାରୋର ସୁସଭ୍ୟ ଲୋକମାନେ ତାକୁ ଅସଭ୍ୟ ବୋଲି ଘୃଣା କରୁଥିଲେ । ହେଲେହେଁ ମହେଞ୍ଜୋଦାରୋରେ ଶ୍ରମିକସଂଖ୍ୟା କମ୍ ଥିବାରୁ ସେମାନେ ତାକୁ ସହରର ଏକ କୋଣରେ ଆଶ୍ରୟ ଦେଇଥିଲେ । ମହେଞ୍ଜୋଦାରୋର ଲୋକମାନେ ଯେଉଁ ଜାତିର, ସେ ସେମାନଙ୍କଠାରୁ ପୃଥକ୍ ବୋଲି ଏବେ ବି କହୁଛି । ଏଥିରୁ ଆମେ ଭାବୁଛୁ, ସେ ଆର୍ଯ୍ୟ ହୋଇପାରେ ।

—ହଁ, ହୋଇପାରେ; କିନ୍ତୁ—

—ସେ ବି କହୁଛି, ତାର ବଂଶର ଲୋକେ ଏବେ ବି ସେହି ପାର୍ବତ୍ୟ ଅଞ୍ଚଳରେ ଗୋମେଷ ଆଦି ଚରାଉଥିବେ । ପୃଥିବୀ ଆଜି ବେଶ୍ ଉନ୍ନତ ହୋଇଛି ବୋଲି ସେ ଜାଣିଛି । ସେ ଭାବୁଛି, ଏସବୁ ସଭ୍ୟ ଲୋକେ ହେଉଛନ୍ତି ମହେଞ୍ଜୋଦାରୋ ସହରର—ତା ଲୋକେ ଏବେ ବି ବଣ ପାହାଡ଼, ପାର୍ବତ୍ୟ ଅଞ୍ଚଳରେ ଗୋମେଷାଦି ଚରାଇ ପେଟ ପୋଷୁଥିବେ । ସେ କହେ —ସେ ସେଠାରେ ଥିବାବେଳେ ତା ଜାତିର ଲୋକେ ବଡ଼ କଷ୍ଟରେ ପେଟ ପୋଷୁଥିଲେ । ସେମାନେ ମହେଞ୍ଜୋଦାରୋର ଲୋକଙ୍କ ଭଳି ସୁଖରେ ବିଳାସରେ କାଳାତିପାତ କରିପାରୁ ନଥିଲେ । ତେଣୁ ସେମାନଙ୍କର ମହେଞ୍ଜୋଦାରୋର ଲୋକଙ୍କ ପ୍ରତି ବଡ଼ ଈର୍ଷା ଥିଲା । ସେଥିପାଇଁ ସେମାନେ କେତେଥର ଯେ ମହେଞ୍ଜୋଦାରୋ ସହର ଆକ୍ରମଣ କରିଛନ୍ତି, ତାର କଳନା ନାହିଁ । ଯୁଦ୍ଧଭୟରୁ ମହେଞ୍ଜୋଦାରୋର ଅଧିବାସୀମାନେ ସେମାନଙ୍କୁ ଲାଞ୍ଚ ଦେଇ ପ୍ରତି ଥର ଫେରାଇଦଅନ୍ତି । ନବାଗତର ମତ, ହୁଏତ ଏବେ ବି ସେଠାରେ ସେହି ଆକ୍ରମଣର ଭୟ ଥିବ ।

—ତାକୁ ପଚାରିଛ କି ଦେଶପାଣ୍ଡେ, ସେ ଯେଉଁ ମହେଞ୍ଜୋଦାରୋର ଅନୁଭୂତି କଥା କହୁଛି, ତାକୁ ସେତେବେଳେ କେତେ ବର୍ଷ ବୟସ ହୋଇଥିଲା ?

—ହଁ, ପଚାରିଥିଲି । ସେ କହୁଥିଲା—ତାକୁ ସେତେବେଳେ କୋଡ଼ିଏ ବର୍ଷରୁ ଅଧିକ ବୟସ ହୋଇନଥିଲା ।

—ଦେଖ, ତା ଯଦି ସତ ହୁଏ, ତେବେ ତାର ପନ୍ଦର କୋଡ଼ିଏ ବର୍ଷ ଭିତରେ ପୃଥିବୀରେ ପାଞ୍ଚହଜାର ବର୍ଷ କେମିତି କଟିଯିବ ? ଏ କଥା କେମିତି ସମ୍ଭବପର ମୁଁ ଧାରଣା କରିପାରୁନାହିଁ ।

—ମୁଁ ଆଉ ଭେଙ୍କଟରମଣ ବି । ଆମେ ଏହାର କିଛି ସମାଧାନ ପାଉନାହୁଁ । ଏ ବିଷୟରେ ବୁଝିବାପାଇଁ ଯେତେ ଚେଷ୍ଟା କରୁଛୁ,ଆମର ସବୁ ଚିନ୍ତା ସେତେ ଗୋଳମାଳ ହୋଇଯାଉଛି ।

—ବଡ଼ ବିଚିତ୍ର ଲାଗୁଚି ଶୁଣିବାକୁ, ଲୋକଟି ପାଞ୍ଚହଜାର ବର୍ଷ ତଳର ! କିନ୍ତୁ ତାର ବୟସ ପାଞ୍ଚହଜାର ବର୍ଷ ନୁହେଁ; ବର୍ଷ ପୁଣି ପଞ୍ଚବିଂଶ କି ତ୍ରିଂଶ ଭିତରେ ! ଏହା କେମିତି ସମ୍ଭବ ମୁଁ ଭାବିପାରୁନାହିଁ ।

—କିନ୍ତୁ ରମେଶ, ଏହା ସମ୍ଭବ । ଅବଶ୍ୟ ଏହା ମୋର ମତ ନୁହେଁ । ସେନାପ୍ରାଉଣୀଙ୍କୁ

ମନ୍ତ୍ରଣା ପାଇଁ ନମନ୍ତ୍ରିତ ହୋଇ ଆସିଥିବା କେତେଜଣ ବଡ଼ ବଡ଼ ପଦାର୍ଥବିଦ୍ୟାବିତ୍‌ ଏହାକୁ ମୋଟେ ଅସମ୍ଭବ ବୋଲି ଭାବୁନାହାନ୍ତି । ସେମାନଙ୍କ ମତ ଯେ—ଆପେକ୍ଷିକତତ୍ତ୍ୱକୁ ଆଲୋଚନାକୁ ନେଲେ ଏହା ଏତେ ଅସମ୍ଭବ ବୋଲି ଜଣାପଡ଼ିବ ନାହିଁ । ସେମାନେ କହନ୍ତି, ଜଣେ ଲୋକ ସିନା ପାଞ୍ଚହଜାର ବର୍ଷ ବଞ୍ଚିପାରିବ ନାହିଁ; କିନ୍ତୁ ଯଦି ତାର ତିରିଶ ଚାଳିଶ ବର୍ଷ ବୟସ ଭିତରେ ପାଞ୍ଚହଜାର ବର୍ଷ ବିତି ଯାଇପାରିଲା, ତାହାହେଲେ ଲୋକଟାର ବୟସ ବିଷୟରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

—ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯେତେବେଳେ ପାଞ୍ଚହଜାର ବର୍ଷ ପୃଥିବୀରେ ବିତିଯାଇଛି, ଲୋକଟାର ବୟସ କ'ଣ ସେମିତି ସ୍ଥିର ହୋଇ ରହିଥିବ ? ସେ ପରା ପୃଥିବୀର ଲୋକ ? ଖାଲି ପୃଥିବୀର ବୟସ ବଢ଼ୁଥିବ – ସେ ସେଇ ବୟସ ନେଇ ବସିଥିବ ?

—ସେ ସିନା ପୃଥିବୀରେ ରହିଲେ ତାର ବୟସ ବଢ଼ିବ ପୃଥିବୀ ସଙ୍ଗେ; ସେ ଯଦି ପୃଥିବୀ ବାହାରକୁ ଚାଲିଯାଏ ଓ ପୃଥିବୀ ବାହାରକୁ ଚାଲିଯିବା ସଙ୍ଗେ ସଙ୍ଗେ ସମୟର ଗତି ତା ପାଇଁ ଧୀର ହୋଇଯାଏ, ତେବେ ପୃଥିବୀର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା ବୟସ ବଢ଼ିବାର ତ କିଛି କାରଣ ନାହିଁ । ତାଠାରେ ସମୟର ଗତି ଧୀର ହୋଇଥିବାରୁ ତା ବୟସ ବଢ଼ିବନି ସାଧାରଣ ଗତିରେ । ତା ବୟସ ଖୁବ୍ ଧୀରେ ଧୀରେ ବଢ଼ିବାବେଳେ ପୃଥିବୀର ବୟସ ଏଣେ ସାଧାରଣ ଗତିରେ ବଢ଼ି ବଢ଼ି ଚାଲିଥିବ । ତେଣୁ ସେଭଳି ଅବସ୍ଥାରେ ସେ ଲୋକକୁ ପନ୍ଦର କୋଡ଼ିଏ ବର୍ଷ ଅଧିକ ହେଲାବେଳକୁ ପୃଥିବୀରେ ପାଞ୍ଚହଜାର ବର୍ଷ ବିତିଯିବା କିଛି ଅସମ୍ଭବ ନୁହେଁ ।

—ତୁମେ ଯେ କଣ କହୁଛ, ମୁଁ ବୁଝିପାରୁନି ଦେଶପାଣ୍ଡେ । ତୁମେ ଯାହା କହୁଛ ନିଜେ ବୁଝିଛ ଟି ?

—ମୁଁ ଯେ ଏହାକୁ ପୂରାପୂରି ବୁଝିଛି ତାହା ନୁହେଁ । ସେନାଗୁଣ୍ଡରେ ପଦାର୍ଥ-ବିଦ୍ୟାବିତ୍‌ମାନେ ସାମରିକ ଅଫିସର୍‌ମାନଙ୍କୁ ଯାହା ବୁଝାଉଥିଲେ, ସେଥିରୁ ମୁଁ ଏଇ ଅଳ୍ପ ଯାହା କିଛି ମନେରଖିଛି ।

—ସାମରିକ ଅଫିସରମାନେ ବୁଝିଲେ ତ ?

—ମୋଟେ ନୁହେଁ । ସେମାନେ କଣ ବିଶ୍ୱାସ କରୁଛନ୍ତି ଯେ ଏ ହେଉଛି ପାଞ୍ଚହଜାର ବର୍ଷ ତଳର ଲୋକ ? ସେମାନେ ଏପର୍ଯ୍ୟନ୍ତ ଧରିବସିଛନ୍ତି, ଲୋକଟି ରୁଷିଆର ଗୁପ୍ତଚର—ଅତି ଚତୁରତାର ସହିତ ସେମାନଙ୍କୁ ଭଳେଇ ବୋକା ବନାଇବାର ଚେଷ୍ଟାରେ ଅଛି । କିଏ ଜାଣେ—ଦିନେ ସେ ସମସ୍ତଙ୍କୁ ବୋକାବନାଇ ସେମାନଙ୍କ ହାତରୁ ଖସିନଯିବ ?

—ସାମରିକ ଅଫିସରମାନଙ୍କୁ ବୈଜ୍ଞାନିକମାନେ ବୁଝାଇବା ପାଇଁ କହୁଥିଲେ—ମନେକର, ଜଣେ ଲୋକ ୧୯୬୬ ମସିହାରେ ପୃଥିବୀ ବାହାରକୁ ଗଲା । ସେ ପୃଥିବୀ ବାହାରେ ବୁଲିବୁଲି କରି ତାର ହିସାବ ଅନୁସାରେ ପନ୍ଦର ବର୍ଷ ପରେ ପୁଣି ପୃଥିବୀକୁ ଫେରିଆସିଲା । କିନ୍ତୁ ଫେରିଆସି ଏଠାକାର ଲୋକଙ୍କୁ ଯେତେବେଳେ ପଚାରିଲା, ଏଠାକାର

ଲୋକ ଯଦି କହନ୍ତୁ ଯେ ୭୦୦ ଖ୍ରୀଷ୍ଟାବ୍ଦ ଚାଲିଲାଣି, ତେବେ ସେ ଲୋକଟାକୁ ୫୦୦୦ ବର୍ଷ ତଳର ବୋଲି କ'ଣ କହିବ ନାହିଁ ? କିନ୍ତୁ ପ୍ରକୃତରେ ତା' ବୟସ ମୋଟେ ପନ୍ଦର ବର୍ଷ ବୃଦ୍ଧିପାଇଛି । ଆପେକ୍ଷିକତତ୍ତ୍ୱର ଏହି ସମ୍ଭାବନାଟାକୁ ତ ବାଦ୍ ଦେଇ ହେବନି !

—କିନ୍ତୁ ସେଇଠି ତ ହେଉଛି କଥା । ପୃଥିବୀର ୫୦୦୦ ବର୍ଷ ବିତିଗଲାବେଳକୁ ତାର ବୟସ ମୋଟେ ୩୦ ବର୍ଷ ବଢ଼ିଥିବ କେମିତି ?

—ଅବଶ୍ୟ ସେକଥା ମୁଁ ତୁମକୁ ବୁଝାଇ ପାରିବିନି ରମେଶ ! କାହିଁକି ନା, ମୁଁ ଯେତିକି ଶୁଣିଛି ସେତିକି ମାତ୍ର କହୁଛି—ଏହାଠାରୁ ଅଧିକ କହିବା ଶକ୍ତି ମୋର ନାହିଁ ।

—ତେବେ ସେମାନଙ୍କ ଆଲୋଚନାରୁ ମୁଁ ଏତିକି ଜାଣିଛି ଯେ, କୌଣସି କାରଣବଶତଃ ଏହି ଲୋକଟି ଯଦି ପୃଥିବୀ ବାହାରକୁ ଯାଇ ତା ସମୟ ହିସାବ ଅନୁଯାୟୀ ପନ୍ଦର ବର୍ଷ ପରେ ପୃଥିବୀପୃଷ୍ଠକୁ ଫେରିଆସିଲା, ଏଠିପହଞ୍ଚି ସେ ଦେଖିବା ଅସମ୍ଭବ ନୁହେଁ ଯେ ଏଠାରେ ଇତିମଧ୍ୟରେ ୫୦୦୦ ବର୍ଷ ଗତ ହୋଇଯାଇଛି । ସେ ଲୋକ ପୃଥିବୀ ବାହାରକୁ ଗଲାବେଳେ ତାକୁ ଯଦି କୋଡ଼ିଏ ବର୍ଷ ହୋଇଥିବ, ୫୦୦୦ ବର୍ଷ ପରେ ତାହାକୁ ମାତ୍ର ପଞ୍ଚତିରିଶି ବର୍ଷ ହୋଇଥିବ । ସେମାନେ କହୁଥିଲେ, ସେ ଯଦି ଏହି ପନ୍ଦର ବର୍ଷ କାଳ ଆଲୋକବେଗର ପାଖାପାଖି ବେଗରେ ମହାଶୂନ୍ୟରେ ବିଚରଣ କରୁଥିବ ତେବେ ତା ପାଇଁ ସମୟ ସାଧାରଣ ସ୍ୱାତରେ ନ ଯାଇ ଏତେ ଧୀରେ ଧୀରେ ଗତି କରିବ ଯେ, ତାର ପନ୍ଦର ବର୍ଷ କଟିଲା ବେଳକୁ ସାଧାରଣ ସମୟ ୫୦୦୦ ବର୍ଷ ବିତିଯାଇଥିବ । ବୈଜ୍ଞାନିକ ଆଇନଷ୍ଟାଇନଙ୍କ ଆପେକ୍ଷିକତତ୍ତ୍ୱ ସିଦ୍ଧାନ୍ତକୁ ବିଚାରକୁ ନେଲେ ଏହି ସମୟର ତାରତମ୍ୟ କିଛି ଅସମ୍ଭବ ନୁହେଁ । ସେମାନେ ଏଠାର ସାମରିକ ଅଫିସରମାନଙ୍କ ସମକ୍ଷରେ ପ୍ରକାଶ କଲେ ଯେ, ଜଣେ ଲୋକ ଯଦି ଆଲୋକବେଗର ପାଖାପାଖି ବେଗରେ ଏଣ୍ଡ୍ରୋମେଡ଼ା ନିହାରିକାକୁ ଯାଏ, ତେବେ ସେ ସେହି ନିହାରିକାରୁ ଫେରିଆସିଲାବେଳକୁ ତାକୁ ମାତ୍ର ସାଢ଼େ ସତେଇଶ ବର୍ଷ ଅଧିକ ହୋଇଥିବା ସ୍ଥଳେ ପୃଥିବୀରେ ତିରିଶ ଲକ୍ଷ ବର୍ଷ ଅତିବାହିତ ହୋଇଯାଇଥିବ । ସେହି ଲୋକଟି ଯଦି ପୃଥିବୀ ଛାଡ଼ିଥାଏ କୋଡ଼ିଏ ବର୍ଷ ବୟସରେ, ତେବେ ସେ ପୃଥିବୀକୁ ଫେରିଆସିଲାବେଳକୁ ତାକୁ ସାଢ଼େ ସତଚାଳିଶ ବର୍ଷ ହୋଇଥିବା ସ୍ଥଳେ ପୃଥିବୀରେ ତିରିଶ ଲକ୍ଷ ବର୍ଷ ଅତିବାହିତ ହୋଇଯାଇଥିବ । ସେମାନେ ପଚାରିଥିଲେ ଏହି ଲୋକକୁ, ତୁମେ ତିରିଶ ଲକ୍ଷ ବର୍ଷ ତଳର ଜୀବନ୍ତ ମଣିଷ କହିବ ନାହିଁ ତ କଣ କହିବ ? କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ବିଭାଗର ଅଧ୍ୟାପକ ମେକମିଲନ୍ ଏହି ଅଙ୍କ ଦିନ ତଳେ ଗଣନାକରି ଯାହା ପ୍ରତିପାଦନ କରିଛନ୍ତି, ତାକୁ କେହି ଅସ୍ୱୀକାର କରିନପାରେ । ଖାଲି ସେତିକି ନୁହେଁ, କାଳେ ବାସ୍ତବ ପରୀକ୍ଷାଦ୍ୱାରା ଏହା ମଧ୍ୟ ପ୍ରତିପାଦିତ ହୋଇଯାଇଛି । ମୋର ଠିକ୍ ମନେ ନାହିଁ—ମାତ୍ର ସେମାନେ କଣ କହୁଥିଲେ, ମିଉ-ମେସନ୍ ନାମକ କଣିକାକୁ ଆଲୋକବେଗ ପ୍ରଦାନ କଲାରୁ ତାହାର ଜୀବନକାଳ ବଢ଼ି ଯାଉଛି । ଜୀବନକାଳ ବଢ଼ିବାର ଅର୍ଥ, ସେମାନେ କହୁଛନ୍ତି, ତା'ଠାରେ ସମୟର

ବେଗ କମିଯାଉଛି ।

ଏଁ, ତିରିଶି ଲକ୍ଷ ବର୍ଷ ? ଜଣେ ଲୋକ ଅବସ୍ଥାଚକ୍ରରେ କ'ଣ ତିରିଶି ଲକ୍ଷ ବର୍ଷ ବଞ୍ଚିପାରେ ?

ସେମାନେ ତ ସେଇଆ କହୁଥିଲେ । ଆହୁରି କହୁଥିଲେ, ତିରିଶି ଲକ୍ଷ ବର୍ଷ କାହିଁକି କୋଟି କୋଟି ବର୍ଷ ବି ଜଣେ ଲୋକ ରକ୍ତମାଂସର ଶରୀର ନେଇ ବଞ୍ଚିପାରେ । ଜଣେ ଲୋକ ଯଦି ଆଲୋକବେଗ ପାଖାପାଖି ବେଗରେ ମହାଶୂନ୍ୟରେ ଘୂରିବୁଲେ, ତେବେ ତା ପକ୍ଷରେ ରକ୍ତମାଂସ ଶରୀର ନେଇ କୋଟି କୋଟି ବର୍ଷ ବଞ୍ଚିରହିବା କିଛି ଅସମ୍ଭବ ନୁହେଁ ।

ତମେ ଯେ କଣ କହୁଛ ମୁଁ ବୁଝିପାରୁନି ଦେଶପାଣ୍ଡେ ! ତୁମ କଥା ଶୁଣି ମୋ ମୁଣ୍ଡ ଗୋଲମାଲ ହୋଇଯାଉଛି । ମୋତେ କିଛି ସମୟ ଭାବିବାକୁ ଦିଅ । ମୁଁ ଆଗ ଭାବେ ତୁମ କଥାଟାକୁ । ନ ଭାବିଲେ ମୁଁ କିଛି ହୃଦୟଙ୍ଗମ କରିପାରୁନି ।

ଦୁଆରେ ହଠାତ୍ ଠକ୍ ଠକ୍ ଶବ୍ଦ ହେଲା ।

ଦେଶପାଣ୍ଡେ କହିଲେ—ହେଇ ବୋଧହୁଏ ଆସିଗଲେ ସେମାନେ । ଆମର ଡେରି ହେବା ଦେଖି ସେମାନେ ଆମକୁ ନେବାପାଇଁ ଆସିଗଲେଣି ।

ସଙ୍ଗେ ସଙ୍ଗେ ଦେଶପାଣ୍ଡେ ଦୁଆର ଖୋଲିଦେଲେ । ଦେଖିଲୁ, ଦୁଇଜଣ ସାମରିକ ଅଫିସର୍ ଦୁଆରମୁହଁରେ ଠିଆହୋଇଛନ୍ତି । ଆମକୁ ନେବାପାଇଁ ତଳେ ଏକ ବିରାଟ ଗାଡ଼ି ଥୁଆହୋଇଛି ।

ମୁଁ ଓ ଦେଶପାଣ୍ଡେ ଯାଇ ଗାଡ଼ିରେ ବସିଲୁ । ଦେଶପାଣ୍ଡେଙ୍କୁ ହିନ୍ଦୀ ଭାଷାରେ ପଚାରିଲି, ଆମେମାନେ ଏଠି ଅଛେ ବୋଲି ସେମାନେ ଜାଣିଲେ କେମିତି ?

ମୁଁ ପରା ତୁମକୁ କହିଥିଲି ରମେଶ ! ଆମ ଗତିବିଧି ଉପରେ ସେମାନଙ୍କର ଗୋଇନ୍ଦା ବିଭାଗ ପୂରାପୂରି ଦୃଷ୍ଟି ରଖିଛି । ଆମେ ଏଇ ହୋଟେଲରେ ଅଛେ, ସେମାନେ କଣ ଏତିକି ଜାଣିପାରିବେନି ?

ଯାହା କୁହ; ଆମେ ଆଚ୍ଛା ଭଲୁ ଧରିଲେ ଦେଶପାଣ୍ଡେ ! ଆଚ୍ଛା ସଂସ୍କୃତଭାଷା ଜାଣିଲେ ଯେ ସେଥିପାଇଁ ଏତେ ହଇରାଣ !

ଆମ ପାଖରେ ବସିଥିବା ସାମରିକ ଅଫିସର ଜଣକ କଣ ବୁଝିଲେ କେଜାଣି, ଅଳ୍ପ ହସି କହିଲେ—ଆପଣମାନେ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ଦେଖନ୍ତୁ; ଏଟା ଖାଲି ଆମ ସମସ୍ୟା ନୁହେଁ, ସାରା ପୃଥିବୀର ସମସ୍ୟା । ଆପଣମାନେ ଯେ ଆମକୁ ସାହାଯ୍ୟ କରୁଛନ୍ତି, ଏହା ଅତି ସୁଖର କଥା । ଆପଣମାନଙ୍କ ସାହାଯ୍ୟ ନ ପାଇଲେ ଆମେ ଏ ଦିଗରେ ଆଗେଇବୁ କେମିତି କହିଲେ ? ଏଥିପାଇଁ ଯଦି କିଛି ଅସୁବିଧା ହେଉଛି, ତେବେ ସେଥିପାଇଁ କିଛି ମନେକରିବେନି ଆଜ୍ଞା !

ଦେଶପାଣ୍ଡେଙ୍କୁ ସାମାନ୍ୟ ଖେଞ୍ଚିଦେଇ ଚୁପ୍‌ଚୁପ୍ ପଚାରିଲି—ଏ ଆମ କଥା ବୁଝି-

ପାରଲେ କେମିତ ?

ଦେଶପାଣ୍ଡେ ସେଇ ଯୁବକ ଅଫିସର୍‌ଙ୍କୁ ପଚାରଲେ— ଆପଣ ବୋଧହୁଏ ଆମ ହିନ୍ଦୀ କଥା ବୁଝିପାରୁଛନ୍ତି ?

ଯୁବକଟି ମୁଣ୍ଡ ହଲାଇ କହିଲା—ହଁ, ମୁଁ ଅଳ୍ପ ଅଳ୍ପ ହିନ୍ଦୀଭାଷା ବୁଝିପାରେ । ଗତ ଦ୍ୱିତୀୟ ମହାସମରବେଳେ ମୁଁ ଭାରତବର୍ଷରେ ଢେର୍ ଦିନ ଥିଲି । ତେଣୁ ହିନ୍ଦୀଭାଷା ଅଳ୍ପ ଅଳ୍ପ ବୁଝିପାରିବି ସିନା, କହିପାରିବି ନାହିଁ ।

ମନେ ମନେ ଭାବିଲି ଏହା ଆଉ ଏକ ବିପଦ । ହିନ୍ଦୀରେ ଆମ ଭିତରେ କଥାବାର୍ତ୍ତା ହେବା ଆଉ ସମ୍ଭବ ନୁହେଁ ।

## ତିନି

ଫ୍ଲୋଆନ୍ ସେନାଗୁଉଣୀରେ ପହଞ୍ଚିଲିବେଳକୁ ସ୍ୱାତ ଦଶଟା । ଆମେ ପହଞ୍ଚିଲିବେଳକୁ ସେନାଗୁଉଣୀର ସାମରିକ ଅଫିସର ତଥା ବୈଜ୍ଞାନିକମାନଙ୍କର ଏକ ଅଧିବେଶନ ବସିଛି । ଆଲୋଚନାର ବିଷୟବସ୍ତୁ ଆଉ କିଛି ନୁହେଁ, ସେହି ନବାଗତଟି । ଦେଶପାଣ୍ଡେ ଓ ଭେଙ୍କଟରମଣ ନବାଗତର ବକ୍ତବ୍ୟକୁ ଯେମିତିଭାବରେ ଅନୁବାଦ କରି ବୈଜ୍ଞାନିକ ତଥା ସାମରିକ ଅଫିସରମାନଙ୍କ ଆଗରେ ଥୋଇଛନ୍ତି, ସେହି ଅନୁସାରେ ଆଲୋଚନା ଚାଲିଛି । ନବାଗତର ଶରୀରର ପ୍ରତ୍ୟେକ ଅଂଶ ପରୀକ୍ଷା ହୋଇସାରିଲାଣି । ରକ୍ତ, ଚର୍ମ, ପରିସ୍ରାଠାରୁ ଆରମ୍ଭ କରି ବାଳ, ନଖ, ହାଡ଼, କଙ୍କାଳ ପର୍ଯ୍ୟନ୍ତ କୌଣସିଟି ବାଦ୍ ଯାଇନି । ସମସ୍ତଙ୍କ ମନରେ ଉତ୍କଣ୍ଠା— ଯଦି କିଛି ନୂଆ କଥା ସେମାନେ ଆବିଷ୍କାର କରିପାରନ୍ତି ସେହି ନବାଗତ ବିଷୟରେ !

ଆମକୁ ସିଧାସଳଖ ନିଆଗଲା ସେହି ଆଲୋଚନା କକ୍ଷକୁ । ଆଲୋଚନାକକ୍ଷରେ ଭେଙ୍କଟ-ରମଣଙ୍କୁ ବସିଥିବା ଦେଖି ତାଙ୍କୁ କୁଣ୍ଢାଇ ପକାଇଲି । ତା' ସହିତ ମୋର ଏତେଗୁଡ଼ାଏ କଥାବାର୍ତ୍ତା କରିବାର ଥିଲା ଯେ ଆଲୋଚନା କକ୍ଷରେ କିଛି କଥାବାର୍ତ୍ତା କରିପାରୁ ନଥିବାରୁ ବଡ଼ ଖରାପ ଲାଗୁଥିଲା ମୋତେ ।

ବୈଜ୍ଞାନିକ ତଥା ସାମରିକ କର୍ତ୍ତୃପକ୍ଷଙ୍କୁ ମୋର ପରିଚୟ ଦେଉ ଦେଉ ଦେଶପାଣ୍ଡେ କହିଲେ—ଏ ହେଉଛନ୍ତି ମୋର ବନ୍ଧୁ ମିଷ୍ଟର ରମେଶଚନ୍ଦ୍ର ଚୌଧୁରୀ; କାଲିଫର୍ଣ୍ଣିଆ ବିଶ୍ୱ-ବିଦ୍ୟାଳୟର ଉଦ୍ଭିଦବିଜ୍ଞାନର ଛାତ୍ର । ସେ ସେଠାରେ ପିଏଚ୍. ଡି. ପାଇଁ ଗବେଷଣା କରୁଛନ୍ତି । ଆମର ଖବର ପାଇ ସେ ଏଠାକୁ ଆସିଯାଇଛନ୍ତି । ମିଷ୍ଟର ଚୌଧୁରୀ ବୈଦିକ ଯୁଗର କଥିତ ସଂସ୍କୃତଭାଷାରେ ଜଣେ ବିଶେଷଜ୍ଞ । ନବାଗତର ଭାଷା ବୁଝିବାରେ ଆମର

ଯେଉଁ ବସ୍ତ୍ରଟ ଅସୁବିଧା ଥିଲା, ତାହା ଏଥର ରହିବନି ଆଉ । ନବାଗତ ଯେଉଁ ଭାଷା କହୁଛି ସେହି ଭାଷାକୁ ଭଲଭାବରେ ବୁଝିବାରେ ମିଷ୍ଟର ଚୌଧୁରୀଙ୍କ ଦକ୍ଷତା ଆମ ଦୁଇ ଜଣଙ୍କର ଦକ୍ଷତାଠାରୁ ଢେର୍ ବେଶି ।

ବାଃ, ଭଲହେଲା ତାହେଲେ !···ମାର୍କିନ୍ ଜେନେରାଲ ମିଷ୍ଟର ଟୋନର୍ କହିଲେ— ଏହାକୁ ଆମର ସୌଭାଗ୍ୟ ମଣିବାକୁ ହେବ ଯେ ମି, ଚୌଧୁରୀ ଆମ ଦଳ ସହିତ ଏତେ ଶୀଘ୍ର ଯୋଗଦେଇପାରିଲେ । ଆମ ସମସ୍ତଙ୍କର ବର୍ତ୍ତମାନ ବୁଝିବା ଉଚିତ ଯେ ଏଠାରେ ଏଇ ଯେଉଁ 'ସମସ୍ୟା ଦେଖାଦେଇଛି, ତାହା ଖାଲି ଆମ ଦେଶର ସମସ୍ୟା ନୁହେଁ—ଏହା ସାରା ପୃଥିବୀର ମାନବଜାତିର ସମସ୍ୟା । ଏଠାରେ ଏହି ଯେଉଁ ଲୋକ ଆବିର୍ଭୂତ ହୋଇଛି; ସେ ଯେ ଖାଲି ପ୍ରହେଳିକାମୟ ହୋଇଉଠିଛି ତା ନୁହେଁ, ତାର ସମସ୍ତ ବକ୍ତବ୍ୟ ଆମେ ଜାଣିପାରିଲେ ହୁଏତ ଏହା ଆମର ମହାକାଶ ଅଭିଯାନ ଦିଗରେ କମ୍ ସାହାଯ୍ୟକାରୀ ହେବନି । ଏଇ ଲୋକଟି ଯଦି ପ୍ରକୃତରେ ବିଭିନ୍ନ ଗ୍ରହ-ଉପଗ୍ରହ ଭ୍ରମଣ କରିଆସିଛି, ଯାହା ଆମର ପଦାର୍ଥବିଦ୍ୟାବିତ୍ ବନ୍ଧୁମାନଙ୍କର ମତ, ତେବେ ତାର ଅନୁଭୂତି ମାନବଜାତିର ଭବିଷ୍ୟତ ମହାଶୂନ୍ୟ ଅଭିଯାନ ଓ ଗ୍ରହ-ଗ୍ରହାନ୍ତର ଅଭିଯାନରେ କମ୍ ସାହାଯ୍ୟକାରୀ ହେବ ନାହିଁ ।

ପଦାର୍ଥବିଦ୍ୟାବିତ୍ ଡାକ୍ତର ଜେନ୍‌କିନ୍‌ସ ଠିଆହୋଇ କହିଲେ—ଏହା ଆମର ଏକ ସୌଭାଗ୍ୟର ବିଷୟ ଯେ ପୃଥିବୀ ବାହାରୁ ଆସିଥିବା ଏହି ମଣିଷଟି ସମ୍ପର୍କରେ ଗବେଷଣା କରିବାପାଇଁ ଆମର ବୈଜ୍ଞାନିକଦଳ ଯେମିତିଭାବରେ ଆକୃଷ୍ଟ ହୋଇଛନ୍ତି, ବିଜ୍ଞାନ-ଜଗତର ଶ୍ରେଷ୍ଠତମ ଆବିଷ୍କାର କି ଉଦ୍ଭାବନ ପାଇଁ ସେମାନେ ହୁଏତ ଏତେ ଆକୃଷ୍ଟ ହୋଇନଥିବେ । ମୁଁ ମୋର ବୈଜ୍ଞାନିକ ବନ୍ଧୁମାନଙ୍କୁ ଏତିକି ସୁଚାଇ ଦେବାକୁ ଚାହେଁ ଯେ; ନବାଗତଟିର ପ୍ରକୃତ ରହସ୍ୟ ଯଦି ଆମେ ଉଦ୍‌ଘାଟନ କରିପାରୁ; ତେବେ ଏହା ଆଗରେ ପୃଥିବୀର କୌଣସି ନବାବିଷ୍କୃତ ଆବିଷ୍କାର କି ଉଦ୍ଭାବନ ଠିଆହୋଇପାରିବନି ।

"ତାହେଲେ ଆଲୋଚନା ଶେଷରେ ତୁମେ ସେହି ମଣିଷଟିକୁ ଦେଖିବାକୁ ସୁବିଧା ପାଇଲ ରମେଶ ?"—ଏହା ପଚାରୁ ପଚାରୁ ସେଣ୍ଟି ମୁହଁରେ ବିସ୍ମୟର ଭାବ ! ସତେ ଯେମିତି ଏସବୁ ଇନ୍ଦ୍ରଜାଲ କାହାଣୀ ଭଳି ଜଣାପଡ଼ୁଛି ତାଙ୍କୁ ।

ତିନିଜଣଯାକ ମୋ ମୁହଁରୁ ଉତ୍ତର ଶୁଣିବା ଆଶାରେ ଅନେଇ ରହିଲେ । ମନରେ ସେମାନଙ୍କର କି ଉତ୍କଣ୍ଠା ! ପାଞ୍ଚହଜାର ବର୍ଷ ତଳର ଜୀବନ୍ତ ମଣିଷକୁ ମୁଁ ଯେ ଖାଲି ଦେଖିଛି ତା ନୁହେଁ, ତା ସହିତ କଥାବାର୍ତ୍ତା କରିଛି ମଧ୍ୟ । ଏ କଥା ଶୁଣିଲାବେଳକୁ ସେମାନେ କୁହୁକପୁରୀର ଗପ ବୋଲି ନଭାବି ରହିପାରୁନଥାନ୍ତି । ସେମାନଙ୍କୁ ବୋଧ ହେଉ-ଥାଏ ସତେ ଯେମିତି ନିଉୟର୍କର ସେଣ୍ଟ୍ରାଲ୍ ପାର୍କ ଏକ କୁହୁକପୁରୀରେ ପରିଣତ ହୋଇଛି ।

ଉତ୍ତର ଦେଲି—"ହଁ, ଅଲୋଚନା ଶେଷରେ ମୋତେ ସେହି ମଣିଷ ସହିତ ସାକ୍ଷାତ୍ କରିବାକୁ ଦିଆଗଲା; କିନ୍ତୁ ସେଦିନ ରାତି ଅଧିକ ହୋଇଯାଇଥିବାରୁ ତା ସହିତ କିଛି

କଥାବାର୍ତ୍ତା କରିପାରିଲି ନାହିଁ । ପରଦିନ ସକାଳ ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ପଡ଼ିଲା ।"

"ସେହି ପାଞ୍ଚହଜାର ବର୍ଷ ତଳର ଲୋକ ସହିତ ସାକ୍ଷାତ୍ ପରେ ତୁମକୁ କେମିତି ଲାଗିଲା ? ସେ କଣ ଠିକ୍ ସାଧାରଣ ମଣିଷ ଭଳି ନା ତାର ଚେହେରାରେ ଯଥେଷ୍ଟ ପରିବର୍ତ୍ତନ ଲକ୍ଷ୍ୟ କରୁଥିଲି"—ମେରିଆ ପଚାରିଲା ।

"ପରଦିନ ସକାଳେ ତୁମେ ସେହି ମଣିଷ ସହିତ କଣ କିଛି କଥାବାର୍ତ୍ତା କଲ ?" —ସେଣ୍ଟି ପଚାରିଲା ।

କହିଲି—"ହଁ, ପରଦିନ ସକାଳେ ନବାଗତଟି ଯେଉଁ କୋଠରିରେ ରହିଥିଲା ମୋତେ ସେଠାକୁ ନିଆଗଲା । କେତେଜଣ ବୈଜ୍ଞାନିକ ଓ ସାମରିକ ଅଫିସର ମୋ ସହିତ ମଧ୍ୟ ଗଲେ । କୋଠରିକୁ ପଶିଗଲା ବେଳକୁ ଦେଖିଲି, ନବାଗତଟି ବସିଛି ତାକୁ ଦିଆଯାଇଥିବା ଗୋଟିଏ ଚେୟାରରେ; ଝରକାଦେଇ ଦୂରଦିଗ୍‌ବଳୟର ମରୁଭୂମିଆଡ଼େ ଅନେଇ ରହିଛି । ତାର ମୁଖମଣ୍ଡଳରୁ ସ୍ପଷ୍ଟ ଜଣାପଡ଼ୁଥିଲା ତାକୁ ଯେମିତି ଏସବୁ ରହସ୍ୟମୟ ଜଣାପଡ଼ୁଛି ଓ ସେ ଯେମିତି କିଛି ବୁଝିପାରୁନି ।

ଆମେ ସମସ୍ତେ କୋଠରି ଭିତରକୁ ପଶିଗଲାବେଳକୁ ସେ ଆମ ଆଡ଼େ ମୁହଁ ବୁଲାଇ ଅନାଇଲା । ମୁଁ ତା ନିକଟକୁ ଯାଇ ସଂସ୍କୃତଭାଷାରେ ତାକୁ ଅଭିବାଦନ ଜଣାଇଲି ବୈଦିକ ରୀତିରେ ।

ବୈଦିକ ରୀତିର ଅଭିବାଦନ ଶୁଣି ସେ ଆଶ୍ଚର୍ଯ୍ୟ ନହୋଇ ରହିପାରିଲାନି । ହଠାତ୍ ଚମକିପଡ଼ି ମୋ ଆଡ଼କୁ ଅନାଇଲା । ମୁଖରେ ତାର ବିସ୍ମୟର ଭାବ, ସତେ ଯେମିତି ସେ ବୁଝିପାରୁନି ଏ ଅଭିବାଦନ କେଉଁଠୁ ଆସିଲା ।

ତାର ବିସ୍ମୟ ବଢ଼ିବାକୁ ନ ଦେଇ ପୁଣି ଥରେ ତାକୁ ଅଭିବାଦନ ଜଣାଇଲି ପୂର୍ବ ରୀତିରେ । ମୋ ମୁହଁରୁ ସେ ଅଭିବାଦନ ଶୁଣି ଖୁସି ହେଲାଭଳି ଜଣାପଡ଼ିଲା । ଗମ୍ଭୀର ହୋଇ ରହିଥିବା ତାର ମୁଖମଣ୍ଡଳ ଆହୁରି ସତେଜ ହୋଇଉଠିଲା ।

ପାଖରେ ପଡ଼ିଥିବା ଚେୟାରରେ ମୁଁ ବସିଲି । ସେ କୋଠରିରେ ପଡ଼ିଥିବା ଅନ୍ୟ କେତୋଟି ଚେୟାର୍‌ରେ ବୈଜ୍ଞାନିକ ଓ ସାମରିକ ଅଫିସର୍‌ମାନଙ୍କୁ ବସିବାପାଇଁ ଅନୁରୋଧ ଜଣାଇଲି ।

ନବାଗତଟି ମୋତେ ଦେଖି କେତେ କଣ ପଚାରିବାକୁ ଇଚ୍ଛା କରୁଥିଲା; କିନ୍ତୁ ଏତେ ଗୁଡ଼ିଏ ଲୋକଙ୍କୁ ଦେଖି ସେ ସାହସ କରୁନଥିଲା କିଛି ପଚାରିବାକୁ । ତା ମୁହଁରୁ ଜଣାପଡ଼ୁଥିଲା ସତେ ଯେପରି ସେ କେତେଗୁଡ଼ିଏ ପ୍ରଶ୍ନ ପଚାରିବାକୁ ଇଚ୍ଛା କରୁଛି । ବୋଧହୁଏ ଭରସା ବି ରଖିଥିଲା, ମୁଁ ତା ପ୍ରଶ୍ନରର ଯଥାର୍ଥ ଉତ୍ତର ଦେଇପାରିବି ।

କିଛି ସମୟ ଏଆଡ଼େସେଆଡ଼େ ଅନାଇ ମୋତେ ତା ସଂସ୍କୃତଭାଷାରେ ପଚାରିଲା—ଏ ବୋଧହୁଏ ମୋ ଜନ୍ମସ୍ଥାନ ସୈନ୍ଧବ ଉପତ୍ୟକା, ନୁହେଁ ? ମୋ ଜନ୍ମସ୍ଥାନ ଏଠାରୁ କେତେ

ଦୂର ହେବ କହିପାରିବେ ? ଆଉ ଏ ଲୋକମାନେ କିଏ ? ଏମାନେ କି ଭାଷାର କଥାଭାଷା ହେଉଛନ୍ତି ? ମୁଁ ତ ସେମାନଙ୍କ ଭାଷାରୁ କିଛି ବୁଝିପାରୁନି ? ମୋତେ ଏମାନେ ଯିବାକୁ ଦେଉନାହାନ୍ତି କାହିଁକି ? ମୁଁ ତ ସେମାନଙ୍କର କିଛି କ୍ଷତି କରିନାହିଁ ।

ନବାଗତର ଏତେଗୁଡ଼ିଏ ପ୍ରଶ୍ନ ବୁଝିବାରେ ମୋତେ ବିଶେଷ କିଛି କଷ୍ଟ ହେଲାନାହିଁ । ସଂସ୍କୃତଭାଷା ସେ କହୁଥିଲା ସତ; କିନ୍ତୁ ସ୍ଥାନେ ସ୍ଥାନେ ଉଚ୍ଚାରଣ ପାର୍ଥକ୍ୟ ନେଇ ମୋତେ ଠିକିଏ ବୁଝିବାକୁ କଷ୍ଟ ହେଉଥିଲା । ତେବେ ମୁଁ ସେଗୁଡ଼ିକୁ ବୁଝିପାରୁନଥିଲି, ତା ନୁହେଁ; ଗୋଟିଗୋଟି କରି ତାର ସବୁ ପ୍ରଶ୍ନର ଉତ୍ତର ନ ଦେଲେ ଲୋକଟିର ମୋ ଉପରେ ଆସ୍ଥା କମିଯିବ, ଏଇ ଭୟରେ ସେ ବୁଝିପାରିବାଭଳି ତା'ରି ଭାଷାର ଢଙ୍ଗରେ ଗୋଟିକ ପରେ ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କଲି ।

କହିଲି—ଦେଖ, ଏ ଯେଉଁ ଦେଶରେ ତୁମେ ପହଞ୍ଚିଛ ସେ ହେଉଛି ଯୁକ୍ତରାଷ୍ଟ୍ର-ଆମେରିକା, ପୃଥିବୀର ଏକ ଶକ୍ତିଶାଳୀ ଦେଶ । ଏହା ତୁମର ଜନ୍ମସ୍ଥାନ ସୈନ୍ଧବ ଉପତ୍ୟକା-ଠାରୁ ବହୁ ଦୂରରେ । ତୁମେ ଯେଉଁ ସହର କଥା କହୁଛ, ସେ ସହର ଆଉ ପୃଥିବୀପୃଷ୍ଠରେ ନାହିଁ । କେତେ ହଜାର ବର୍ଷ ହେଲା ସେ ସହରଟି ପୃଥିବୀପୃଷ୍ଠରୁ ନିଶ୍ଚିହ୍ନ ହେଲାଣି, ତାର ଖବର କେହି ରଖିନାହାନ୍ତି । କେତେ ହଜାର ବର୍ଷ ସେହି ନିଶ୍ଚିହ୍ନ ସହରଟି ମାଟିତଳେ ରହିଲାପରେ ଏଇ କେତେ ବର୍ଷ ତଳେ ସେହି ସ୍ଥାନ ଖୋଲାହୋଇ ତାର ଭଗ୍ନାବଶେଷ ଉଦ୍ଧାର କରାଯାଇଛି । ସେହି ସହରଟି ଆମ ପାଖେ ମହେଞ୍ଜୋଦାରୋ ର ନାମରେ ପରିଚିତ । ସେହି ସହରଟି ନାହିଁ ଶୁଣିଲାମାତ୍ରେ ନବାଗତଟି ବିଚଳିତ ହେଲାଭଳି ଜଣା-ପଡ଼ିଲା । ମୁଁ ପୁଣି କହିଲି—ବଡ଼ ଦୁଃଖ ଲାଗୁଛି, ସେହି ସହର ତୁମେ ଆଉ ପାଇପାରିବନି ।

ନବାଗତଟିର ମୁଖର ଭାବକୁ ଲକ୍ଷ୍ୟ କରିବାପାଇଁ କିଛି ସମୟ ଚୁପ୍‌ରହି ପୁଣି ଆରମ୍ଭ କଲି—ଆଉ ଏ ଯେଉଁ ଲୋକମାନେ ତୁମକୁ ଘେରିଛନ୍ତି, ସେମାନେ ହେଉଛନ୍ତି ଯୁକ୍ତରାଷ୍ଟ୍ର ସରକାରର ବଡ଼ ବଡ଼ ସାମରିକ ଅଫିସର୍ ଓ ବୈଜ୍ଞାନିକ । ଏମାନେ ଇଂରେଜୀ ଭାଷାରେ କଥାବାର୍ତ୍ତା ହେଉଛନ୍ତି ବୋଲି ତୁମେ ସେମାନଙ୍କର ଭାଷା କିଛି ବୁଝିପାରୁନ । ସେମାନେ ତୁମ ଭାଷା ବୁଝିପାରୁନାହାନ୍ତି ବୋଲି ମୋତେ ଏଠାକୁ ଡକାଯାଇଛି । ତୁମକୁ ଏମାନେ ବନ୍ଦୀ କରିନାହାନ୍ତି । ତୁମକୁ ଦେଖି ଏମାନେ ଏତେ ଆଶ୍ଚର୍ଯ୍ୟ ହୋଇଯାଉଛନ୍ତି ଯେ ତୁମ ସମ୍ପର୍କରେ ନାନା କଥା ଜାଣିବାକୁ ସେମାନେ ଅତ୍ୟନ୍ତ ଉତ୍ସୁକ । ତୁମେ କେଉଁଠୁ ଆସିଲ, କେଉଁଠାର ଲୋକ, କି ଉଦ୍ଦେଶ୍ୟରେ ଆସିଛ ଜାଣିପାରିଲେ ସେମାନେ ତୁମକୁ ବାଧା ଦେବେନି ।

ନବାଗତଟି କଣ ପଚାରିବାକୁ ଯାଉଁଥିଲା । ହଠାତ୍ ଦପ୍‌କରି ରହିଗଲା । କିଛି ସମୟ ପରେ ପୁଣି ପଚାରିଲା—ତୁମେ କେମିତି ମୋ ଭାଷା ବୁଝିପାରୁଚ ଏବଂ କହିପାରୁଛ ମଧ୍ୟ ?

ମୁଁ ହସିଲି । କହିଲି—ତୁମେ ଯେଉଁ ମହେଞ୍ଜୋଦାରୋ ସହର କଥା କହୁଛ, ଯେଉଁ ସୈନ୍ଧବ ଉପତ୍ୟକାକୁ ଯିବାପାଇଁ ଆଜି ଏତେ ବ୍ୟାକୁଳ, ମୋ ଘର ସେହି ଦେଶରେ । ତୁମେ

ବୋଧହୁଏ ଖବର ରଖିନ ଯେ ଏହାଭିତରେ ସୈନ୍ଧବ ଉପତ୍ୟକାର ଅଧିବାସୀମାନେ ଓ ତୁମ ବଂଶଜ ଆର୍ଯ୍ୟମାନେ ସେ ଉପତ୍ୟକା ଆଖପାଖରେ ଗୋଟିଏ ବିରାଟ ଦେଶ ଗଢ଼ିଚନ୍ତି। ସେହି ଦେଶର ନାଁ ହେଉଛି ଭାରତବର୍ଷ। ତୁମେ ଯେଉଁ ଆର୍ଯ୍ୟବଂଶଜ ବୋଲି କହୁଛ, ମୁଁ ମଧ୍ୟ ସେହି ବଂଶରୁ ଜାତ। ଏ ଦେଶର ବିଶ୍ୱବିଦ୍ୟାଳୟକୁ ଅଧ୍ୟୟନ କରିବାପାଇଁ ମୁଁ ସେଠୁ ଆସିଛି।

କାହିଁକି—ନବାଗତ ପଚାରିଲା। ମୁଖରେ ତାର ଆଶ୍ଚର୍ଯ୍ୟର ଭାବ—ମହେଞ୍ଜୋଦାରୋ ନିକଟରେ ଏକ ବିରାଟ ବିଶ୍ୱବିଦ୍ୟାଳୟ ଥିଲା। ସେ ବିଶ୍ୱବିଦ୍ୟାଳୟ ବି ତ ଖୁବ୍ ଉନ୍ନତ! ସେଠାରେ ତୁମେ ପଢ଼ିପାରିଥାନ୍ତ? ତୁମେ ସେଠାରେ ନ ପଢ଼ି ଏମାନଙ୍କ ଦେଶକୁ ଆସିଛ କାହିଁକି?

ତାର ପ୍ରଶ୍ନର କଣ ଉତ୍ତର ଦେବି ଭାବି ଠିକ୍ କରିପାରିଲିନି। କହିଲି—ତୁମେ ଯେଉଁ ମହେଞ୍ଜୋଦାରୋ ନିକଟବର୍ତ୍ତୀ ବିରାଟ ବିଶ୍ୱବିଦ୍ୟାଳୟ କଥା କହୁଛ, ସେ ବିଶ୍ୱବିଦ୍ୟାଳୟ ଆଉ ପୃଥିବୀପୃଷ୍ଠରେ ନାହିଁ। ତୁମ ସମୟର ସୈନ୍ଧବ ଉପତ୍ୟକାର ସଭ୍ୟତା ବା ମହେଞ୍ଜୋଦାରୋର ସଭ୍ୟତା ସବୁକିଛି ଉଭେଇଯାଇଛି; ଇତିହାସର ପୃଷ୍ଠା ଅଳଙ୍କୃତ କରିବା ବ୍ୟତୀତ ଆଉ କିଛି ନାହିଁ। ତୁମେ ବର୍ତ୍ତମାନ ଯେଉଁ କଥା କହୁଛ, ସେ ସବୁ ଏ ପୃଥିବୀରେ ଘଟିଥିଲା ଆଜକୁ ପାଞ୍ଚହଜାର ବର୍ଷ ତଳେ।

ପାଞ୍ଚହଜାର ବର୍ଷ ତଳର କଥା କହିବାକ୍ଷଣି ସେ କିଛି ବୁଝିପାରିଲା ନାହିଁ ବୋଲି ଜଣାପଡ଼ିଲା। ବର୍ଷ କଣ —ମୁଁ ତାକୁ ବୁଝେଇବାପାଇଁ ଚେଷ୍ଟାକଲି। ବର୍ଷ ଭାବରେ ସମୟରେ ମାପ ସେ ହୁଏ ଜାଣିନି ବା ପୃଥିବୀ ବାହାରେ ରହିବାଦ୍ୱାରା ଭୁଲିଯାଇଛି। ତାକୁ ପାଞ୍ଚ-ହଜାର ବର୍ଷର ସମୟ ପରିମାଣ କେତେ ବୁଝାଇଦେଲାକ୍ଷଣି ସେ ବୁଝିଗଲା। କହିଲା—ମୁଁ ମଧ୍ୟ ସେଇଆ ଅନୁମାନ କରୁଥିଲି। ମୋତେ ଜଣାପଡ଼ୁଛି ଯେମିତି ସେସବୁ ଘଟଣା ମୋଟେ ପନ୍ଦର ବର୍ଷତଳର। ତୁମେ ଜାଣିନ, ମୁଁ ଯେତେବେଳେ ପୃଥିବୀ ଛାଡ଼ିଲି, ମୋତେ ସେତେ-ବେଳକୁ କୋଡ଼ିଏ ବର୍ଷ ମାତ୍ର। ବର୍ତ୍ତମାନ ମୋତେ ପଞ୍ଚତିରିଶ ଛତିଶବର୍ଷରୁ ଅଧିକ ନୁହେଁ। ମୁଁ ଅବଶ୍ୟ ଗଣନା କରି ଜାଣିଛି ଯେ ପୃଥିବୀ ଭିତରେ ପାଞ୍ଚହଜାର ବର୍ଷ ଅତିବାହିତ ହୋଇଯାଇଥିବ; କିନ୍ତୁ ବେଳେବେଳେ ମୋର ଭ୍ରମ ହୁଏ ଓ ମୁଁ ମଧ୍ୟ ଭାବିପକାଏ ଏ ଯେ ମୋ ସାଙ୍ଗସାଥୀ ଓ ବଂଶର ଲୋକେ ଏବେ ବି ସେହି ମହେଞ୍ଜୋଦାରୋ ସହର ନିକଟରେ ଗୋ-ମେଷାଦି ପାଳନ କରୁଥିବେ। ମନେପଡ଼ିଯାଉଛି ମହେଞ୍ଜୋଦାରୋର ସେ ଲୋକବାକ, ଘରଦ୍ୱାର, ରାସ୍ତାଘାଟ କଥା। ମୋ ମନ ମାନୁନାହିଁ ଯେ ଏ ଘଟଣା ସବୁ ଆଉ ବାସ୍ତବତାର ରୂପନେଇ ରହିନି; ଅତୀତର ବିସ୍ମୃତିଗର୍ଭରେ ସେଗୁଡ଼ିକ କେଉଁ ଦିନରୁ ଲୀନ ହୋଇଗଲାଣି।

ଏତେ ଦିନ ତୁମେ ପୃଥିବୀପୃଷ୍ଠରୁ ଯାଇ କେଉଁଆଡ଼େ ଥିଲ—ପଚାରିଲି।

ନବାଗତ ଉତ୍ତର ଦେବାକୁ କୁଣ୍ଠାବୋଧ କଲାନି। ସ୍ୱାଭାବିକ ରୀତିରେ କହିଲା—ଅବସ୍ଥା ଚକ୍ରରେ ପଡ଼ି ମୁଁ ପୃଥିବୀ ଛାଡ଼ି ଚାଲିଯାଇଥିଲି ଚନ୍ଦ୍ର ଉପଗ୍ରହକୁ। ମହାଶୂନ୍ୟର ବିଭିନ୍ନ

ଗ୍ରହ-ଉପଗ୍ରହ ଭ୍ରମଣ କରିସାରିଲା ପରେ ଚାଲିଆସିଲି ପୃଥିବୀକୁ ମୋର ଜ୍ଞାତି-କୁଟୁମ୍ବମାନଙ୍କ ସହିତ ସାକ୍ଷାତ୍ କରିବାପାଇଁ । କିନ୍ତୁ ପୃଥିବୀରେ ପହଞ୍ଚି ମୁଁ ଉପଲବ୍ଧି କଲି ଯେ ଏହା ମୋର ଏକ ବିରାଟ ଭୁଲ । ପୃଥିବୀ ଛାଡ଼ିବାର ପାଞ୍ଚହଜାର ବର୍ଷ ପରେ ମୁଁ ଏଠି ଆଉ କାହାକୁ ବା ସାକ୍ଷାତ୍ କରିବ ? ପୃଥିବୀରୁ ଫେରିଯିବା ପୂର୍ବରୁ ଏମାନଙ୍କ ହାତରେ ପଡ଼ିଲି ।

ନବାଗତର ଏହି କଥାବାର୍ତ୍ତାରୁ ଜାଣିଲି ଯେ ସେ ବିଜ୍ଞାନ ସମ୍ପର୍କରେ ଅଜ୍ଞ ନୁହେଁ । କଥାପ୍ରସଙ୍ଗରେ ମୁଁ ତାର ନାଁ ଜାଣିବାକୁ ପାଇଲି । ତା ନାଁ ହେଉଛି ଉତ୍କଳାବର୍ତ୍ତି । ବଡ଼ ବିଚିତ୍ର ଲାଗିଲା ମୋତେ । ପାଞ୍ଚହଜାର ବର୍ଷ ପୂର୍ବର ଲୋକ । ବିଜ୍ଞାନର ଯେଉଁ କଥାକୁ ଆମେ ଧାରଣା କରିପାରୁନାହୁଁ, ସେ ତାକୁ ଅକ୍ଳେଶରେ ଧାରଣା କରି ବ୍ୟାଖ୍ୟା କରିଜାଣୁଛି ! ଯେଉଁ ତଥ୍ୟକୁ ବୁଝିବାପାଇଁ ଆମର ଉଚ୍ଚଶିକ୍ଷିତ ସାମରିକ ଅଫିସରମାନେ ସମର୍ଥ ହୋଇ ପାରୁନାହାନ୍ତି, ସେ ତାହା ଅକ୍ଳେଶରେ କହିଦେଇ ପାରୁଛି ! ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ମୁଁ ମନକୁମନ ପଚାରିଲି—ତାହେଲେ କଣ ପ୍ରାଚୀନ ବୈଦିକ ଯୁଗରେ ଆମ ଦେଶର ଲୋକେ ବିଜ୍ଞାନ ସମ୍ପର୍କରେ ଏତେ ସଚେତନ ଥିଲେ ? ବିଜ୍ଞାନ ସମ୍ପର୍କରେ ଏସବୁ ଗୂଢ଼ତତ୍ତ୍ୱ କଣ ସେ ଯୁଗରେ ଜଣାଥିଲା ? ଆପେକ୍ଷିକତତ୍ତ୍ୱ ଅନୁସାରେ ସମୟର ଏତାଦୃଶ ଗତି ଯଦି ସେ ଯୁଗରେ ଜଣା ନଥାନ୍ତା,ତେବେ ଉତ୍କଳାବର୍ତ୍ତି ଜାଣିଥାନ୍ତା କେମିତି ? ଜଣା ନ ଥିବ ବା କାହିଁକି ? ଆମ ପୁରାଣରେ ତ ଅଛି, ବ୍ରହ୍ମାଙ୍କର ଗୋଟିଏ ଦିନ ହେଲେ ପୃଥିବୀରେ ହଜାର ଦିନ ହୁଏ । ଆପେକ୍ଷିକତତ୍ତ୍ୱ ବିଷୟରେ ଜାଣି ନଥିଲେ ଲୋକେ ଏମିତି ଅଜବ କଳ୍ପନା କରିଥାନ୍ତେ ବା କେମିତି ? ପ୍ରାକ୍-ବୈଦିକ ଯୁଗରେ ବିଜ୍ଞାନର ଅଗ୍ରଗତି କଥା ଜାଣିବା ପାଇଁ ଉତ୍କଳାବର୍ତ୍ତିଙ୍କୁ ପଚାରିଲି—ସମୟର ଏହି ଆପେକ୍ଷିକଗତି ସହିତ ତୁମେ ବେଶ୍ ପରିଚିତ ହେଲାଭଳି ଜଣାପଡ଼ୁଛି । କିନ୍ତୁ କହିପାରିବ କି, ତୁମର ଏହି ଜ୍ଞାନ ଆହରଣ କଣ ମହେଞ୍ଜୋଦାରୋରେ ?

ଉତ୍କଳାବର୍ତ୍ତି ହସିଲା; କିନ୍ତୁ ନିରର୍ଥକ ହସ ନୁହେଁ । ହସି ହସି କହିଲା—ତୁମେ ବୋଧହୁଏ ଜାଣିନ, ମୁଁ ବିଶ୍ୱର ବହୁ ଉନ୍ନତ ସଭ୍ୟତା ସହିତ ପରିଚିତ ହୋଇ ଆସିଛି । ପୃଥିବୀ ବାହାରେ ବହୁ ଗ୍ରହ-ଉପଗ୍ରହ ଅଛି; ଯେଉଁଠାରେ ଶିକ୍ଷା, ସଭ୍ୟତା ଓ ବିଜ୍ଞାନ ବହୁ ଦୂର ଆଗେଇପାରିଛି । ମୁଁ ଅବଶ୍ୟ ଜାଣେନା ଏ ପୃଥିବୀର ଅଧିବାସୀ ସେ ସମସ୍ତ ବିଷୟକ ଜ୍ଞାନ ଆହରଣରେ ବର୍ତ୍ତମାନ କେତେ ଉନ୍ନତ ହେଲେଣି । ହେଲେ, ତୁମେ ଯେଉଁ ମହେଞ୍ଜୋଦାରୋ କଥା ପଚାରୁଛ, ସେଠାରେ ବିଜ୍ଞାନ ତ ଦୂରର କଥା, ସାଧାରଣଜ୍ଞାନ ମଧ୍ଯ ଆଶାଜନକ ଭାବେ ଉନ୍ନତ ଲାଭ କରି ନଥିଲା । ପୃଥିବୀରେ ଓହ୍ଲାଇଲାବେଳେ ଲକ୍ଷ୍ୟ କରିଛି, ପୃଥିବୀର ଏହି ଅଂଶଟି ବିଜ୍ଞାନରେ ବେଶ୍ ଉନ୍ନତ । କିନ୍ତୁ ବିଶ୍ୱର ଅନ୍ୟାନ୍ୟ ସଭ୍ୟ ଜାତି ସହିତ ତୁଳନା କଲେ, ଏହା ଅଜ୍ଞାନର ଘନ ଅନ୍ଧକାରରୁ ବାହାରି ଆସିପାରିନି । ଆଉ ସେ କାଳର ମହେଞ୍ଜୋଦାରୋ ସଭ୍ୟତା କଥା ପଚାରୁଛ ? ମହେଞ୍ଜୋଦାରୋର ଅଧିବାସୀମାନେ ବେଶ୍ ସଭ୍ୟ ଓ ଉନ୍ନତ ଥିଲେହେଁ ସେମାନେ ବିଜ୍ଞାନର ପାଖ ମାଡ଼ି ନଥିଲେ ।

—କିନ୍ତୁ ତୁମେ ତ ବିଜ୍ଞାନରେ ବେଶ୍ ଧୁରନ୍ଧର ଭଳି ଜଣାପଡ଼ୁଛ ?

ଏ କଥା ଶୁଣି ଉତ୍କଳାବର୍ତ୍ତି ହସିଲା ଠିକ୍ ପୂର୍ବପରି ଓ କହିଲା—ହଁ, ମୁଁ ବିଜ୍ଞାନ ଶିକ୍ଷା ପାଇଛି; କିନ୍ତୁ ସେ ଶିକ୍ଷା ମହେଞ୍ଜୋଦାରୋରେ ନୁହେଁ । ସେ ଶିକ୍ଷା ପାଇଛି ମୁଁ ଚନ୍ଦ୍ର ଉପଗ୍ରହରେ ।

"ଚନ୍ଦ୍ର ଉପଗ୍ରହରେ ?"—ଚମକି ପଡ଼ିଲା ସେଣ୍ଡି, ତା ସହିତ ମେରିଆ ଓ ଲିଜା । "ଚନ୍ଦ୍ର ଉପଗ୍ରହରେ ବିଜ୍ଞାନ ଶିକ୍ଷା ପାଇଥିଲା ଉତ୍କଳାବର୍ତ୍ତି ?"—ସେଣ୍ଡି ମୁହଁରେ ବିସ୍ମୟର କଳାମେଘ ଘନେଇ ଆସୁଥିଲା ।

"ତୁମେ ଯେ କଣ କହୁଛ ମୁଁ ବୁଝିପାରୁନ ରମେଶ ! ଉତ୍କଳାବର୍ତ୍ତି ବିଜ୍ଞାନ ଶିକ୍ଷା କରିଥିଲା ଚନ୍ଦ୍ର ଉପଗ୍ରହରେ ?"—ବିସ୍ମିତ ହୋଇ ସେଣ୍ଡି ପଚାରିଲା ।

"କିନ୍ତୁ ଚନ୍ଦ୍ର ତ ଏକ ମୃତ ଉପଗ୍ରହ ! ସେଠାରେ ଜଳ ନାହିଁ, ବାୟୁ ନାହିଁ, ଉଦ୍ଭିଦ ନାହିଁ, ପ୍ରାଣୀ ନାହାନ୍ତି । ସେଠି ପୁଣି ସୁଶିକ୍ଷିତ ମଣିଷସମାଜ ଆସିଲା କେଉଁଠୁ ? ମୋତେ ତ ଏହା କହାଣି ଗାଲୁଗପ ଭଳି ଜଣାପଡ଼ୁଛି !"—ମେରିଆ କହିଲା ।

"ମୋର ମଧ୍ୟ ଠିକ୍ ସେହି ମତ ମେରିଆ ! ଚନ୍ଦ୍ରମଣ୍ଡଳରେ ଯେ ମନୁଷ୍ୟ ଅଛନ୍ତି ଏହା ତ ମୁଁ କୌଣସି ପ୍ରକାରେ ଗ୍ରହଣ କରି ନପାରେ ।"—ଲିଜା ଦୃଢ଼ତାର ସହିତ କହିଲା ।

"ମୁଁ ଯେ ତୁମମାନଙ୍କ ସହିତ ଏକମତ ନୁହେଁ, ତା କହୁନ । ଚନ୍ଦ୍ର ଏକ ମୃତ ଉପଗ୍ରହ । ଏଠାରେ ଜଳ ନାହିଁ, ବାୟୁ ନାହିଁ, ପ୍ରାଣୀ କିମ୍ବା ଉଦ୍ଭିଦ କିଛି ନାହିଁ, ଏହା ତ ମୁଁ ଅସ୍ୱୀକାର କରୁନ ।"

"ହେଲେ, ତୁମେ ତ ବର୍ତ୍ତମାନ କହୁଛ ଉତ୍କଳାବର୍ତ୍ତି ଚନ୍ଦ୍ରଉପଗ୍ରହରେ ବିଜ୍ଞାନଶିକ୍ଷା କରିଥିଲା । ସେଠି ତ ମଣିଷ ନାହାନ୍ତି, ବିଜ୍ଞାନଶିକ୍ଷା ମିଳିଲା କିମିତି ?"

"ଉତ୍କଳାବର୍ତ୍ତି ଯେଉଁ କଥା କହୁଥିଲା ତାହା କଣ ବର୍ତ୍ତମାନର କଥା ? ସେ ତ ହେଉଛି ପାଞ୍ଚହଜାର ବର୍ଷ ତଳର କଥା । ଚନ୍ଦ୍ରଲୋକରେ ସିନା ବର୍ତ୍ତମାନ ଜଳ, ଉଦ୍ଭିଦ ବାୟୁ ଓ ପ୍ରାଣୀ ନାହିଁ, ସବୁଦିନେ କଣ ସେଠି ଏଇଆ ଥିଲା ? ଉତ୍କଳାବର୍ତ୍ତିର ମତରେ ପାଞ୍ଚ-ହଜାର ବର୍ଷତଳେ ସେଠି ସବୁ ଥିଲା । ପାଞ୍ଚ ହଜାର ବର୍ଷତଳେ ସେଠି ସୁସଭ୍ୟ, ସୁଶିକ୍ଷିତ ମଣିଷ-ସମାଜ ଥିଲା । ସେ ସେଇଠାରୁ ତାର ବିଜ୍ଞାନ ଶିକ୍ଷା ଲାଭ କରିଥିଲା । ପାଞ୍ଚହଜାର ବର୍ଷତଳେ ଚନ୍ଦ୍ରରେ ପୃଥିବୀ ଭଳି ଅବସ୍ଥା ଯେ ନଥିଲା ତାହା ତ ତୁମେ କେହି ପ୍ରମାଣ ଦେଇ କହିପାରିବ ନାହିଁ ।"

ସେଣ୍ଡି, ମେରିଆ ଓ ଲିଜା ସମସ୍ତେ ମୋ ଯୁକ୍ତିରେ ଚୁପ୍ । କିନ୍ତୁ ସେମାନଙ୍କ ମୁହଁରୁ ସ୍ପଷ୍ଟ ଜଣାପଡ଼ୁଥିଲା, ମୋ ଯୁକ୍ତିକୁ ଗ୍ରହଣ କରୁଥିଲେହେଁ ସେମାନଙ୍କ ମନ ମାନୁନାହିଁ ସେଥିରେ । ଚନ୍ଦ୍ରରେ ସୁଶିକ୍ଷିତ ମଣିଷସମାଜ ଥିବା କଥାଟା ସେମାନଙ୍କୁ କେମିତି ଖାପ୍‌ଛଡ଼ା ଓ କାଳ୍ପନିକ ଜଣାପଡ଼ୁଥିଲା ।

"ଉତ୍କଳାବର୍ତ୍ତି ତାର ବିଜ୍ଞାନଶିକ୍ଷା ସମ୍ବନ୍ଧରେ ଆଉ କଣ କହୁଥିଲା, ରମେଶ !"

—ସେଣ୍ଟି ପଚ୍ଚରିଲି ।

"ଉତ୍କଳାବର୍ତ୍ତି କହିଥିଲା—ମହେଞ୍ଜୋଦାରୋରେ ମୁଁ ବିଜ୍ଞାନଶିକ୍ଷା ପାଇଥାନ୍ତି କୁଆଡ଼ୁ ? ଥିଲି ଜଣେ ମେଷରକ୍ଷକ । ମେଷ ଚରାଇବା ଥିଲା ମୋର ପ୍ରଧାନ କାମ । ମୁଁ ତେଣୁ ଥିଲି ନିପଟ ମୂର୍ଖ । ଶିକ୍ଷା କଣ ଜାଣି ନଥିଲି । ମହେଞ୍ଜୋଦାରୋରେ ମୋତେ କିଏ ଶିକ୍ଷା ଦେଇଥାନ୍ତା ?"

ଉତ୍କଳାବର୍ତ୍ତିର ଅନୁଭୂତି ଶୁଣିବା ସଙ୍ଗେ ସଙ୍ଗେ ମୁଁ ସେଥିର ଇଂରେଜୀ ଅନୁବାଦ କରିପକାଉଥିଲି ଏବଂ ସାମରିକ ଅଫିସର ଓ ବୈଜ୍ଞାନିକମାନଙ୍କ ହାତକୁ ତାହା ବଢ଼ାଇ ଦେଉଥିଲି । ଉତ୍କଳାବର୍ତ୍ତି ତାର ବିଶ୍ୱ-ଅଭିଜ୍ଞତା ବର୍ଣ୍ଣନା କରିବ, ଏହା ଜାଣିବାକ୍ଷଣି ସେମାନେ ଶୁଣିବାପାଇଁ ମୋ ପାଖକୁ ଆତୁର ହୋଇ ଆସିଲେ । ସାମରିକ ଅଫିସରମାନଙ୍କୁ ଦେଖି ଉତ୍କଳାବର୍ତ୍ତି ଟିକିଏ ବିବ୍ରତ ହେଲାଭଳି ଜଣାପଡ଼ୁଥିଲା । ଏହି ବିବ୍ରତତାର ବଶବର୍ତ୍ତୀ ହୋଇ ମୋତେ କାଳେ ତାର ବିଶ୍ୱଭ୍ରମଣ କାହାଣୀ ନ କହିବ, ସେହି ଭୟ ସବୁବେଳେ ମୋ ମନରେ ଖେଳୁଥାଏ । ସାମରିକ ଅଫିସରମାନଙ୍କୁ କକ୍ଷ ତ୍ୟାଗ କରି ଚାଲିଯିବାକୁ ଅନୁରୋଧ ବା କରୁଛି କେମିତି ? ଲକ୍ଷ୍ୟ କଲି ଏହି ସାମରିକ ଅଫିସରମାନଙ୍କ ଉପସ୍ଥିତି ଯୋଗୁଁ ଉତ୍କଳାବର୍ତ୍ତି କିଛି ବର୍ଣ୍ଣନା କରିବାକୁ ଇତସ୍ତତଃ ହେଲା; ତେଣୁ କେମିତି ସେମାନେ ଏଠାରୁ ବିଦାୟ ହେବେ, ସେହି ଚିନ୍ତା ମୁଣ୍ଡରେ ଖେଳୁଥିଲା ।

ଉପଲବ୍ଧି କଲି ଉତ୍କଳାବର୍ତ୍ତିର ଜୀବନୀ ଯଦି ମୁଁ ଜାଣିପାରେ ଓ ସେ ତାର ବିଶ୍ୱ ଭ୍ରମଣ ଅଭିଜ୍ଞତା ଯଦି ମୋଠାରେ ବର୍ଣ୍ଣନା କରେ, ତେବେ ସେ ଅଭିଜ୍ଞତା ଆମର ମହାଶୂନ୍ୟ ଅଭିଯାନରେ କମ୍ ସାହାଯ୍ୟକାରୀ ହେବନି । ତେଣୁ ଆମ ଉଦ୍ଦେଶ୍ୟ ଉତ୍କଳାବର୍ତ୍ତିକୁ ନଜଣାଇ ରହିପାରିଲିନି । କହିଲି—ଦେଖ, ଉତ୍କଳାବର୍ତ୍ତି ! ତୁମର ବୃତ୍ତାନ୍ତ ଆମର ହେବ ଅମୂଲ୍ୟ ସମ୍ପଦ । ଆମେ ବିଜ୍ଞାନରେ ଅଗ୍ରଗତି କରିଛୁ ସତ; କିନ୍ତୁ ତୁମେ ଯେଉଁ ସବୁ ସଭ୍ୟତା ସହିତ ପରିଚିତ ହୋଇ ଆସିଛ, ସେଗୁଡ଼ିକ ତୁଳନାରେ ଆମ ଅଗ୍ରଗତି କିଛି ନୁହେଁ । ଆମେମାନେ ଅତ୍ୟଧିକ ଉତ୍ସୁକ ପୃଥିବୀ ବାହାରକୁ ଯାଇ ମହାଶୂନ୍ୟ ଅଭିଯାନ ଚଳେଇଛୁ; କିନ୍ତୁ ଆମର ସେ ଅଭିଯାନ ସମସ୍ୟାବହୁଳ ହୋଇ ରହିଛି । ଆମେ ପୃଥିବୀଠାରୁ ଦୁଇଶ ତିନିଶ ମାଇଲରୁ ଅଧିକ ଦୂର ଯିବାକୁ ସମର୍ଥ ହୋଇନୁ । ତୁମେ ଯଦି ଆମକୁ ସାହାଯ୍ୟ କରିବ, ଏହା ସାରା ମାନବଜାତିର କଲ୍ୟାଣରେ ବିନିଯୋଗ ହେବ ।

ମୋ ପ୍ରଶ୍ନରେ ଉତ୍କଳାବର୍ତ୍ତି ବେଶି ଉତ୍ସୁକ ହେଲାଭଳି ଜଣାପଡ଼ିଲାନି; ସତେ ଯେମିତି ସେ କିଛି କହିବାକୁ ପ୍ରସ୍ତୁତ ନୁହେଁ । କିଛି ସମୟ ନୀରବ ରହି କହିଲା—ହଁ, ମୁଁ ମୋ ଅଭିଜ୍ଞତା ବର୍ଣ୍ଣନା କରିବାକୁ ରାଜି ପୃଥିବୀର ବୈଜ୍ଞାନିକମାନଙ୍କ ଆଗରେ; କିନ୍ତୁ ଏହି ସାମରିକ ଅଫିସରମାନଙ୍କ ଆଗରେ ମୁଁ କିଛି ପ୍ରକାଶ କରିବାକୁ ପ୍ରସ୍ତୁତ ନୁହେଁ । ସେମାନେ ଏତେ-ଗୁଡ଼ାଏ ମୋତେ ଘେରିରହିଛନ୍ତି କାହିଁକି ? ମୁଁ ତ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ଆସିନି । ପୃଥିବୀରେ କଣ ଏବେ ବି ଯୁଦ୍ଧବିଗ୍ରହ ଲାଗିରହିଛି ? ତା' ନହେଲେ ଏମାନେ

ରହିଥାନ୍ତେ କାହିଁକି ? ତୁମେ ଯଦି ଏମାନଙ୍କୁ ବିଦାକରିଦେବ, ଏମିତକି ଏମାନେ ମୋ ପାଖଆଖରେ ରହିବେନି, ତେବେ ଯାଇ ମୁଁ ମୋ ଅନୁଭୂତି ବର୍ଣ୍ଣନା କରିବି ।

ଉତ୍କଳାବର୍ତ୍ତିର ଯୁକ୍ତି କିଛି ମନ୍ଦ ନୁହେଁ । କିନ୍ତୁ ଆମ ପୃଥିବୀର ସବୁ କ୍ଷେତ୍ରରେ ସାମରିକ ଅଫିସରମାନଙ୍କ ପ୍ରାଧାନ୍ୟ କେମିତି ବେଶି, ବୁଝାଇଦେଲି । ପୃଥିବୀର ପ୍ରତ୍ୟେକ ଦେଶରେ ମହାକାଶ ଅଭିଯାନଠାରୁ ଆରମ୍ଭ କରି ବଡ଼ ବଡ଼ ଗୁରୁତ୍ୱପୂର୍ଣ୍ଣ ଗବେଷଣାମାନଙ୍କରେ ସାମରିକ ବିଭାଗର ପ୍ରଭାବ କଥା ସୂଚେଇବା ପାଇଁ ଭୁଲିଲି ନାହିଁ ।

ଆମ ଦୁହିଁଙ୍କର କଥାବାର୍ତ୍ତା ଭିତରେ ସାମରିକ ଅଫିସରମାନେ ବ୍ୟଗ୍ର ହୋଇଉଠୁଥାନ୍ତି, ମୁଁ କଣ କଥାବାର୍ତ୍ତା ହେଉଛି ତାର ଅନୁବାଦ ପାଇଁ । କଥା କହୁଁ କହୁଁ ମୁଁ କିଛି ସମୟ ଯଦି ଅନୁବାଦ ନକରି କଥାବାର୍ତ୍ତାରେ ଲାଗିଗଲି, ତେବେ ସେମାନଙ୍କ ସନ୍ଦେହ କହିଲେ ନସରେ । ଆମ ଭିତରେ ଯେଉଁ କଥାବାର୍ତ୍ତା ଚାଲିଛି, ମୁଁ କାଳେ ଅନୁବାଦ କରିବାରେ ହେଳା କରିପାରେ ସେଥିପାଇଁ ସେମାନେ ଆମ ଅଜଣାରେ ଏକ ଟେପ୍ ରେକର୍ଡ଼ର ସାହାଯ୍ୟରେ ସବୁ କଥା ସଂଗ୍ରହ କରିନେଉଥାନ୍ତି । ପ୍ରଥମେ ପ୍ରଥମେ ମୁଁ ଜାଣି ପାରୁ ନଥିଲି; କିନ୍ତୁ ପରେ ତାହାର ଇସାରା ପାଇ ସେମାନଙ୍କର ଆମପ୍ରତି ସନ୍ଦେହର ପରିମାଣ କେତେ ଉପଲବ୍ଧି ନ କରି ରହିପାରିଲିନି । ସେମାନଙ୍କ ଦୁର୍ଭାଗ୍ୟକୁ ଉତ୍କଳାବର୍ତ୍ତି ସଂସ୍କୃତଭାଷା ହିଁ ଜାଣିଛି, ନୋହିଲେ ସେମାନେ ତାଠାରୁ କଥା ବାହାର କରିବା ପାଇଁ କେତେ ବାଟ କରି ସାରନ୍ତେଣି ।

"ଉତ୍କଳାବର୍ତ୍ତି କଣ ତାର ଅନୁଭୂତି ବର୍ଣ୍ଣନା କରିବାକୁ ରାଜି ହେଲା ରମେଶ ?"—ସେଣ୍ଟି ପଚାରିଲା ।

"ହିଁ, ନ କହିବ କାହିଁକି ? ତା ସର୍ତ୍ତ ପୂରଣ ହେବାରୁ ଅର୍ଥାତ୍ ସାମରିକ ଅଫିସରମାନେ ସେହି କକ୍ଷରୁ ବିଦାୟ ନେଲାରୁ, ସେ ତାର ଅପୂର୍ବ ଅନୁଭୂତି ବର୍ଣ୍ଣନ କଲା । ସାମରିକ ଅଫିସରମାନଙ୍କ ସହିତ ବୈଜ୍ଞାନିକମାନେ ବି ସେ କକ୍ଷ ତ୍ୟାଗକରି ଚାଲିଗଲେ । ତେଣୁ ଉତ୍କଳାବର୍ତ୍ତିର ବର୍ଣ୍ଣନାରେ କିଛି ଅସୁବିଧା ହେଲାନି ।"

"ଉତ୍କଳାବର୍ତ୍ତି ତୁମକୁ ଖୁବ୍ ବିଶ୍ୱାସ କରୁଥିଲା ନିଶ୍ଚୟ ?"—ମେରିଆ ପଚାରିଲା ।

"ସେ କଣ ଆଉ ମେରିଆ ନା ସେଣ୍ଟି ହୋଇଛି ଯେ ମୋ ଉପରୁ ଆସ୍ଥା ତୁଟାଇ ମୋ ନାଁରେ କେତେ କଣ ଦୁର୍ନାମ ବଖାଣିବସିବ ।"

"ତୁମର ସବୁବେଳେ ସେଇ କଥା ରମେଶ ! ଥରେ ତ ଆମେ ସ୍ୱୀକାର କଲୁ ଆମର ସେ ଭୁଲପାଇଁ ଆମେ ଦୁଃଖିତ ଓ ଲଜ୍ଜିତ । ସେଇ ସେଇ କଥାକୁ ଆଉ କେତେଥର କହି ଆମକୁ ଅପମାନ ଦେବ ଶୁଣେ ?"—ମେରିଆ ମୁହଁରେ କୃତ୍ରିମ ରାଗର ଛଟା ।

"ହେଉ, ହେଉ, ଛାଡ଼ ସେ କଥା । ହଁ, କଣ କହୁଥିଲଟି ?" ଟିକିଏ ଭାବି ମୁଁ କହିଲି—"ହଁ, ଉତ୍କଳାବର୍ତ୍ତିର ଥିଲା ମୋ ଉପରେ ଅଗାଧ ବିଶ୍ୱାସ । ସେ ପୁଣି ଯେତେବେଳେ ଜାଣିଲା ଯେ ସେ ଯେଉଁ ଅଞ୍ଚଳର ଲୋକ ମୁଁ ବି ସେହି ଅଞ୍ଚଳର, ସେ ଯେଉଁ

ଜାତିରୁ ସମ୍ଭୂତ ମୁଁ ମଧ୍ୟ ସେହି ଜାତିରୁ, ସେତେବେଳେ ତାର ମୋ ଉପରେ ବିଶ୍ୱାସ ନ ହୋଇ କ'ଣ ଆମେରିକାନ୍‌ମାନଙ୍କ ଉପରେ ବିଶ୍ୱାସ ହୋଇଥାନ୍ତା ?'' ମେରିଆକୁ ଆହୁରି ଚିଡ଼ିକିଏ ଚଡ଼ାଇବା ପାଇଁ ଏତକ କହିପକାଇଲି ।

ମେରିଆର ମୁହଁ ଏହାଶୁଣି ଗମ୍ଭୀର ହୋଇଗଲା । ମୁଁ କହିଲି—''ଉତ୍କଳାବର୍ତ୍ତି ମୋ ସହିତ କଥାବାର୍ତ୍ତା କଲାବେଳେ ମନ ଖୋଲି କଥାବାର୍ତ୍ତା କରିବାକୁ ଭଲପାଉଥିଲା । ମୁଁ ଯେଉଁଦିନରୁ ସେଠାକୁ ଗଲି ଉତ୍କଳାବର୍ତ୍ତିର ମୁହଁରେ ସରସତା ଦେଖାଦେଲା । ସେ ବେଳେବେଳେ ଖୁସି ଥିଲାଭଳି ଜଣାପଡ଼ୁଥାଏ । ସେ ବେଳେବେଳେ ଗୁଣୁଗୁଣୁ ହୋଇ ଗୀତ ଗାଇବାର ମଧ୍ୟ ଅନେକେ ଶୁଣିଛନ୍ତି । ପ୍ରଥମେ କେଇଦିନ ସେ ଏଠାକାର କଥାବାର୍ତ୍ତା, ଚାଲିଚଳଣ ଆଦି କିଛି ବୁଝି ନ ପାରି ବଡ଼ ମନସ୍ତାପରେ ଥିଲା । ମୁଁ ଆସିଲାଦିନୁଁ ତାର ସେମିତି ଭାବ ଆଉ ନାହିଁ । ଯେତେବେଳେ ତାର ଯାହା ଦରକାର ସେ ମୋ ଜରିଆରେ ମାଗିନିଏ । ତାର ପୂର୍ବ ଭୟ ଓ ଆଶଙ୍କା ମଧ୍ୟ ଆଉ ନାହିଁ । ତାର ବିଶ୍ୱାସ ଆସିଗଲା ଯେ ଏମାନେ ତାର କିଛି କ୍ଷତି କରିବାକୁ ଚାହାନ୍ତି ନାହିଁ ।''

''ଉତ୍କଳାବର୍ତ୍ତି ଯେତେବେଳେ ତୁମ ଅଞ୍ଚଳର ଲୋକ ଓ ତୁମର ପୂର୍ବପୁରୁଷ, ତା ରୂପ ଓ ତୁମ ରୂପ ଭିତରେ ତ ତେର ସାମଞ୍ଜସ୍ୟ ଥିବ ରମେଶ ?''—ସେଣ୍ଡି ପଚାରିଲା ।

''ଅବଶ୍ୟ ରହିବା କଥା''—ଉତ୍ତର ଦେଲି, ''କିନ୍ତୁ ତୁମେ ଜାଣିନ ସେଣ୍ଡି ! ସେ ଯେଉଁ ଆର୍ଯ୍ୟବଂଶଜ ମୁଁ ସେହି ବଂଶଜ ହେଲେ ମଧ୍ୟ ଆମ ଦୁହିଁଙ୍କ ଚେହେରାରେ ଥିଲା ଯଥେଷ୍ଟ ପାର୍ଥକ୍ୟ । ପୁଣି ଏତେ ପାର୍ଥକ୍ୟ ଯେ ଆମ ଦୁହିଙ୍କୁ ଦେଖିଲେ ତୁମେ ଭାବିବ ନାହିଁ ଆମେ ଏକ ଜାତି ବୋଲି !''

''ଏଁ, ଏତେ ପାର୍ଥକ୍ୟ ! କାହିଁକି ?'' ମେରିଆ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

''ସେ ଦେଖିବାକୁ କେମିତି ରମେଶ ? ମଣିଷଭଳି ତ ନିଶ୍ଚୟ ହୋଇଥିବ ?''—ପଚାରିଲା ସେଣ୍ଡି । ଲିଜା ଉପହାସ କରି କହିଲା—''ସେ ଆଉ କଣ ମଣିଷଭଳି ନ ହୋଇ ଚାରିଗୋଡ଼ିଆ ପଶୁଭଳି ହୋଇଥାନ୍ତା ? ତୁ କଣ ଆଉ କିଛି ଭାବୁଚୁ ସେଣ୍ଡି ! ଏମିତି ବାଜେ ପ୍ରଶ୍ନଟାଏ ପଚାରିଲୁ କେମିତି ? ଲୋକେ ଅନ୍ୟମନସ୍କ ଥିଲେ ଯେମିତି ପଚାରନ୍ତି ତୁ କଣ ଠିକ୍ ସେମିତି ପଚାରୁଛୁ !''

''ତୁମେ ଜାଣିଛ ମେରିଆ !'' ମୁଁ କହିଲି—''ଆମେ ଦୁହେଁ ଏକା ବଂଶଜ ହେଲେ ବି ଆମ ଦୁହିଁଙ୍କ ରୂପ ଭିତରେ କାହିଁକି ଥିଲା ଅଶେଷ ପାର୍ଥକ୍ୟ ?''

''ନାଁ''—ମେରିଆ ତାହାର ଅକ୍ଷମତା ଜଣାଇଲା ।

କହିଲି—''ଉତ୍କଳାବର୍ତ୍ତି ଥିଲା ପାଞ୍ଚହଜାର ବର୍ଷ ତଳର ଆର୍ଯ୍ୟବଂଶଜ । ମୁଁ ହେଲି ପାଞ୍ଚ ହଜାର ବର୍ଷ ପରର । ଏହି ପାଞ୍ଚ ହଜାର ବର୍ଷ ଭିତରେ ଆର୍ଯ୍ୟଜାତି ଶକ, ହୁନ ଆଦି କେତେ ବିଦେଶୀ ଜାତି ସହିତ ମିଶିଥିବାରୁ ପରବର୍ତ୍ତୀ ଆର୍ଯ୍ୟମାନଙ୍କର ରକ୍ତରେ ଆର୍ଯ୍ୟ-ରକ୍ତର ବିଶୁଦ୍ଧତା ନଥିଲା; କିନ୍ତୁ ଉତ୍କଳାବର୍ତ୍ତି ପାଞ୍ଚ ହଜାର ବର୍ଷ ପୂର୍ବର ବିଶୁଦ୍ଧ ଆର୍ଯ୍ୟ

ଥିବାରୁ ତାର ରକ୍ତ ଥିଲା ବିଶୁଦ୍ଧ । ଆମମାନଙ୍କ ରକ୍ତ ଭଳି ତା ରକ୍ତରେ ବିଦେଶୀ ରକ୍ତ ମିଶିଯାଇ ନଥିଲା । ତେଣୁ ସେ ପରିସ୍ଥିତିରେ ଆମ ଦୁଇଜଣଙ୍କର ରକ୍ତ ଭିତରେ ପାର୍ଥକ୍ୟ ଥିବାବେଳେ ରୂପରେ ପାର୍ଥକ୍ୟ ନ ରହିବ କେମିତି ? ସେହି ଦୃଷ୍ଟିରୁ ଦେଖିଲେ, ଆମ ଦୁଇଜଣଙ୍କୁ ଯେ ଦେଖିବ ସେ କଦାପି କହିବନି ଆମେ ଏକା ଜାତିର ବୋଲି ।"

"ତେବେ ଉତ୍କଳାବନ୍ତୀ ଦେଖିବାକୁ ତୁମଠାରୁ ଢେର୍ ତଫାତ୍ ଥିଲି ନିଶ୍ଚୟ ?"—ମେରିଆ ପଚାରିଲା ।

"ହଁ, ସେ ଦେଖିବାକୁ ମୋଠାରୁ ଢେର୍ ଗୋରା, ବେଶ୍ ଉଚ୍ଚ, ପ୍ରଶସ୍ତ ଛାତି, ଖଣ୍ଡାଧାର ପରି ନାକ, ଲମ୍ବା କେଶ, ମୁହଁରେ କଳା କଳା ନିଶ ଓ ଦାଢ଼ି । ତାର ଶରୀର ବେଶ୍ ସୁସ୍ଥ ସବଳ । ଆମ ଭାରତୀୟମାନେ ଯେମିତି ଦୁର୍ବଳ ଓ ଖର୍ବକାୟ, ସେ ସେମିତି ନଥିଲା । ତା ଗୋରା ତକତକ ଦେହ କେତେକାଂଶରେ ୟୁରୋପୀୟମାନଙ୍କ ଭଳି । ପୁରାତନ ଆର୍ଯ୍ୟମାନଙ୍କର ରୂପ, ବର୍ଣ୍ଣ ଆଦିର ବର୍ଣ୍ଣନା ଯେ ପଢ଼ି ନଥିବ, ସେ କଦାପି ବିଶ୍ୱାସ କରିବ ନାହିଁ ଯେ ଉତ୍କଳାବନ୍ତୀ ଆର୍ଯ୍ୟବଂଶଜ । ମୁଁ ପୁରାକାଳର ଆର୍ଯ୍ୟମାନଙ୍କର ରୂପ ବର୍ଣ୍ଣ ଆଦି ସମ୍ବନ୍ଧରେ ଅଧ୍ୟୟନ କରିବାରୁ ଉତ୍କଳାବନ୍ତୀକୁ ଦେଖିଲାମାତ୍ରକେ ମୁଁ ଗ୍ରହଣ କରିନେଲି ସେ ଆର୍ଯ୍ୟ ବଂଶଜ ବୋଲି । ମୂଳ ଆର୍ଯ୍ୟମାନଙ୍କର ରୂପ, ବର୍ଣ୍ଣ ଆଦି କେମିତି ହୋଇପାରେ ବହିରେ ପିନା ପଢ଼ିଥିଲି, ନିଜ ଆଖିରେ ଦେଖି ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କଲି ସେ ଦିନ ।

ତା ଛଡ଼ା ଏକ ନୂତନ ଜ୍ଞାନର ସନ୍ଧାନ ପାଇଲେ ସେଠି ଏକତ୍ରିତ ହୋଇଥିବା ଇତିହାସବେତ୍ତା ଓ ନୃତତ୍ତ୍ୱବିଶେଷଜ୍ଞମାନେ । ପାଞ୍ଚ ହଜାର ବର୍ଷ ଭିତରେ ବଂଶାନୁକ୍ରମିକ ବିବର୍ତ୍ତନ କି ରୂପ ଧାରଣ କରିପାରେ ଉତ୍କଳାବନ୍ତୀର ରୂପ ଓ ବର୍ଣ୍ଣ ଆଦିକୁ ପରୀକ୍ଷା କରି ବୈଜ୍ଞାନିକମାନେ ନୂତନ ଜ୍ଞାନ ଆହରଣ କରିଥିଲେ ।"

"ତୁମକୁ ଦେଖିଲା ପରଠାରୁ ଉତ୍କଳାବନ୍ତୀ କଣ ଜାଣିପାରିଥିଲା ତୁମେ ତା ଜାତିର ବୋଲି ?"—ମେରିଆ ପଚାରିଲା ।

"ମୋତେ ଦେଖିଲାକ୍ଷଣି ସେ ଜାଣିପାରିଥିଲା କି କଣ ମୁଁ କହିପାରିବିନି; କିନ୍ତୁ ମୁଁ ଯେତେବେଳେ ତା ସହିତ କଥାବାର୍ତ୍ତା ହେଲି ସେ ପ୍ରଥମେ ମୋତେ ପଚାରି ବୁଝିଥିଲା, ମୁଁ ତା ଭାଷା ବୁଝିପାରୁଛି ଓ କହିପାରୁଛି କେମିତି ? ଏମାନେ ତା ଭାଷା ବୁଝିପାରୁନାହାନ୍ତି କି ସେ ସେମାନଙ୍କ ଭାଷା ବୁଝିପାରୁନି ବୋଲି ବଡ଼ ବ୍ୟସ୍ତ ହେଉଥିଲା ।"

"ଉତ୍କଳାବନ୍ତୀର ବିଗତ ଜୀବନ ସହିତ ତୁମେ ତ ନିଶ୍ଚୟ ପରିଚିତ ହୋଇଥିବ ରମେଶ ?"—ସେଣ୍ଟି ପଚାରିଲା ।

"ହଁ, ନ ହେବ ବା କେମିତି ? ସେ ତା ଜୀବନର ସମସ୍ତ ଅନୁଭୂତି ମୋତେହିଁ କହିଥିଲା । ଉତ୍କଳାବନ୍ତୀଠାରୁ ମୁଁ ଯାହା ଶୁଣିଥିଲି, ତାକୁ ଇଂରାଜୀରେ ତର୍ଜମା କରି ସାମରିକ କର୍ତ୍ତୃପକ୍ଷ ତଥା ବୈଜ୍ଞାନିକମାନଙ୍କୁ ଯୋଗାଇ ଦେଉଥିଲି ।"

"ଉତ୍କଳାବନ୍ତୀ ତ ସେଥିରେ ଆପତ୍ତି କରିଥିବ ନିଶ୍ଚୟ ?"—ଲିଜା ପଚାରିଲା ।

"ନିଶ୍ଚୟ, ସେ କଥା ଆଉ ପଚାରିବାକୁ ଅଛି ? କିନ୍ତୁ ମୁଁ ଯେତେବେଳେ ବୁଝାଇଦେଲି ଯେ ଉଜ୍ଜ୍ୱଳାବର୍ତ୍ତିର ଅନୁଭୂତି ବୈଜ୍ଞାନିକମାନଙ୍କର ଅବଗତି ନିମନ୍ତେ ପଠାଯାଉଛି, ସେ ଆଉ ଆପତ୍ତି କରିନଥିଲା । ସାମରିକ ଅଫିସରମାନଙ୍କ ପାଇଁ ଯାଉଛି କହିଥିଲେ ସେ ପ୍ରତିବାଦ ନକରି ଛାଡ଼ି ନଥାନ୍ତା ।

ଉଜ୍ଜ୍ୱଳାବର୍ତ୍ତି ଓ ମାର୍କିନ୍ ବୈଜ୍ଞାନିକ ତଥା ସାମରିକ ଅଫିସରଙ୍କ ଭିତରେ ମୁଁ ଥିଲି ଏକମାତ୍ର ଯୋଗସୂତ୍ର । ଦେଶପାଣ୍ଡେ ଓ ଭେଙ୍କଟରମଣ ମୋତେ ବେଳେବେଳେ ସାହାଯ୍ୟ କରୁଥାନ୍ତି । କିନ୍ତୁ ଅଧିକାଂଶ ସମୟ ମୁଁ ଉଜ୍ଜ୍ୱଳାବର୍ତ୍ତି ସହିତ କଥାବାର୍ତ୍ତା କରେ । ମୁଁ ନ ଥିଲେ ଦେଶପାଣ୍ଡେ କି ଭେଙ୍କଟରମଣଙ୍କ ସହିତ ସେ ମନ ଖୋଲି କଥାବାର୍ତ୍ତା କରେ ନାହିଁ ।"

"ଉଜ୍ଜ୍ୱଳାବର୍ତ୍ତିଠାରୁ ଶୁଣିଥିବା ସମସ୍ତ କଥା ଆମକୁ ନ କହିବାଯାଏ ଆମେ ତିନିହେଁ ତୁମକୁ ଛାଡ଼ୁନାହୁଁ ।"—ତିନିଜଣଯାକ କୃତ୍ରିମ ଛଳମିଶା ତାଗିଦ୍ କରି କହିଲେ ।

"ତା ହେଲେ କଣ କହିବାକୁ ପଡ଼ିବ ମୋତେ ? କିନ୍ତୁ ମୋ ଅନୁଭୂତିକୁ କାନକୁ ଦିକାନ ନ କରିବା ପାଇଁ କଡ଼ା ନିର୍ଦ୍ଦେଶ ଅଛି । ଯଦି ସାମରିକ କର୍ତ୍ତୃପକ୍ଷ ଜାଣିପାରନ୍ତି, ତେବେ ମୋତେ ଜେଲ ବରଣ ହିଁ ସାର ହେବ ।"

"ଏଠି କିଏ ଭଲା ଅଛି ଯେ ତୁମ କଥା ଶୁଣିପକାଉଛି ?"—ସେଣ୍ଟି କହିଲା ।

ଚାରିଆଡ଼କୁ ଅନାଇ ଟିକିଏ ନିଶ୍ଚିନ୍ତ ହୋଇ ଆରମ୍ଭ କଲି—"ଉଜ୍ଜ୍ୱଳାବର୍ତ୍ତି ଥିଲା ସିନ୍ଧୁ ନଦୀକୂଳସ୍ଥ ମହେଞ୍ଜୋଦାରୋ ସହରର ଏକ ସାଧାରଣ ଶ୍ରମିକ । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଗବେଷଣାରୁ ଯାହା ଜଣାଯାଏ, ମହେଞ୍ଜୋଦାରୋ ସହର ପ୍ରାୟ ପାଞ୍ଚହଜାର ବର୍ଷଧରି ପୃଥିବୀପୃଷ୍ଠରୁ ବିଲୁପ୍ତ ଥିଲା । ଭୂମିଖନନଦ୍ୱାରା ସେହି ସହରଟି ଅଳ୍ପ କେତେ ବର୍ଷ ତଳେ ଭୂମିତଳୁ ଉଦ୍ଧାର କରାଯାଇଛି । ବିଲୁପ୍ତ ସହରଟିର ରାସ୍ତାଘାଟ, ଘରଦ୍ୱାର, ଗାଧୁଆଘର, ସନ୍ତରଣ ପୁଷ୍କରଣୀ, ମନ୍ଦିର, ତୋରଣ ଆଦି ଏମିତିଭାବରେ ଉଦ୍ଧାର କରାଯାଇଛି; ଯେକେହି ଲୋକ ସେହି ସବୁ ଭଗ୍ନାବଶେଷ ଦେଖିଲେ ଧାରଣା କରିବ, ଆଜକୁ ପାଞ୍ଚହଜାର ବର୍ଷ ତଳେ ଏହି ସହରଟି ସଭ୍ୟତାର ବେଶ୍ ଶିଖରରେ ପହଞ୍ଚିପାରିଥିଲା । ଭାରତବର୍ଷ ଭାଗ ଭାଗ ହେବା ପରେ ଏହି ସହରଟି ବର୍ତ୍ତମାନ ରହିଯାଇଛି ପାକିସ୍ତାନରେ । ଉଜ୍ଜ୍ୱଳାବର୍ତ୍ତି ତା ଜୀବନ ଆରମ୍ଭ କରିଥିଲା ଜଣେ ମେଷପାଳକ ଭାବରେ ଆଫଗାନିସ୍ତାନର ପାର୍ବତ୍ୟ ମାଳଭୂମି ଅଞ୍ଚଳରେ । ଦୁର୍ଭାଗ୍ୟବଶତଃ ତା'ର ମେଷ ଆଦି ଚୋରି ହୋଇଯିବାରୁ ସେ ଶ୍ରମିକ ହୋଇ ଚାଲିଆସିଲା ମହେଞ୍ଜୋଦାରୋ ସହରକୁ । ମହେଞ୍ଜୋଦାରୋ ସହରର ଏକ ଶ୍ରମିକ କଲୋନୀରେ ଖଣ୍ଡିଏ ବାସଘର ତୋଳି ସେ ବସବାସ କରୁଥିଲା । ତା ଅନୁଭୂତିର ସେଇ ମହେଞ୍ଜୋଦାରୋ ସଭ୍ୟତାର ବର୍ଣ୍ଣନା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ତା ବ୍ୟତୀତ ସେ ଆଉ ଯାହା ବର୍ଣ୍ଣନା କରୁଛି, ବାସ୍ତବିକ ସେ ଗୁଡ଼ିକ ପ୍ରହେଳିକାମୟ । ମହେଞ୍ଜୋଦାରୋ ସହରରେ ଏକ ଶ୍ରମିକ ଭାବରେ ବାସ କରୁଥିବାବେଳେ ଉଜ୍ଜ୍ୱଳାବର୍ତ୍ତିର ଜୀବନରେ ଯେଉଁ ଏକ ପରିବର୍ତ୍ତନ ଆସିଲା,

ତାହା ଯେ କେହି ଲୋକ ଶୁଣିଲେ ବିସ୍ମିତ ନହୋଇ ରହିପାରିବେନି । ଏବେ ତା ଜୀବନର ପୂର୍ବ ଅନୁଭୂତିଟା ଶୁଣ । ସେ ଅନୁଭୂତି ପାଞ୍ଚ ହଜାର ବର୍ଷ ତଳର୍...”

# ଗ୍ରହ

ସାଧାରଣ ଦିନ ଭଳି ଦିନଟାଏ । ସକାଳୁ ଉଠି ତରତର ହୋଇ ବାହାରିଲି ସିନ୍ଧୁ ନଦୀର ଆରପଟରେ ଥିବା ବଣରୁ କାଠ କାଟିବାପାଇଁ । ମନ ବଡ଼ ଚଞ୍ଚଳ ହେଉଥାଏ । ଶୀଘ୍ର କେମିତି କାଠ କାଟି ଫେରିଆସିଲେ ମହେଞ୍ଜୋଦାରୋରେ ଅଭିନୀତ ହେଉଥିବା ଏକ ନାଟକ ଦେଖିବାକୁ ଯିବି । ଡଙ୍ଗାରେ ପାରହୋଇ ସିନ୍ଧୁ ନଦୀର ଆରପାରିକୁ ଗଲି । ବଣରେ କାଠ କାଟୁ କାଟୁ ହଠାତ୍ ଏକ ଘଟଣାରେ ଚକିତ ନ ହୋଇ ରହିପାରିଲି ନାହିଁ । ମୁଁ ଗୋଟାଏ ଗଛକୁ ହାଣିବାକୁ ଲାଗିଛି, ହଠାତ୍ ବଣର ଆରପାରିରେ ଆକାଶରୁ କ’ଣ ଗୋଟାଏ ଧୀରେ ଧୀରେ ଖସିବାର ଦେଖାଗଲା । କାଠକଟା ବନ୍ଦ କରି ଆକାଶକୁ ଭଲ ଭାବରେ ନିରୀକ୍ଷଣ କରି ଦେଖିଲି, ଆକାଶରୁ ତଳକୁ ଖସିଆସୁଛି ଧୀରେ ଧୀରେ ଏକ ପ୍ରକାଣ୍ଡ ଯାନ । ଗୁରିଆଡ଼େ ସୂର୍ଯ୍ୟଙ୍କ କିରଣ ଫେଲାଇ ହୋଇ ପଡ଼ୁଛି । ବଣମଝିର ପଡ଼ିଆରେ ଗାଲିଗ୍ର ପରି ବିଛୁହୋଇଥିବା ସବୁଜ ରଙ୍ଗର ଘାସ ଉପରେ ଓହ୍ଲାଇଲା ସେଇ ଯାନଟି । ବଡ଼ ବିଚିତ୍ର ସେ ଯାନ; ଦେଖିବାକୁ ଗୋଟିଏ ବିମାନ ପରି । ଗତି କରି ପାରୁଛି; କିନ୍ତୁ ଚକ ନାହିଁ, ବଡ଼ ଅସ୍ୱାଭାବିକ ଲାଗିଲା ମୋତେ । ଯାନ ତ ଭୂଇଁ ଉପରେ ଯିବା-ଆସିବା କରେ;ଆକାଶରେ ଯିବା-ଆସିବା କରିବା କେହି ଦେଖିନାହିଁ । ଏ ପୁଣି ଆକାଶରୁ ଆସିଲା କେମିତି ? ନିଜକୁ ବୁଝିବାକୁ ଚେଷ୍ଟାକଲି—ମୁଁ ସ୍ୱପ୍ନ ଦେଖୁନାହିଁ ତ ! ପରମୁହୂର୍ତ୍ତରେ ମନକୁ ଆସିଲା,—ନା, ମୁଁ ତ ସ୍ୱପ୍ନ ଦେଖୁନାହିଁ; କାଠ କାଟିବାକୁ ବଣକୁ ଆସିଛି । ତେବେ ଆକାଶରୁ ଓହ୍ଲାଇଥିବା ସେ ଯାନଟି କଣ ସତ୍ୟ ! କାଠ କାଟିବା ବନ୍ଦ କରି ଯାନଟିକୁ ଏକଲୟରେ ଚାହିଁ ରହିଲି ।

ହଁ, ଏ ତ ସେହି ଯାନ ! ଏଇ ଅଳ୍ପ ସମୟତଳ ଆକାଶରୁ ଓହ୍ଲାଇଥିଲା ।

ପୁଣି ମନ ଭିତରେ ଉଙ୍କିମାରିଲା ପ୍ରଶ୍ନ ପରେ ପ୍ରଶ୍ନ । ଏହାଭିତରେ ଅଛି କଣ ? ଏହା ଏଠାକୁ ଆସିଲା ବା କାହିଁକି ? ମହେଞ୍ଜୋଦାରୋକୁ ଆକ୍ରମଣ କରିବା ପାଇଁ କୌଣସି ଶତ୍ରୁର ଏ ଚକ୍ରାନ୍ତ ନୁହେଁ ତ ? ତା ଯଦି ହୋଇଥାଏ ମହେଞ୍ଜୋଦାରୋ ପ୍ରତି ଏହା କି ସାଙ୍ଘାତିକ ବିପଦ ନୁହେଁ ସତେ ? ଭାବିଲି—ମୋର କଣ ଏଠାରେ ଚୁପ୍ ହୋଇ ବସି ରହିବା ଉଚିତ ? ମୁଁ ବି ତ ମହେଞ୍ଜୋଦାରୋର ଅଧିବାସୀ । ମହେଞ୍ଜୋଦାରୋରେ ଯାହା ବିପଦ, ମୋର ବି ତ ସେଇ ବିପଦ । ଏ ପରିସ୍ଥିତିରେ ମୁଁ ସଙ୍ଗେ ସଙ୍ଗେ ଯାଇ ମହେଞ୍ଜୋଦାରୋର ଶାସକବର୍ଗଙ୍କୁ ଏ କଥାଟି ଜଣାଇଦେବା ଉଚିତ ନୁହେଁ କି? ତା’ହେଲେ

କଣ ମୁଁ ଫେରଯିବି ? କାଠ କାଟିବା ବନ୍ଦ କରି ମୁଁ ଫେରିଜିବାକୁ ଉଦ୍ୟତ ହେଉଛି, ଓହ୍ଲାଇଥିବା ସେ ଯାନ ଆଡ଼େ ଗୃହିଁ ଦେଖିଲି; ଯାନଟିର ଗୋଟିଏ ଦ୍ୱାର ଖୋଲିବାକୁ ଆରମ୍ଭ କଲା । ଗୃହଁ ଗୃହଁ ଦ୍ୱାରଟି ପୂରାପୂରି ଖୋଲିଗଲା । କିଛି ସମୟପରେ ସେ ଦ୍ୱାର-ଦେଇ ବାହାରିଲେ ଜଣେ ସୁଶ୍ରୀ ଯୁବକ । ପଛରେ ତାଙ୍କର ଜଣେ ସୁନ୍ଦରୀ ଯୁବତୀ । ଯୁବକ-ଯୁବତୀଦ୍ୱୟ ଦେଖିବାକୁ ଆମଭଳି ହେଲେହେଁ ସେମାନଙ୍କ ପୋଷାକପତ୍ର ଓ ଗୃଲ-ଚଳନ କେମିତି ଅଲଗା ଅଲଗା ଲାଗୁଥିଲା ମୋତେ । ମୋତେ ଲାଗୁଥିଲା, ସେମାନେ ମଣିଷ ହେଲେ ବି ଆମଭଳି ମଣିଷ ନୁହଁନ୍ତି ।

ଯୁବକ-ଯୁବତୀଦ୍ୱୟ ଯାନରୁ ବାହାରି କିଛି ସମୟ ସେହି ପଡ଼ିଆରେ ବୁଲାଚାଲା କଲେ । ସେମାନଙ୍କ ଭିତରେ କଣ କଥାବାର୍ତ୍ତା ହେଲା କେଜାଣି ଯୁବକଟି ଯାନ ଭିତରକୁ ଫେରିଯାଇ ହାତରେ କଣ ଦୁଇଟି ଜିନିଷ ଧରି ଫେରିଆସିଲା । ସେଥିରୁ ଗୋଟିଏ ଯୁବକ ହାତକୁ ବଢ଼େଇଦେଇ ଆଉ ଗୋଟିକ ସାହାଯ୍ୟରେ ସେ ନିଜେ ବଣର ଗୃରିଆଡ଼କୁ ଲକ୍ଷ୍ୟ କରିବାକୁ ଲାଗିଲା ।

ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମୋତେ । ଏଟା ପୁଣି କି ଜିନିଷ ? ଯାହାକୁ ଆଖିରେ ଲଗାଇ ଗୃରିଆଡ଼କୁ ଅନାଉଛନ୍ତି ବା କାହିଁକି ?

ନବାଗତ ଦ୍ୱୟଙ୍କର ହାବଭାବ ଦେଖି ମୁଁ ବଡ଼ ଭୟଭୀତ ହୋଇ ପଡ଼ିଲି । ମୋତେ ସେମାନେ କାଳେ ଦେଖି ପକାଇବେ, ଏଇ ଭୟରେ ଗୋଟିଏ ବୃଦାମୂଳରେ ଲୁଚିରହି ସେମାନଙ୍କୁ ଲକ୍ଷ୍ୟକଲି । ମୁଁ ଯେଉଁ ବୃଦାମୂଳରେ ଲୁଚିଥିଲି ସେ ଦୁହେଁ ସେମାନଙ୍କ ଯନ୍ତ୍ର ଦୁଇଟାକୁ ଆଖିରେ ଲଗାଇ ମୋର ଆଡ଼କୁ ଲକ୍ଷ୍ୟ କରି କଣ ପରୀକ୍ଷା କରିବାକୁ ଲାଗିଲେ । କିଛି ସମୟ ପରେ ଯୁବକଟି କଣ ଏକ ସଙ୍କେତ ଦେବାକୁ ଲାଗିଲେ; ସେଥିସହ କଣ କହିଲେ ମଧ୍ୟ । ଯଦିଚ ଶୁଣିପାରିଲି, କିନ୍ତୁ ଅସ୍ପଷ୍ଟତା ହେତୁ ବୁଝିପାରିଲିନି କିଛି । ଠିକ୍ ପର ମୁହୂର୍ତ୍ତରେ ଯୁବତୀଟି ହାତରେ ଧରିଥିବା ଆଉ ଏକ ଯନ୍ତ୍ରକୁ ମୁହଁ ପାଖରେ ଲଗାଇ କଣ କହିବାକୁ ଆରମ୍ଭ କଲେ । ସଙ୍ଗେ ସଙ୍ଗେ ସଂସ୍କୃତ ଭାଷାରେ ଭାସିଆସିଲା ମୋ ଆଡ଼କୁ କେତୋଟି କଥା—

ତୁମେ ଭାବୁଛ ବୃଦାମୂଳରେ ଲୁଚି ରହିବାରୁ ଆମେ ତୁମକୁ ଦେଖିପାରୁନୁ; କିନ୍ତୁ ଏହା ତୁମର ଭୁଲ ଧାରଣା । ତୁମେ ଆମ ସାମନାରେ ଥିଲେ ଆମେ ତୁମକୁ ଯେମିତି ଦେଖି ପାରନ୍ତୁ, ବର୍ତ୍ତମାନ ଠିକ୍ ସେମିତି ଦେଖିପାରୁଛୁ । ତୁମେ ବୋଧହୁଏ ଆମକୁ ଦେଖି ଭୟରେ ଲୁଚିଯିବାକୁ ଚେଷ୍ଟା କରୁଛ; କିନ୍ତୁ ଦେଖ, ଆମେ ତୁମର କିଛି କ୍ଷତି କରିବୁନି । ତେଣୁ ଆମକୁ ଭୟକରି ତୁମର ଲାଭନାହିଁ । ଆମେ ତୁମ ସହିତ କଥାବାର୍ତ୍ତା କରିବାପାଇଁ ଇଚ୍ଛୁକ । ଆମେ ଏ ପୃଥିବୀର ଲୋକ ନୋହୁଁ ; କିନ୍ତୁ ଏକ ଜରୁରୀ କାର୍ଯ୍ୟରେ ପୃଥିବୀପୃଷ୍ଠକୁ ଆସିବାକୁ ବାଧ ହୋଇଛୁ । ଆମେ ତୁମର ଶତ୍ରୁ ନୋହୁଁ । ତୁମମାନଙ୍କର ବନ୍ଧୁ । ଭୟ କର ନାହିଁ— ଏଠାକୁ ଆସ ।

ବଡ଼ ବିଚିତ୍ର ! ପୃଥିବୀର ଲୋକ ନୁହଁନ୍ତି, ଅଥଚ ଆମରି ଭାଷା କହୁଛନ୍ତି । ରୂପରେ ତ ଆମ ସହିତ ମିଳିଯାଉଛନ୍ତି । ତାହାହେଲେ ଏମାନେ କିଏ ? ସେମାନଙ୍କ ନିକଟକୁ ଯିବାକୁ ମୋର ସାହସ ହେଲାନାହିଁ ।

ସେମାନେ ପୁଣି ମତେ ଡାକିଲେ । ପୁଣି ସେହିଭଳି ଅଭୟ ବାଣୀ ।

ଧୀରେ ଧୀରେ ମୋ ମନରୁ ଭୟ ମିଳେଇ ଆସୁଥିଲା । ହେଲେ ବୃଦାମୂଳରୁ ବାହାରିଯିବା ଭଳି ସାହସ ମୁଁ ମନରେ ସଞ୍ଚୟ କରି ପାରି ନ ଥିଲି ।

ପୁଣି ଥରେ ସେମାନେ ଡାକିଲେ । ତଥାପି ମୁଁ ବୃଦାମୂଳରୁ ନ ବାହାରିବାରୁ ସେମାନେ ମୋ ଆଡ଼କୁ ଆସିବାକୁ ଉପକ୍ରମ କଲେ ।

ଦେଖିଲି, ଆଉ ଏଥର ରକ୍ଷା ନାହିଁ—ବାହାରିବାକୁ ହିଁ ପଡ଼ିବ । ତେଣୁ ବୃଦାମୂଳରୁ ବାହାରି ମୁଁ ଧୀରେ ଧୀରେ ସେମାନଙ୍କ ଆଡ଼କୁ ଆଗେଇଲି । ଗଲାବେଳେ ମୋ ଦେହ ବରଡ଼ାପତ୍ର ପରି ଥରୁଥାଏ, ଗୋଡ଼ ମୋର ଟଳମଳ ହେଉଥାଏ, ସତେ ଯେମିତି ମୋ ଶରୀରଟାକୁ ବହନ କରିବାପାଇଁ ତାହା ଅକ୍ଷମ ।

ମନ ଭିତରେ କିଛି ସାହସ ସଞ୍ଚୟ କରି ଆଗଉଥିଲି । ମୋତେ ଦେଖି ସେମାନେ ବିଶେଷ ଆଶ୍ଚର୍ଯ୍ୟ ହେଲା ଭଳି ଜଣାପଡ଼ିଲେନି । ସେ ଦୁଇଜଣ ନିଜ ଭିତରେ କଣ କଥାବାର୍ତ୍ତା ହେଲେ କେଜାଣି, ଯୁବକଟି ପଚାରିଲେ—ତୁମେ କ'ଣ ନଦୀ ଆରପାରିରେ ଥିବା ମହେଞ୍ଜୋଦାରୋ ସହରର ଲୋକ ?

ଉତ୍ତର ଦେଲି—ହଁ । ମୁଁ ଅନୁଭବ କଲି ସତେ ଯେମିତି ମୋ ତୋଣ୍ଟି ଶୁଖିଯାଉଛି, ଜିଭରେ କଥା ଲେଉଟୁ ନାହିଁ । ଆଉ ଯଦି କିଛି ଅଧିକ ପଚାରନ୍ତି ହୁଏତ ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ହେବନି ।

ଯୁବକଟି କହିଲେ—ଆମେ ତୁମ ସହରର ନଗରପାଳକଙ୍କ ସହିତ ଦେଖା କରିବାକୁ ଇଚ୍ଛୁକ । ଆମେ ସେମାନଙ୍କ ପାଇଁ ଏକ ବାର୍ତ୍ତା ନେଇ ଆସିଛୁ ସୁଦୂର ଚନ୍ଦ୍ର ଉପଗ୍ରହରୁ । ଆମେ ସେମାନଙ୍କ ବନ୍ଧୁ ଭାବରେ ଆସିଛୁ । ତୁମେମାନେ ଯଦି ଆମକୁ ବନ୍ଧୁ ଭାବରେ ଗ୍ରହଣ କରନ୍ତ, ଆମେ ଖୁସି ହୁଅନ୍ତୁ । ତୁମେ ହୁଏତ ଜାଣି ନଥିବ, ଚନ୍ଦ୍ରଲୋକରେ ପୃଥିବୀ ଭଳି ମଣିଷ ବସବାସ କରି ରହିଛନ୍ତି । ତୁମ ଆମ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଚନ୍ଦ୍ରଲୋକର ଅଧିବାସୀମାନେ ଏକ ବିପଦର ସମ୍ମୁଖୀନ ହୋଇଥିବାରୁ ସେମାନେ ପୃଥିବୀର ସାହାଯ୍ୟ ଭିକ୍ଷା କରିବା ଉଦ୍ଦେଶ୍ୟରେ ଆମ ଦୁଇଜଣଙ୍କୁ ପ୍ରତିନିଧି ହିସାବରେ ପଠାଇଛନ୍ତି । ପୃଥିବୀର ଏହି ଅଞ୍ଚଳରେ ସୁସଭ୍ୟ ମଣିଷସମାଜ ଥିବାର ଜାଣି ଆମେ ଅନ୍ୟ ଅଞ୍ଚଳକୁ ନଯାଇ ଏହି ଅଞ୍ଚଳକୁ ଆସିଛୁ । ତୁମେ ଆମକୁ ଟିକିଏ ସାହାଯ୍ୟ କରିପାରିଲେ ଆମେ ଖୁବ୍ ଖୁସି ହୁଅନ୍ତୁ । ଯୁବକଟି କିଛି ସମୟ ପାଇଁ ଅଟକିଗଲା । କଣ ଭାବି ଭାବି ପୁଣି ଆରମ୍ଭ କଲା—ଆମଠାରୁ ଏକ ପତ୍ର ନେଇ ତୁମ ନଗରପାଳକଙ୍କୁ ଦେଇପାରିବ ? ଦେଖ, ଏହି ଚିଠିଟି ଆସିଛି ଚନ୍ଦ୍ରଲୋକର ସର୍ବୋଚ୍ଚ ଶାସନକର୍ତ୍ତାଙ୍କଠାରୁ । ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ଚିଠି

ଏଠାକାର ଲୋକ ବୁଝୁଥିବା ସଙ୍କେତଭାଷାରେ ଲେଖାଯାଇଛି । ତେଣୁ ଚିଠିଟି ବୁଝିବାରେ ଅସୁବିଧା ହେବନି ବୋଧହୁଏ । ଚିଠିଟି ପଢ଼ି ତୁମ ନଗରପାଳକ କଣ କହିବେ, ଆମକୁ ଆସି ଖବର ଦେଇପାରିବ ? ଦେଖ, ଏହା ଅତି ଜରୁରୀ । ଆମେ ଏହି ଚିଠିର ଉତ୍ତର ପାଇବାକୁ ଖୁବ୍ ବ୍ୟଗ୍ର ।

ଏହା କହି ଯୁବକଟି ମୋତେ ତାଙ୍କର ଆହୁରି ପାଖକୁ ଯିବାକୁ ଅନୁରୋଧ କଲେ । ସେତେବେଳେ ମୋ ମନର ଅବସ୍ଥା ଏମିତି ଯେ ଆଉ ପାଦେ ଆଗେଇବାକୁ ସାହସ ହେଉ ନ ଥାଏ ।

ଏଥର ଯୁବକଟି ମୋ ଆଡ଼କୁ ଆସିବାର ଉପକ୍ରମ କଲେ । ଯାନ ଭିତରକୁ ଯାଇ ଯୁବତୀଟି କଣ ଗୋଟିଏ ଆଣି ତାଙ୍କ ହାତକୁ ବଢ଼ାଇଦେଲେ । ସେ ସେଇଟି ଧରି ଆସିଲେ ମୋ ଆଡ଼କୁ ।

ଆସୁ ଆସୁ କହିଲେ—ତୁମେ ବୋଧହୁଏ ବୁଝିପାରୁଛ ଆମ ଉଦ୍ଦେଶ୍ୟ ଓ ଅନୁରୋଧ । ତୁମଠାରୁ ସେ ସାହାଯ୍ୟଟିକକ ଆଶା କରି ପାରୁ କି ଆମେ ?

ହଁ କି ନା କିଛି ଉତ୍ତର ଦେବା ମୋ ପକ୍ଷରେ ସେତେବେଳେ ସମ୍ଭବପର ହେଲାନି । ମୁଁ କିଛି ନ ବୁଝିଲା ଭଳି ସେମାନଙ୍କ ଆଡ଼କୁ ବଲବଲ କରି ଅନାଇ ରହିଲି ।

ମୋ ପାଖକୁ ଆହୁରି ଆଗେଇ ଆସି ଯୁବକଟି କହିଲେ—ଦେଖ, ଆମେ ତୁମଠାରୁ ଅଧିକ କିଛି ସାହାଯ୍ୟ ମାଗୁନାହୁଁ । କେବଳ ଏତିକି ମାତ୍ର ସାହାଯ୍ୟ ଆମର ଦରକାର । ଏ ପତ୍ରଟି ଯେମିତି ନଗରପାଳକଙ୍କ ହସ୍ତଗତ ହୁଏ । ଏଥିପାଇଁ ତୁମେ ଯାହା ପାରିଶ୍ରମିକ ଚାହିଁ, ଆମେ ଦେବାକୁ ପ୍ରସ୍ତୁତ ।

କିଛି ସମୟ ପାଇଁ ଯୁବକଟି ଯାନ ଭିତରକୁ ଚାଲିଗଲେ । ପରମୁହୂର୍ତ୍ତରେ ହାତରେ କଣ ଧରି ବାହାରି ଆସି ମୋଠାକୁ ଚାଲିଆସିଲେ । ମୋ ଆଗରେ ଦୁଇମୁଣ୍ଡା ସୁନା ଥୋଇ ଦେଇ କହିଲେ—ତୁମେ ଯଦି ଏତିକି କରିପାରିବ ଆମେ ତୁମକୁ ତୁମର ପାରିଶ୍ରମିକ ଭାବରେ ଏହି ଦୁଇମୁଣ୍ଡା ସୁନା ଦେବାପାଇଁ ପ୍ରସ୍ତୁତ ।

ବିରାଟ ବିରାଟ ଦୁଇମୁଣ୍ଡା ସୁନା ଦେଖି ମୁଁ ଚମକି ପଡ଼ିଲି । ମୁଁ ଗରିବ । ସୁନା କେବେ ଅର୍ଜନ କରିନାହିଁ; କିନ୍ତୁ ସୁନା ବ୍ୟବହୃତ ହେବାର ଦେଖିଛି । ମୋ ଖିଆଲ ଭିତରେ ମୁଁ କେବେ ଏଡ଼େ ବଡ଼ ସୁନାମୁଣ୍ଡା ଦେଖିବାକୁ ପାଇନି ।

ସୁନାମୁଣ୍ଡା ଦେଖି ମୁଁ ଖୁସିହେବା ପରିବର୍ତ୍ତେ ଆହୁରି ଭୟଭୀତ ହେବାକୁ ଲାଗିଲି । ସାମାନ୍ୟ ଏହି କାମପାଇଁ ଏତେ ବଡ଼ ପାରିଶ୍ରମିକ !

ଏଥର ମୁଁ ସାହସ ସଞ୍ଚୟ କରି କହିଲି—ମୁଁ ତୁମର ପତ୍ର ବହନ କରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଏ ପାରିଶ୍ରମିକ ନେବାକୁ ଅକ୍ଷମ । ଏହି ସାମାନ୍ୟ କାମପାଇଁ ଏତେ ପାରିଶ୍ରମିକ ନେବା ମୋ ପକ୍ଷରେ ଅନ୍ୟାୟ ।

ଏଥିରେ ଯୁବକଟି ହସିଲେ । ଯୁବତୀଟି ମଧ୍ୟ । ସେମାନେ କହିଲେ—ଆମେ ତୁମକୁ

ଚନ୍ଦ୍ରଲୋକର ନସ୍ତମରେ ପାରଶ୍ରମିକ ଦେବାକୁ ଗ୍ରହୁଁ ଛୁ । ତୁମେ ବୋଧହୁଏ ଜାଣନ୍ତ, ଯେଉଁ ସୁନା ତୁମର ଏଠି ଏତେ ମୂଲ୍ୟବାନ୍, ଚନ୍ଦ୍ରଲୋକରେ ତାର କିଛି ମୂଲ୍ୟ ନାହିଁ । ଏଥର ବୋଧହୁଏ ପାରଶ୍ରମିକ ନେବାକୁ କୁଣ୍ଠାବୋଧ କରିବନି ତମେ ?

କ୍ଷମା କରିବେ ମୋତେ । ମୁଁ ଆପଣଙ୍କ କାମ ଆଗେ କରିଦିଏ, ପାରଶ୍ରମିକ କଥା ପରେ ଦେଖାଯିବ—ଏହା କହି ଯୁବକଙ୍କଠାରୁ ବାର୍ତ୍ତାଟି ନେଇ ମହେଞ୍ଜୋଦାରୋ ଅଭିମୁଖେ ବାହାରିଗଲି ।

ଗଲାବେଳେ ମନେ ମନେ ଭାବୁଥିଲି, ସତେ କଣ ଏମାନେ ଚନ୍ଦ୍ରଲୋକର ଅଧିବାସୀ ! ଲୋକେ ପରା କହନ୍ତି, ଚନ୍ଦ୍ରଲୋକରେ ଖାଲି ଦେବତା ଅଛନ୍ତି । ଆମ ମୁଣ୍ଡ ଉପରେ ଦିଶୁଥିବା ସ୍ୱର୍ଗରେ ପରା ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ଆଦିଙ୍କ ଅବସ୍ଥାନ ? ସ୍ୱର୍ଗ ଯଦି ଭଗବାନ, ଇନ୍ଦ୍ର ଓ ଅନ୍ୟାନ୍ୟ ଦେବଦେବୀଙ୍କ ଆସ୍ଥାନ, ତେବେ ଚନ୍ଦ୍ରଲୋକରେ ମଣିଷ ଆସିବେ କେଉଁଠୁ ? ତାହାହେଲେ ଏମାନେ କଣ ଦେବତା; ମଣିଷ ରୂପରେ ମର୍ତ୍ତ୍ୟକୁ ଆସିଛନ୍ତି ? ଲୋକେ ତ କହନ୍ତି; ଦେବତାମାନେ ମର୍ତ୍ତ୍ୟକୁ ଆସିଲେ ମଣିଷରୂପ ନେଇ ଆସନ୍ତି । ତା ଯଦି ହୁଏ, ଏମାନେ ଦେବତା ନ ହେବେ ବା କାହିଁକି ? କିନ୍ତୁ ଏମାନେ ଯଦି ଦେବତା, ତେବେ ଯାନରେ ଯା'ଆସ କରୁଛନ୍ତି କାହିଁକି ? ସାଙ୍ଗରେ ଏତେଗୁଡ଼ିଏ ଯନ୍ତ୍ରପାତି ବା କଣ ? ଦେବତା ତ ହୋଇଥିଲେ ଇଚ୍ଛା କଲେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇପାରୁଥାନ୍ତେ । ମନ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗରୁ ମର୍ତ୍ତ୍ୟକୁ ଚାଲିଆସନ୍ତେ । ଏତେ ଯନ୍ତ୍ରପାତି ତ ଆବଶ୍ୟକ ପଡ଼ନ୍ତା ନାହିଁ । ତା ଛଡ଼ା ସେମାନେ ଆମ ନଗରପାଳକଙ୍କ ସହିତ ଦେଖା କରିବାକୁ ଇଚ୍ଛା କରନ୍ତେ ବା କାହିଁକି ? ଦେବତା ହୋଇଥିଲେ ନଗରପାଳକଙ୍କୁ ସପନାଇଲାକ୍ଷଣି ସେ ତ ଦି'ଦିନ ଆଗରୁ ଏଠାରେ ଆସି ଅଧିଆ ପଡ଼ିଥାନ୍ତେ । ମୋତେ ଏ ବାର୍ତ୍ତା ନେଇ ତାଙ୍କ ପାଖକୁ ଯିବା ଦରକାର ପଡ଼ନ୍ତା କାହିଁକି ? ଏହିପରି ନାନା ଚିନ୍ତାରେ ମନ ମୋର ଆନ୍ଦୋଳିତ ହେଉଥାଏ ।

ସିନ୍ଧୁ ନଦୀ ପାରହୋଇ ମହେଞ୍ଜୋଦାରୋ ସହରରେ ପହଞ୍ଚିଲା ପର୍ଯ୍ୟନ୍ତ ମୋ ମନରୁ ଏହି ପ୍ରଶ୍ନ ଯାଇ ନଥାଏ ଏମାନେ ମଣିଷ ନା ଦେବତା ? ବାଟଯାକ ଏହି ପ୍ରଶ୍ନ ମନକୁମନ ପଚାରି ବ୍ୟସ୍ତ ହୋଇପଡ଼ୁଥିଲି ।

ନଗରପାଳକଙ୍କ ଅଫିସ ଦୁଆରେ ପହଞ୍ଚି ତାଙ୍କୁ ସାକ୍ଷାତ୍ କରିବାର ଇଚ୍ଛା ବ୍ୟକ୍ତ କରିବାରୁ, ମୋତେ ଗୋଟିଏ କୋଠରିରେ ଅପେକ୍ଷା କରିବାକୁ କୁହାଗଲା । ମୁଁ ପହଞ୍ଚିଲା ବେଳକୁ ନଗରପାଳକ ନଗରସଭାର ସଭ୍ୟସଦ୍‌ମାନଙ୍କ ସହିତ ଏକ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ବ୍ୟସ୍ତ ଥିଲେ । ସଭାରେ ତୁମୁଳ ଆଲୋଚନା ଚାଲି ପାଟିତୁଣ୍ଡ ଶୁଭୁଥାଏ । ମହେଞ୍ଜୋଦାରୋକୁ ଥରକୁ ଥର ଆକ୍ରମଣ କରୁଥିବା ଆର୍ଯ୍ୟମାନଙ୍କ ଦାଉରୁ କେମିତି ରକ୍ଷା କରିବାକୁ ହେବ, ତାହା ଥାଏ ଆଲୋଚନାର ବିଷୟବସ୍ତୁ । ତେଣେ ମହେଞ୍ଜୋଦାରୋ ସହରକୁ ବନ୍ୟା ବିପଦରୁ ରକ୍ଷାକରୁଥିବା ସିନ୍ଧୁନଦୀ ବନ୍ଧର ଦୁର୍ଦ୍ଦଶା କହିଲେ ନସରେ । ନଗରପାଳକ ଏହି ସବୁ

ସମସ୍ୟା ସମାଧାନ କରିବାପାଇଁ ଯେଉଁ ସବୁ ଯୋଜନା ଦେଇଥାନ୍ତି, ସଭାସଦ୍‌ବର୍ଗ ଗ୍ରହଣ କରିବାକୁ ନାରାଜ । ବିଶେଷତଃ ଯେଉଁ ଦଳରୁ ଯୁବକ ସଭାସଦ୍‌ମାନେ ଆସିଲେଣି, ସେହି ଦଳଠାରୁ ନଗରଶାସନ ଆଉ ତାଙ୍କ ହାତରେ ନାହିଁ । ସବୁବେଳେ ପାଟିତୁଣ୍ଡ, କଳିକଜିଆ । ଏହି ଗଣ୍ଡଗୋଳ ଭିତରେ ନଗରପାଳକ ସଭା ଛାଡ଼ି ଆସି ପାରୁ ନଥାନ୍ତି ।

ଡେରି ହେବା ଦେଖି ମୁଁ ପୁଣି ଥରେ ବାର୍ତ୍ତା ପଠାଇଲି । କହିଲି—ମୁଁ ଚନ୍ଦ୍ରଲୋକରୁ ଆସିଥିବା ରାଷ୍ଟ୍ରଦୂତଦ୍ୱୟଙ୍କଠାରୁ ବାର୍ତ୍ତା ନେଇ ଆସିଛି ।

ଏଥର ନଗରପାଳକଙ୍କ ସହିତ ସାକ୍ଷାତ୍ କରିବାପାଇଁ ଅନୁମତି ମିଳିଲା । ସେ ଏତେ କାର୍ଯ୍ୟବ୍ୟସ୍ତ ଯେ ମୋତେ ଅନ୍ୟ କୌଣସି କକ୍ଷରେ ସାକ୍ଷାତ୍ ନଦେଇ ସିଧାସଳଖ ତାଙ୍କ ନେଲେ ଆଲୋଚନା ସଭାକୁ । ମୁଁ ଆଣିଥିବା ବାର୍ତ୍ତା ତାଙ୍କ ହାତକୁ ବଢ଼ାଇଦେବାରୁ ସେ ମୋର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଅନାଇଗଲେ । କିଛି ସମୟପରେ ପତ୍ରଟି ଖୋଲିଲେ । ପତ୍ରଟିରେ କଣ ପଢ଼ିଲେ କେଜାଣି ସେ ମୋତେ ପୁଣି ଅନାଇ କଣ ଭାବିବାକୁ ଲାଗିଲେ ।

ନଗରପାଳକଙ୍କ ମୁଖରୁ ଜଣାପଡୁଥିଲା, ଯେମିତି ସେ ପତ୍ରଟିରୁ କିଛି ବୁଝିପାରୁନାହାନ୍ତି । ପତ୍ରପ୍ରେରକଙ୍କ ସମ୍ପର୍କରେ ମୁଁ ବା କିଛି କହନ୍ତି; କିନ୍ତୁ ମୋ ମନର ଦ୍ୱନ୍ଦ ସେପର୍ଯ୍ୟନ୍ତ ଅପସରି ଯାଇ ନଥାଏ । ସେମାନେ ମଣିଷ କି ଦେବତା, ସେ ସମ୍ପର୍କରେ ମୁଁ କିଛି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ପାରି ନ ଥାଏ । ତେଣୁ ସେମାନଙ୍କ ସମ୍ପର୍କରେ ମୁଁ କଣ ବା କହନ୍ତି ନଗରପାଳକଙ୍କୁ ? ତେଣୁ କିଛି ନକହି ସେମିତି ଠିଆହୋଇ ରହିଲି । ସେ ମୋତେ ଥରକୁ ଥର ଅନାଉଥିଲେହେଁ ମୋର ନୀରବତା ତାଙ୍କୁ ଆହୁରି ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା । ନଗରପାଳକଙ୍କ ସେଭଳି ଅବସ୍ଥା ଦେଖି ସଭାସଦ୍‌ମାନେ ମଧ୍ୟ ବିସ୍ମିତ ନ ହୋଇ ରହିପାରିଲେନି । ଆଲୋଚନା ସଭା ଚୁପ୍‌ଚାପ୍ । କିଛି ସମୟ ତଳେ କୋଳାହଳରେ ଫାଟିପଡ଼ୁଥିବା ଆଲୋଚନା କକ୍ଷ ନୀରବ ନିଶ୍ଚଳ ।

କିଛି ସମୟ ପରେ ସାହସ ସଞ୍ଚୟ କରି ନଗରପାଳକଙ୍କୁ କହିଲି—ଚନ୍ଦ୍ରଲୋକରୁ ଆସିଥିବା ଦୁଇଜଣ ଆଗନ୍ତୁକଙ୍କ ବାର୍ତ୍ତାବହ ଭାବରେ ମୁଁ ଏଠାକୁ ଆସିଛି । ସେ ଦୁହେଁ ଆପଣମାନଙ୍କ ସହ ସାକ୍ଷାତ୍ କରିବାକୁ ଏକାନ୍ତ ବ୍ୟଗ୍ର । ପତ୍ରଟି ପଢ଼ିଲେ ଆପଣ ସେ ସମ୍ପର୍କରେ ସବୁ ଜାଣିପାରିବେ ।

ନଗରପାଳକ ଏଥର ଚିଠିଟିକୁ ପଢ଼ିବାକୁ ଚେଷ୍ଟାକଲେ । ଚିଠିଟି ସରଳ ସଂସ୍କୃତଭାଷାରେ ଲେଖା; ଭାବ ମଧ୍ୟ ସେମିତି ଜଟିଳ ନୁହେଁ । ଅତି ସାଦାସିଧା ଭାବରେ ଲେଖାଯାଇଛି । ପତ୍ରଟି ପଢ଼ିଲାବେଳେ ନଗରପାଳକଙ୍କ ମୁଖ ବେଳେବେଳେ ସରସ ହୋଇଉଠୁଥାଏ ତ ବେଳେବେଳେ ଶ୍ରାବଣର କଳାହାଣ୍ଡିଆ ମେଘଭଳି ଗମ୍ଭୀର ହୋଇଉଠୁଥାଏ । ବେଳେବେଳେ ସେ ପତ୍ରପାଠ ଛାଡ଼ି ଚିଠିଉପରୁ ମୁହଁ ଉଠାଇ କିଛି କିଛି ପ୍ରଶ୍ନ କରିବା ପାଇଁ ଇଚ୍ଛା କରୁଥାଆନ୍ତି; କିନ୍ତୁ ପଚାରି ପାରୁନଥାନ୍ତି । ଜଣାପଡ଼ୁଥାଏ ଚିଠିଟିର ପ୍ରକୃତ ଉଦ୍ଦେଶ୍ୟ ସେ ପୂର୍ଣ୍ଣଭାବରେ ହୃଦୟଙ୍ଗମ କରିବାକୁ ଯେମିତି ଅକ୍ଷମ । ବେଳେବେଳେ ଚିଠିଟିକୁ,

ବେଳେବେଳେ ମୋ ଆଡ଼େ, କେତେବେଳେ ବା ସଭାସଦ୍‌ବର୍ଗଙ୍କ ଆଡ଼କୁ ଅନାଇଁ କଣ ଅତି ଗୁରୁତର ଭାବରେ ଭାବୁଥାଆନ୍ତି ସେ ।

କିଛି ସମୟ ପରେ ସେ ଏପଟ-ସେପଟକୁ ଅନାଇ ମୋତେ ପଚାରିଲେ—ଏ ବାର୍ତ୍ତା ଯେଉଁମାନେ ପଠାଇଛନ୍ତି, ସେମାନଙ୍କୁ ତୁମେ ଦେଖିଛ ?

ମୁଁ ଉତ୍ତର ଦେଲି—ହଁ, ଦେଖିଛି ସେମାନଙ୍କୁ । ସେମାନଙ୍କ ହାତରୁ ଏ ପତ୍ର ନେଇ ଆସିଛି ଏଠାକୁ ।

—ତୁମେ ସେମାନଙ୍କୁ ଭେଟିଲ କେମିତି ? ତୁମେ ତ ଆମ ଏଠାର ଲୋକ ।

ମୁଁ ସେମାନଙ୍କୁ ଯେମିତି ଭାବରେ ଭେଟିଥିଲି ବର୍ଣ୍ଣନା କରି ଶୁଣାଇଦେଲି ନଗର ପାଳକଙ୍କୁ । ମୁଁ ବଣ ଭିତରେ କାଠ କାଟୁଥିବାବେଳେ ସେ ଯାନଟି ଆକାଶରୁ ଓହ୍ଲାଇବା-ଠାରୁ ଆରମ୍ଭ କରି ପାରଶ୍ରମିକରୂପେ ସେମାନେ ସୁନାମୁଣ୍ଡା ଯାଚିବା ପର୍ଯ୍ୟନ୍ତ ସବୁ କହିଗଲି ।

ମୋର ଅନୁଭୂତି ଶୁଣି ଖାଲି ଯେ ନଗରପାଳକ ଆଶ୍ଚର୍ଯ୍ୟ ହେଲେ ସେତିକି ନୁହେଁ, ସମସ୍ତ ସଭାସଦ୍‌ଙ୍କର ବିସ୍ମୟର ସୀମା ରହିଲି ନାହିଁ । ମୁଁ ଯାହା କହୁଛି ତାହା ସତ୍ୟ ନା କଳ୍ପନାପ୍ରସୂତ, ତାହା ଠିକ୍ କରିବା ସେମାନଙ୍କ ପକ୍ଷରେ ଦୁରୂହ ହୋଇପଡ଼ିଲା ।

ନଗରପାଳକ ପଚାରିଲେ—ତୁମେ ତ ସେମାନଙ୍କୁ ଦେଖିଛ ନିଶ୍ଚୟ; ତମକୁ କଣ ସେମାନେ ଚନ୍ଦ୍ରଲୋକର ମଣିଷ ଭଳି ଜଣାପଡ଼ୁଛନ୍ତି ?

ଯେଉଁ ଦ୍ୱନ୍ଦ୍ୱ ମୋ ମନରେ ଏତେ ସମୟଧରି ରହିଆସିଛି, ଯାହାର ସମାଧାନ ଏପର୍ଯ୍ୟନ୍ତ ମୋ ମନକୁ ଆସିନାହିଁ, ସେ ପ୍ରଶ୍ନ ଉପରେ ମୁଁ ଯେ କଣ ଉତ୍ତର ଦେବି, ଭାବିପାରିଲି ନାହିଁ ।

ଏହି ସମୟରେ ଜଣେ ସଭାସଦ୍ ଉଠି ମୋ କଥାକୁ ପୂରାପୂରି ଅଗ୍ରାହ୍ୟ କରି କହିଲେ—ଚନ୍ଦ୍ରଲୋକରୁ ଯେ ଦୁଇଜଣ ମଣିଷ ଆସି ପାରନ୍ତି, ଏହା ତ କୌଣସି ପ୍ରକାରେ ଗ୍ରହଣଯୋଗ୍ୟ ନୁହେଁ । ଚନ୍ଦ୍ରଲୋକରେ ଯେତେବେଳେ ମଣିଷ ନାହାନ୍ତି, ସେମାନଙ୍କ ଆସିବା ପ୍ରଶ୍ନ ଉଠୁଛି କୁଆଡ଼ୁ ?

ଏହି ସଭାସଦ୍‌ଙ୍କ ଯୁକ୍ତିକୁ କାଟି ଆଉ ଜଣେ କହିଲେ – ମଣିଷ ନହୋଇ ହୁଏତ ମଣିଷ ରୂପରେ ଦେବତା ଆସିଥାଇ ପାରନ୍ତି । ଚନ୍ଦ୍ରମଣ୍ଡଳରେ ଦେବତା ନାହାନ୍ତି ବୋଲି ତ କେହି ଉଡ଼ାଇ ଦେଇ ପାରିବନି ।

ଆଉଜଣେ ଯୁବକ ସଭାସଦ୍ ଠିଆହୋଇ କହିଲେ—ଚନ୍ଦ୍ରମଣ୍ଡଳରୁ ମଣିଷ କି ଦେବତା ଆସିଛନ୍ତି; ସେଟା ବର୍ତ୍ତମାନର ଆଲୋଚନା ନୁହେଁ । ସେମାନେ ଯିଏ ହୁଅନ୍ତୁ ପଛକେ ଦୁଇଜଣ ଯେ ଏଠାକୁ ଆସିଛନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନର ପ୍ରଶ୍ନ ହେଉଛି; ସେମାନେ ଏଠାକୁ ଯେଉଁ ବାର୍ତ୍ତା ବହନ କରି ଆସିଛନ୍ତି, ସେ ବାର୍ତ୍ତାଟି ହିଁ ଆମଠାରେ ଗୁରୁତ୍ୱପୂର୍ଣ୍ଣ । କାଳବିଳମ୍ବ ନକରି ସେ ବାର୍ତ୍ତାଟିକୁ ପଢ଼ି ଶୁଣାଇବା ପାଇଁ ସେ ନଗରପାଳକଙ୍କୁ

ଅନୁରୋଧ କଲେ ।

ନଗରପାଳକ ଚିଠିଟି ପଢ଼ିଲେ ।

ସେଥିରେ ଲେଖାଥିଲା—

ପୃଥିବୀବାସୀ ଭାଇ ଓ ଭଉଣୀମାନେ,

ଆପଣମାନେ ଆମ୍ଭମାନଙ୍କୁ ଜାଣିଛନ୍ତି କି ନାହିଁ ଆମେ ଜାଣୁନା; କିନ୍ତୁ ଆମେମାନେ ଯେ ଆପଣମାନଙ୍କୁ ଭଲଭାବରେ ଜାଣିଛୁ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆପଣମାନେ ଯେଉଁ ସୌରଜଗତର ଅଧିବାସୀ, ଆମେମାନେ ବି ସେଇ ସୌରଜଗତରେ ବସବାସ କରିଆସୁଛୁ । ଆପଣମାନେ ବାସକରୁଥିବା ପୃଥିବୀର ଏକ ଉପଗ୍ରହ ଭାବରେ ଯେଉଁ ଚନ୍ଦ୍ର ପୃଥିବୀ ପରିକ୍ରମାରେ ଲାଗିଛି, ସେଇ ଚନ୍ଦ୍ର ହେଉଛି ଆମର ବାସସ୍ଥଳୀ । ଆପଣମାନେ ହୁଏତ ଜାଣିଥିବେ, ଏହି ଚନ୍ଦ୍ରର ସୃଷ୍ଟି ହୋଇଛି ଆପଣମାନଙ୍କ ଗ୍ରହରୁ । ବହୁବର୍ଷ ତଳେ ଚନ୍ଦ୍ର ଓ ପୃଥିବୀ ଗୋଟିଏ ଥିଲା; କାଳର ଗତିରେ ପରସ୍ପରଠାରୁ ଅଲଗା ହୋଇ ଦୁଇଟିରେ ପରିଣତ ହୋଇଛି । ଚନ୍ଦ୍ର ସୃଷ୍ଟିର ପ୍ରଥମ ଦିନଠୁ ଏହା ପୃଥିବୀର ଏକ ଉପଗ୍ରହ ଭାବରେ ପୃଥିବୀ-ପରିକ୍ରମାରେ ଲାଗିଛି । ଆକାରରେ ଚନ୍ଦ୍ର ଉପଗ୍ରହ ପୃଥିବୀଠାରୁ ଢେର୍ ଶ୍ରେଷ୍ଠ; ତେଣୁ ସମୟର ଗତିରେ ପୃଥିବୀଟି ଯେତେବେଳେ ଥଣ୍ଡା ହେବାକୁ ଲାଗିଲା, ତା'ଠାରୁ ଅଧିକ ବେଗରେ ଥଣ୍ଡା ହେଲା ଏହି ଚନ୍ଦ୍ର । ଫଳରେ ଜୀବ-ଜଗତର ସୃଷ୍ଟି ପାଇଁ ଅନୁକୂଳ ବାତାବରଣ ଆଗେ ସୃଷ୍ଟି ହେଲା ଚନ୍ଦ୍ର ପୃଷ୍ଠରେ । ଜୀବସୃଷ୍ଟିର ପ୍ରଥମ ଦିନଠାରୁ ଜୀବଜଗତର ବିବର୍ତ୍ତନ ମଧ୍ୟଦେଇ ଚନ୍ଦ୍ରରେ ଗଢ଼ିଉଠିଲା ବିରାଟ ଉଦ୍ଭିଦ ଓ ପ୍ରାଣୀଜଗତ୍ । ଧୀରେ ଧୀରେ ସେ ପ୍ରାଣୀଜଗତ୍‌ରୁ ଉଦ୍ଭବ ହେଲା ସୃଷ୍ଟିର ବିଚକ୍ଷଣତମ ଜୀବ ମଣିଷ । ଚନ୍ଦ୍ରରେ ମଣିଷସୃଷ୍ଟିର ବହୁବର୍ଷ ପରେ ପୃଥିବୀପୃଷ୍ଠରେ ସେହି ଜୀବଜଗତ୍‌ର ବିବର୍ତ୍ତନ ମାଧ୍ୟମରେ ରୂପ ନେଲା ପୃଥିବୀର ମଣିଷସମାଜ । ଏହା ସ୍ୱତଃସିଦ୍ଧ ଯେ ଚନ୍ଦ୍ରର ମଣିଷସମାଜ ଆଗ; ପୃଥିବୀର ମଣିଷସମାଜ ତା'ପରେ । ବିବର୍ତ୍ତନ ପ୍ରକ୍ରିୟାଦେଇ ପ୍ରାଣୀ ଯେପରି ଉତ୍ତରୋତ୍ତର ଉନ୍ନତି କରି ଚାଲେ, ସେହିଭଳି ଚନ୍ଦ୍ର ପୃଷ୍ଠରେ ସଭ୍ୟତା ଧୀରେ ଧୀରେ ପ୍ରସାର ଲାଭକଲା । ଗଢ଼ିଉଁ ଗଢ଼ିଉଁ ଚନ୍ଦ୍ର ପୃଷ୍ଠରେ ଗଢ଼ିଉଠିଲା ଏକ ସୁସଭ୍ୟ ମଣିଷସମାଜ । ଚନ୍ଦ୍ରରେ ଯେତେବେଳେ ସୁସଭ୍ୟ ମଣିଷସମାଜର ଗ୍ରାନ୍ତ, ସେତେବେଳେ ପୃଥିବୀରେ ମଣିଷର ସୃଷ୍ଟି ହୋଇଥିଲା ସତ; କିନ୍ତୁ ସଭ୍ୟତାଠାରୁ ସେମାନେ ଥିଲେ ବହୁ ଦୂରରେ···

···କିନ୍ତୁ ସେ ସବୁ ଏବେ ଆମର ଅତୀତର କଥା । ଆମ୍ଭମାନଙ୍କର ଅତୀତ ସହିତ ଆପଣମାନଙ୍କୁ ପରିଚିତ କରାଇଦେବାପାଇଁ ଏଇ କଥା କେଇ ପଦ ଲେଖୁଛୁ । ବୋଧହୁଏ ଏହା ଆପଣମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଇବ ନାହିଁ । ତେବେ କ'ଣ ପାଇଁ ଆମେ ଏ ପତ୍ର ଆପଣମାନଙ୍କ ପାଖକୁ ଲେଖଚ୍ଛୁଁ, ତାହା ଏପର୍ଯ୍ୟନ୍ତ ଆପଣମାନଙ୍କୁ ଜଣାଇ ନାହୁଁ । ଏଥର ଶୁଣନ୍ତୁ ଆମ ପତ୍ରର ଉଦ୍ଦେଶ୍ୟ ।

ଚନ୍ଦ୍ର ପୃଷ୍ଠରେ ଜୀବଜଗତ୍‌ର ସୃଷ୍ଟି ବହୁପୂର୍ବରୁ ହୋଇଥିବାରୁ ତାହାର ବିଲୟ ମଧ୍ୟ

ଆଉ ବେଶି ଡେରି ନାହିଁ । ଆମ ଜୀବଜଗତ୍ ଆପଣମାନଙ୍କ ବହୁ ପୂର୍ବରୁ ବିଲୁପ୍ତ ହେବାର ସମ୍ଭାବନା ଦେଖାଦେଲାଣି । ଆମ ଉପଗ୍ରହରେ ଏମିତି ବହୁ ସମସ୍ୟା ଦେଖାଦେଉଛି, ଯେଉଁ-ଗୁଡ଼ିକୁ ଯଦି ଦୂର କରାନଯାଏ ତେବେ ଆମର ଏଠାକାର ମଣିଷ ତଥା ପ୍ରାଣୀସମାଜ ଅଚିରେ ଲୁପ୍ତ ହୋଇଯିବ । ସେହି ସମସ୍ୟାଗୁଡ଼ିକର ସମାଧାନ ଦିଗରେ ଆମେ ଆପଣ-ମାନଙ୍କର ସାହାଯ୍ୟ ଲୋଡ଼ୁଛୁଁ ।

ଏଥର ଶୁଣନ୍ତୁ ଆମ୍ଭମାନଙ୍କର ସମସ୍ୟା । ପୃଥିବୀ ତୁଳନାରେ ଚନ୍ଦ୍ର ଅନେକ ଛୋଟ । ତେଣୁ ଚନ୍ଦ୍ରର ମାଧ୍ୟାକର୍ଷଣ ଶକ୍ତି ମଧ୍ୟ ପୃଥିବୀ ତୁଳନାରେ ଢେର୍ କମ୍ । ପୃଥିବୀପୃଷ୍ଠର ଯେଉଁ ଜଳ ଓ ବାୟୁକୁ ପୃଥିବୀର ବିରାଟ ମାଧ୍ୟାକର୍ଷଣ ଶକ୍ତି ଟାଣିଧରିରଖିଛି, ଚନ୍ଦ୍ରପୃଷ୍ଠରେ ସେ ମାଧ୍ୟାକର୍ଷଣ ଶକ୍ତି ଅତ୍ୟନ୍ତ ଦୁର୍ବଳ ହୋଇଥିବାରୁ ଚନ୍ଦ୍ରର ବାୟୁମଣ୍ଡଳକୁ ଧରି ରଖିପାରୁନାହିଁ । ଫଳରେ ଚନ୍ଦ୍ରର ବାୟୁମଣ୍ଡଳ ଧୀରେ ଧୀରେ ବିଲୁପ୍ତ ହୋଇ ଅନନ୍ତ ମହାଶୂନ୍ୟ ଭିତରକୁ ଅପସରିଯାଉଛି । ଏଥିପାଇଁ ଦିନକୁଦିନ ଚନ୍ଦ୍ରରେ ଜଳ ଓ ବାୟୁର ଅଭାବ ଅତି ଗୁରୁତର ଭାବରେ ଦେଖାଦେଉଛି । ଏ ସମସ୍ୟାର ସମାଧାନ ପାଇଁ ଆମର ବିଜ୍ଞାନ ତଥା ବୈଜ୍ଞାନିକ-ମାନେ ଚେଷ୍ଟା କରି ସଫଳ ହୋଇନାହାନ୍ତି । ସେମାନଙ୍କ ମତରୁ ଜଣାଯାଏ, ଏ ସମସ୍ୟାର ସମାଧାନ ସେତେ ସହଜ ନୁହେଁ । ପ୍ରକାରାନ୍ତରେ ସେମାନେ ସୂଚାଇଛନ୍ତି ଆମ୍ଭମାନଙ୍କୁ ଚନ୍ଦ୍ରମଣ୍ଡଳ ତ୍ୟାଗ କରିବାକୁ ହିଁ ହେବ ।

ଆମର ମହାକାଶଚାରୀମାନେ ବିଶ୍ୱର ବିଭିନ୍ନ ଅଂଶକୁ ଯାଇ ଚନ୍ଦ୍ରମଣ୍ଡଳ ଅଧିବାସୀଙ୍କ ବାସୋପଯୋଗୀ ସ୍ଥାନ ଖୋଜିବାରେ ବ୍ୟସ୍ତ । ବହୁ ବର୍ଷଧରି ଏ ଅନ୍ୱେଷଣ ଚାଲିଥିଲେହେଁ ଆମେ ଏ ପର୍ଯ୍ୟନ୍ତ ସେପରି ଗୋଟିଏ ସୁଦ୍ଧା ଗ୍ରହର ସନ୍ଧାନ ପାଇନୁ; କେବେ ଯେ ପାଇବୁ ସେ ସମ୍ଭାବନା ବି ନାହିଁ । ତଥାପି ଏହା ନିଶ୍ଚିତ ଯେ ଆମକୁ ଚନ୍ଦ୍ରମଣ୍ଡଳ ପରିତ୍ୟାଗ କରିବାକୁହିଁ ପଡ଼ିବ ।

କିନ୍ତୁ ତା ବୋଲି ଆମ୍ଭେମାନେ ପୃଥିବୀକୁ ଯିବାକୁ ଯେ ଇଚ୍ଛୁକ ତାହା ନୁହେଁ । ତାର ବହୁ କାରଣ ଅଛି । ଆମ ରାଷ୍ଟ୍ରଦୂତଦ୍ୱୟଙ୍କଠାରୁ ସେ ସମ୍ପର୍କରେ ସମସ୍ତ ଜାଣିପାରିବେ । ତେବେ ଆମର ଏତିକି ଆଶା, ଆମର ମଣିଷସମାଜ ଚନ୍ଦ୍ରମଣ୍ଡଳ ତ୍ୟାଗ କରିବା ପର୍ଯ୍ୟନ୍ତ ଆମର ଜଳ ଓ ବାୟୁର ଯେଉଁ ଅଭାବ ହେବ, ତାହା ଆପଣମାନଙ୍କ ଗ୍ରହରୁ ନେଇ ପୂରଣ କରିବୁ । ଆମର ଅନୁରୋଧ, ଆପଣମାନେ ଆମ୍ଭମାନଙ୍କୁ ଏ ଦିଗରେ ସାହାଯ୍ୟ କରିବେ । ଗୋଟିଏ ସୌରଜଗତର ଅଧିବାସୀ ଭାବରେ ବନ୍ଧୁତା ଦେଖେଇବା ପାଇଁ କୁଣ୍ଠାବୋଧ କରିବେ ନାହିଁ ।

ପରିଶେଷରେ ଏତିକି କହି ବିଦାୟ ନେଉଛୁ—ଆପଣମାନଙ୍କ ସାହାଯ୍ୟ ଓ ସହାନୁଭୂତି ଆମ୍ଭମାନଙ୍କ ଜୀବନରକ୍ଷା ଦିଗରେ ସାହାଯ୍ୟ କରିବେ । ଆଶା, ଆପଣମାନେ ଆମ ଅନୁରୋଧକୁ ସହାନୁଭୂତିର ସହ ବିଚାର କରିବେ । ଇତି ।

ଆପଣମାନଙ୍କ

ଚନ୍ଦ୍ରଗ୍ରହ ଅଧିବାସୀବୃନ୍ଦ

ଚଟିଟି ପର୍ଯ୍ୟନ୍ତ ନଗରପାଳକ ଗୁମ୍ ହୋଇ ବସିଗଲେ; ସେଥିସହିତ ସଭାସଦ୍‌ବର୍ଗ । ସମସ୍ତେ ପୂରାପୂରି ଚୁପ୍ । କାହାରି ପାଟିରୁ କିଛି ଭାଷା ବାହାରିବାକୁ ନାହିଁ । ବହୁ ସଭ୍ୟଙ୍କ ମନରେ ନାନାପ୍ରକାର ପ୍ରଶ୍ନ ଉଙ୍କି ମାରିଉଠିଲାଭଳି ସେମାନଙ୍କ ମୁଖମଣ୍ଡଳରୁ ଜଣାପଡ଼ୁଥିଲା । ହଠାତ୍ ଏ ଗୋଟାଏ କି ଖବର, ସମସ୍ତେ ଶୁଣି ତଟସ୍ଥ । ଚନ୍ଦ୍ରମଣ୍ଡଳକୁ ଏକ ଦେବତା ଭାବରେ ପୂଜା କରିଆସୁଥିଲାବେଳେ ହଠାତ୍ ସେଠାରେ ମଣିଷ ଥିବା ବାର୍ତ୍ତା ଦେବବିଶ୍ୱାସରେ କି କୁଠାରା-ଘାତ ନ କରୁଛି ସତେ ? ଅନେକେ ଏ କଥା ଭାବି ଆତଙ୍କିତ ହେଲାଭଳି ଜଣାପଡ଼ୁଥାନ୍ତି ।

କିଛି ସମୟ ନୀରବତାରେ କଟିଯିବା ପରେ ଜନୈକ ସଦସ୍ୟ ଠିଆହୋଇ କହିଲେ—ନବାଗତମାନେ ଚନ୍ଦ୍ରଲୋକରୁ ଆସିଛନ୍ତି ବୋଲି କିଛି ପ୍ରମାଣ ନ ଦେଲା ପର୍ଯ୍ୟନ୍ତ ଆମେ ସେମାନଙ୍କ କଥାରେ ବିଶ୍ୱାସ କରିବା କେତେଦୂର ଯୁକ୍ତିଯୁକ୍ତ, ଆପଣମାନେ ତାହା ବିଚାର କରିବେ ।

ଆଉ ଜଣେ ସଦସ୍ୟ ଠିଆହୋଇ କହିଲେ—ହୁଏତ ସେମାନେ ଏହି ବାୟୁବୀସ୍ଥ ଆଉ କୌଣସି ରାଜ୍ୟରୁ ଆସିଥାଇପାରନ୍ତି ଆମ୍ଭମାନଙ୍କୁ ପ୍ରତାରଣା କରିବା ପାଇଁ । ଆମର ଯେତେବେଳେ ବହୁ ଶତ୍ରୁ ଆମ ଚାରିପାଖରେ ଘେରି ରହିଛନ୍ତି ଓ ଥରକୁଥର ଆମ ସହର ଉପରେ ସେମାନଙ୍କ ଆକ୍ରମଣ ବଢ଼ିଚାଲିଛି, ସେଭଳି ପରିସ୍ଥିତିରେ ଏହି ଘଟଣାଟିକୁ ଛଳନା-ପୂର୍ଣ୍ଣ ବୋଲି ନ ଦେଖି ସାଧାରଣଭାବରେ ଦେଖିବା ଉଚିତ ନୁହେଁ ।

ସଭ୍ୟ ଦୁଇଜଣଙ୍କ ଯୁକ୍ତିକୁ କାଟି ଆଉ ଜଣେ ସଦସ୍ୟ ଠିଆହୋଇ କହିଲେ—ଆପଣ-ମାନଙ୍କ ଯୁକ୍ତିଗୁଡ଼ିକ ଆଲୋଚନାଯୋଗ୍ୟ ସତ; କିନ୍ତୁ ତା ପୂର୍ବରୁ ଆମର ଗୋଟିଏ କଥା ଭୁଲିଯିବା ଉଚିତ ନୁହେଁ ଯେ ନବାଗତଦ୍ୱୟ ଆମର ଶତ୍ରୁ ହୁଅନ୍ତୁ ବା ଅନ୍ୟ ଗ୍ରହ-ଉପଗ୍ରହର ଲୋକ ହୁଅନ୍ତୁ, ଏହା ଠିକ୍ ଯେ ସେମାନେ ଆମର ଅତିଥିଭାବରେ ଆସି ନଗରର ଦ୍ୱାରରେ ପ୍ରତୀକ୍ଷମାଣ । ସେମାନଙ୍କ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଆମେ ସେମାନଙ୍କୁ ଆମର ଅତିଥିଭାବରେ ଗ୍ରହଣ କରି ନଗର ଭିତରକୁ ଘେନିଆସିବା ଉଚିତ । ତା'ପରେ ଆମେ ସେମାନଙ୍କ ପକ୍ଷ ଉପରେ ଆଲୋଚନା କରି ଯାହା ଉତ୍ତର ଦେବା ଉଚିତ, ତାହା ଜଣାଇ ଦେବା । ସେମାନେ ଆମର ଶତ୍ରୁ ହୋଇଥିଲେ ମଧ୍ୟ ମାତ୍ର ଦୁଇଜଣ ଥିବାରୁ ଭୟଭୀତ ହୋଇ ଆମର ଅତିଥିସତ୍କାର ପରମ୍ପରାକୁ ନଷ୍ଟ କରିଦେବା ଉଚିତ ନୁହେଁ । ଯଦି ଦରକାର ପଡ଼େ ଆମେ ସେହି ନବାଗତଦ୍ୱୟଙ୍କ ସହ ଆଲୋଚନା କରି କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିବା । ବର୍ତ୍ତମାନ ସେମାନଙ୍କୁ ଅତିଥିଭାବରେ ସ୍ୱାଗତ କରି ନଗର ଭିତରକୁ ଅଣାଯାଉ ।

ସଭାସଦ୍‌ଙ୍କ ଏହି ବ୍ୟକ୍ତବ୍ୟକୁ ସମସ୍ତେ ସ୍ୱାଗତ ଜଣାଇଲେ; ନଗରପାଳକ ମଧ୍ୟ । ତେଣୁ ସିଦ୍ଧାନ୍ତ ହେଲା ମହେନ୍ଦ୍ରୋଦାରୋରୁ ଏକ ସୁସଜ୍ଜିତ ରଥ ପ୍ରେରିତ ହେବ ମୋ ସହିତ ନବାଗତଦ୍ୱୟଙ୍କୁ ସ୍ୱାଗତ କରି ଘେନିଆସିବା ପାଇଁ ନଗର ଭିତରକୁ ।

ସେଦିନ ଆଲୋଚନା ସେତିକିରେ ହିଁ ରହିଲା । ସଭାକକ୍ଷରେ ଚାଲିଥିବା ପୂର୍ବ

ବାଦାନୁବାଦ ଅନ୍ତର୍ହିତ ହେଲା ସମସ୍ତଙ୍କ ମନରୁ । ବର୍ତ୍ତମାନ ଏଇ ନୂଆ ଘଟଣା ସହିତ ସଭାସଦ୍‌ବର୍ଗ କେମିତି ନିଜ ନିଜକୁ ଅଭିଯୋଜିତ କରି ପାରିବେ, ସେହି ଚିନ୍ତା ସମସ୍ତଙ୍କ ମନରେ ଖେଳୁଥିଲା ।

## ପାଞ୍ଚ

ମହେଞ୍ଜୋଦାରୋ ନଗରପାଳଙ୍କ ଆଲୋଚନାକକ୍ଷ । ସହରର ବିଶିଷ୍ଟ ନାଗରିକ ତଥା ସଭାସଦ୍‌ମାନଙ୍କର ଆଲୋଚନା ଚାଲିଛି । ଚନ୍ଦ୍ରଲୋକରୁ ବାର୍ତ୍ତା ବହନ କରି ଆଣିଥିବା ରାଷ୍ଟ୍ରଦୂତଦ୍ୱୟ ନଗରର ଅତିଥିଶାଳାରେ ଅବସ୍ଥାନ କରୁଥାନ୍ତି । ବର୍ତ୍ତମାନ ଆଲୋଚନା ପଡ଼ିଛି, ଚନ୍ଦ୍ରଲୋକରୁ ଆସିଥିବା ସେହି ପତ୍ର ଉପରେ କି ସିଦ୍ଧାନ୍ତ ଗ୍ରହଣ କରାଯିବ ? ରାଷ୍ଟ୍ରଦୂତଦ୍ୱୟଙ୍କ ସହିତ କି କି ବିଷୟରେ ଆଲୋଚନା କରାଯିବ, ତା'ର ଉପରେ ସମଗ୍ର ଆଲୋଚନା ସୀମାବଦ୍ଧ । ଚନ୍ଦ୍ରର ରାଷ୍ଟ୍ରଦୂତଦ୍ୱୟ ଜ୍ଞାନୀ ଓ ବିଚକ୍ଷଣ ଜଣାପଡ଼ୁଥାନ୍ତି । ନଗରବାସୀଙ୍କ ତରଫରୁ ସେମିତି ଜ୍ଞାନୀ ଓ ବିଚକ୍ଷଣ ଲୋକ ନ ହେଲେ ସେମାନଙ୍କ ସହିତ ଯଥାଯଥ ଆଲୋଚନା କରିବା ସମ୍ଭବ ନୁହେଁ । ତେଣୁ ସମସ୍ତେ ଏକସ୍ୱରରେ ଅନୁମୋଦନ କଲେ, ରାଷ୍ଟ୍ରଦୂତଦ୍ୱୟଙ୍କ ସହିତ ଆଲୋଚନା କରିବାପାଇଁ ଦେଶର ପଣ୍ଡିତ ଓ ବୁଦ୍ଧିମାନ୍ ଲୋକଙ୍କୁ ଡକାଯିବ । ଆଲୋଚନାବେଳେ ସେମାନେ ସଭାସଦ୍‌ବର୍ଗଙ୍କୁ ଉପଯୁକ୍ତ ସିଦ୍ଧାନ୍ତରେ ପହଞ୍ଚିବା ଦିଗରେ ସାହାଯ୍ୟ କରିବେ । ତେଣୁ ଏ ଆଲୋଚନାରେ ଭାଗ ନେବାପାଇଁ ଦେଶର ବିଶିଷ୍ଟ ପଣ୍ଡିତ ଲୋକଙ୍କ ଏକ ତାଲିକା ପ୍ରସ୍ତୁତ କରାଗଲା । ସେ ତାଲିକା ଅନୁସାରେ ନିକଟବର୍ତ୍ତୀ ଯକ୍ଷ ନଗରୀ ବିଶ୍ୱବିଦ୍ୟାଳୟର କେତେଜଣ ବିଜ୍ଞ ଅଧ୍ୟାପକ ଓ ହିମାଳୟରେ ତପସ୍ୟାରତ ଥିବା ମହର୍ଷି ତକ୍ଷସାର, ମହର୍ଷି ଭୃଗୁପତି, ଗୋରକ୍ଷନାଥ ଆଦିଙ୍କୁ ରାଜଧାନୀକୁ ଆଣିବାପାଇଁ ଦୂତମାନେ ପ୍ରେରିତ ହେଲେ । ରାଷ୍ଟ୍ରର ବିଭିନ୍ନ ବୈଜ୍ଞାନିକ ମହର୍ଷି ତପୋବନଗୁମ୍ଫା ଓ ସୁଦକ୍ଷିନାରାୟଣଙ୍କୁ ନିମନ୍ତ୍ରଣ କରାଗଲା ଆଲୋଚନାରେ ବିଶେଷ ଭାବରେ ଭାଗ ନେବାପାଇଁ ।

X X X

ମହେଞ୍ଜୋଦାରୋର ଆଲୋଚନାକକ୍ଷ ।

ଶ୍ରେଷ୍ଠ କାରୁକାର୍ଯ୍ୟ ଓ ସ୍ଥାପତ୍ୟକଳାର ଅପୂର୍ବ ସୃଷ୍ଟି ନେଇ ଉଦ୍ଭାସିତ ହୋଇଉଠୁଛି ପ୍ରାସାଦଟି ଦୂରରୁ । ସିନ୍ଧୁ ନଦୀର ଠିକ୍ କୂଳକୁ ଲାଗି ଗଢ଼ିଉଠିଛି ଏ ବିରାଟ ପ୍ରାସାଦ । କାରୁକାର୍ଯ୍ୟ, ସ୍ଥାପତ୍ୟ ଓ କଳାର ଅପୂର୍ବ ସୃଷ୍ଟିରେ ଭରା ଆଲୋଚନାକକ୍ଷଟି ମୁଖର ହୋଇ ଉଠିଛି ଢେର୍ ବିଶିଷ୍ଟ ବ୍ୟକ୍ତି ଓ ବିଶେଷଜ୍ଞଙ୍କ ଦ୍ୱାରା । ଆଲୋଚନାକକ୍ଷର ଗୋଟିଏ ପାଖରେ ଉପବିଷ୍ଟ ନଗରର ସଭାସଦ୍‌ବର୍ଗ ଓ ଜ୍ଞାନୀବୃନ୍ଦ, ଅପରପାର୍ଶ୍ୱରେ ଚନ୍ଦ୍ରଲୋକର ରାଷ୍ଟ୍ରଦୂତ ସେଇ

ଯୁବକ-ଯୁବତୀଦ୍ୱୟ । ଏହି ଆଲୋଚନାକକ୍ଷକୁ ଆସିବା ପୂର୍ବରୁ ନଗରପାଳକ ଓ ବିଶିଷ୍ଟ ସଭାସଦ୍‌ମାନେ ଆମନ୍ତ୍ରିତ ପଣ୍ଡିତମାନଙ୍କ ସହିତ ପତ୍ରର ବିଷୟବସ୍ତୁ ଉପରେ ଯଥେଷ୍ଟ ଆଲୋଚନା କରିସାରିଥାନ୍ତି । ନବାଗତଦ୍ୱୟଙ୍କ ଅନୁରୋଧକୁ ଯଥାର୍ଥ ଭାବରେ ଉପଲବ୍ଧି କରି ସଭାସଦ୍‌ବର୍ଗଙ୍କୁ ସିଦ୍ଧାନ୍ତ ଗ୍ରହଣ କରିବାରେ ଉପଯୁକ୍ତ ପଥ ଦେଖାଇବାର ଗୁରୁତ୍ୱ କେତେ, ତାହା ସେମାନଙ୍କୁ ବୁଝାଇ ଦିଆଯାଇଥାଏ । ନବାଗତଦ୍ୱୟ କିଭଳି ପ୍ରବୀଣ, ବିଦ୍ୱାନ୍ ଓ ସଭ୍ୟସମାଜର ବ୍ୟକ୍ତି ଏବଂ ବୈଷୟିକ ବିଜ୍ଞାନରେ କେମିତି ଧୁରନ୍ଧର ସେ ସମ୍ପର୍କରେ ମହର୍ଷିମାନଙ୍କୁ ପରିଚିତ କରାଇଦେଇଥିଲେ ସଭାସଦ୍‌ବର୍ଗ ।

ଯଥାସମୟରେ ଆଲୋଚନା ଆରମ୍ଭ ହେଲା । ରାଷ୍ଟ୍ରଦୂତଦ୍ୱୟ ପୃଥିବୀ ବାହାରର ଲୋକଭଳି ଜଣାପଡ଼ୁ ନଥାନ୍ତି । ଗୃହଚଳନ ଓ ପୋଷାପତ୍ରରେ କିଛି ପାର୍ଥକ୍ୟ ଥିଲେହେଁ ସେମାନଙ୍କୁ ପୃଥିବୀ ବାହାରର ଲୋକ ବୋଲି ସନ୍ଦେହ କରିବା ସହଜ ନୁହେଁ । ନବାଗତ-ଦ୍ୱୟଙ୍କୁ ଅତି ଅଳ୍ପବୟସ୍କ ଦେଖି ଏ ଆଲୋଚନା ବିଶେଷ କିଛି ଯେ ଗୁରୁତ୍ୱପୂର୍ଣ୍ଣ ହେବନି, ଏହା ମହେଞ୍ଜୋଦାରୋ ପକ୍ଷର ଲୋକମାନେ ଭାବିନେଇଥିଲେ । ମହେଞ୍ଜୋଦାରୋ ପକ୍ଷର ମହର୍ଷିମାନଙ୍କ ଭିତରୁ କେତେକଙ୍କର ବୟସ ଦେଢ଼ଶ' ଅଢ଼େଇଶ' ବର୍ଷ ହେଲାବେଳକୁ ନବାଗତଦ୍ୱୟଙ୍କୁ ମାତ୍ର ପଚିଶ ଛବିଶ ବର୍ଷରୁ ଅଧିକ ନୁହେଁ । ଶତାଧିକ ବର୍ଷ ଅଧ୍ୟାପନା, ଅଧ୍ୟୟନ ଓ ଉନ୍ନତ ଚିନ୍ତାରେ ମଗ୍ନ ରହି ଏହି ମହର୍ଷିମାନେ ଯେଉଁ ଅସୀମ ଜ୍ଞାନ ଅର୍ଜନ କରିଛନ୍ତି, ସେହି ଜ୍ଞାନର ସମ୍ମୁଖୀନ ହୋଇ ଏହି ଯୁବକ-ଯୁବତୀଦ୍ୱୟ ଯେ କି ଆଲୋଚନା କରିବେ ତାହା ଭାବି ହେଉନଥାଏ । ଚନ୍ଦ୍ରମଣ୍ଡଳର ଯୁବକ ଆଲୋଚନା ଆରମ୍ଭ କରିବାପାଇଁ ପ୍ରଥମେ ଉଠି ଖାଣ୍ଟି ସଂସ୍କୃତଭାଷାରେ ବକ୍ତୃତା ଆରମ୍ଭ କରିଦେଲେ । ତାଙ୍କର ସଂସ୍କୃତ ଉଚ୍ଚାରଣ ଓ ବାକ୍‌ଶକ୍ତି ଦେଖି ସମସ୍ତେ ତାଟଙ୍ଗା ! ସଂସ୍କୃତ ଯାହାର ମାତୃଭାଷା, ସେ ବି ଏମିତି ଅନର୍ଗଳ ଭାଷଣ ଦେଇପାରିବନି । ଶତାଧିକ ବର୍ଷ ସଂସ୍କୃତ ଭାଷାରେ ଅଧ୍ୟାପନା ଅଧ୍ୟୟନ କରି ମଧ୍ୟ ମହର୍ଷିମାନେ ଶଙ୍କି ଗଲାଭଳି ଜଣାପଡ଼ୁଥାନ୍ତି ।

ଯୁବକଟି ବକ୍ତୃତା ଆରମ୍ଭ କରି କହିଲେ—ମୁଁ ଓ ମୋ ସ୍ତ୍ରୀ ଚନ୍ଦ୍ରଲୋକରୁ ଆସିଛୁ ରାଷ୍ଟ୍ରଦୂତ ଭାବରେ ଆପଣଙ୍କର ଗ୍ରହକୁ ଏକ ଜରୁରୀ ବାର୍ତ୍ତା ନେଇ । ଆପଣମାନେ ହୁଏତ ଜାଣିଥିବେ ପୃଥିବୀର ମଣିଷସମାଜ ଭଳି ଆମ ଚନ୍ଦ୍ରଲୋକରେ ଏକ ବିରାଟ ମଣିଷସମାଜ ଅଛି । ଆପଣ ଓ ଆମ ଭିତରେ ରୂପ, ଗଢ଼ଣ ଓ ବ୍ୟବହାରରେ ବିଶେଷ କିଛି ପାର୍ଥକ୍ୟ ଥିଲାଭଳି ଜଣାପଡୁନାହିଁ; କାରଣ ଆପଣମାନଙ୍କ ମଣିଷସମାଜ ଓ ଆମ୍ଭମାନଙ୍କ ମଣିଷ-ସମାଜର ଉତ୍ପତ୍ତି ଏକ ସ୍ଥଳରୁ । କେବଳ ଆପଣ ଓ ଆମ ଭିତରେ ପାର୍ଥକ୍ୟ ହେଉଛି, ଆମ ଉପଗ୍ରହରେ ସଭ୍ୟତାର ବିକାଶ ଆପଣମାନଙ୍କ ଅପେକ୍ଷା ଯଥେଷ୍ଟ ଆଗରୁ ହୋଇଛି । ଫଳରେ ସଭ୍ୟତାର ପାହାଚରେ ଆମେ ଟିକିଏ ଆଗରେ; ଆପଣମାନେ ଟିକିଏ ପଛରେ । ଗୋଟିଏ କଥା ଆମେ ଏଠିକି ଆସି ଲକ୍ଷ୍ୟ କରିଛୁ ଯେ ଆପଣମାନଙ୍କ ଗ୍ରହରେ ବିଜ୍ଞାନର ବିକାଶ ମୋଟେ ହୋଇନାହିଁ;କିନ୍ତୁ ବିଜ୍ଞାନରେ ଆମେ ଖୁବ ଉନ୍ନତ । ଆପଣମାନଙ୍କ ଭିତରୁ

ଆଲୋଚନାପାଇଁ ଆସିଥିବା ବ୍ୟକ୍ତିମାନେ ବିଜ୍ଞାନରେ କିଛି ଜ୍ଞାନ ଅର୍ଜନ କରିଛନ୍ତି କି କିଣ, ଆମେ ଜାଣିନୁ । ତାହା ଯଦି ନ ହୋଇଥାଏ ତେବେ ଆମେ ଆଶଙ୍କା କରୁଛୁ ଆମର ଆଲୋଚନାକୁ ଆପଣମାନେ ଠିକ୍‌ଭାବେ ହୃଦୟଙ୍ଗମ କରିପାରିବେ ନାହିଁ ।

—ଆମ ଉପଗ୍ରହରେ ବର୍ତ୍ତମାନ ଏକ ବିରାଟ ସମସ୍ୟା ଦେଖାଦେଇଛି; ଯେଉଁ ସମସ୍ୟାର ସମାଧାନ ପାଇଁ ଆଜି ଆମେ ଆପଣମାନଙ୍କ ଦ୍ୱାରସ୍ଥ । ସେହି ସମସ୍ୟାଟି ହେଉଛି, ଆମ ଉପଗ୍ରହରେ ଦିନକୁଦିନ ଜଳର ଅନଟନ ଓ ବାୟୁର ଅଭାବ ଘଟୁଛି । ଆମ ଉପଗ୍ରହ ଆକାରରେ ପୃଥିବୀଠାରୁ ଢେର୍ ଛୋଟ ଥିବାରୁ ତାର ମାଧ୍ୟାକର୍ଷଣ ବଳ ଖୁବ୍ କମ୍ । ତେଣୁ ଏହାର ବାୟୁମଣ୍ଡଳ ଓ ବାୟୁମଣ୍ଡଳର ଜଳୀୟ ଅଂଶ ଚନ୍ଦ୍ରର ଦୁର୍ବଳ ଆକର୍ଷଣ ଯୋଗୁଁ କ୍ରମେ କ୍ରମେ ମହାଶୂନ୍ୟ ଭିତରକୁ ଚାଲିଯାଇ ଲୀନ ହୋଇଯାଉଛି । ଆଜକୁ ହଜାରେ ବର୍ଷ ତଳେ ଆମ ଉପଗ୍ରହରେ ଯେତେ ଜଳ ଥିଲା, ବର୍ତ୍ତମାନ ତା'ଠାରୁ ଢେର୍ କମ୍ ଅଛି । ଏହି ଜଳାଭାବରୁ ପୂର୍ବଭଳି ଉପଗ୍ରହରେ ଆଉ ପ୍ରାକୃତିକ ବୃଷ୍ଟି ହେଉନି । କୃଷିପାଇଁ ଆମକୁ କୃତ୍ରିମ ବୃଷ୍ଟି ଓ ଅନ୍ୟ ଉପାୟର ସାହାଯ୍ୟ ନେବାକୁ ପଡ଼ୁଛି । ଜଳଭଳି ବାୟୁର ଅଭାବ ଆମ ଉପଗ୍ରହରେ ଖୁବ୍ ବେଶି । ଗତ ପାଞ୍ଚଶହ ବର୍ଷଧରି ଆମେ ଆମର ଏହି ବାୟୁ ଅଭାବକୁ ନାନା ଉପାୟରେ ମେଣ୍ଟାଇ ଆସୁଛୁ । ଚନ୍ଦ୍ରପୃଷ୍ଠର ପ୍ରସ୍ତର, ମାଟି, ଧୂଳିରୁ ଆମେ ଅପର୍ଯ୍ୟାପ୍ତ ଅମ୍ଳଜାନ ସଂଗ୍ରହ କରି ଆମର ବାୟୁ ଅଭାବ କିୟତ୍ ପରିମାଣରେ ଦୂର କରିପାରିଛୁ । କିନ୍ତୁ ବର୍ତ୍ତମାନ ଆମେ ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଲୁଣି, ଆଉ ଅମ୍ଳଜାନ ଯୋଗାଇବା ସମ୍ଭବ ନୁହେଁ । ଚନ୍ଦ୍ରମଣ୍ଡଳର ଅଭ୍ୟନ୍ତରରେ ଯେତେ ଯେଉଁଠି ଜଳ ଥିଲା, ସେସବୁ ବାହାର କରି ଆମେ ଶେଷ ଅବସ୍ଥାରେ ଆସି ପହଞ୍ଚିଗଲୁଣି । ବର୍ତ୍ତମାନ ସମସ୍ୟା ହେଉଛି ଆମେ ଯଦି ଚନ୍ଦ୍ରମଣ୍ଡଳ ବାହାରୁ ଏ ଦୁଇଟି ଜିନିଷକୁ ସଂଗ୍ରହ ନ କରୁ, ତେବେ ଚନ୍ଦ୍ରମଣ୍ଡଳରେ ମଣିଷ-ସମାଜ ତିଷ୍ଠିବା ସମ୍ଭବପର ନୁହେଁ । ଏହି ଆହରଣ ମଧ୍ୟ ସବୁଦିନ ପାଇଁ ଯେ କରିହେବ, ତା ମଧ୍ୟ ନୁହେଁ । ତେଣୁ ଆମେ ଠିକ୍ କରିଛୁ, ବିଶ୍ୱରେ ଅନ୍ୟ କୌଣସି ବାସୋପଯୋଗୀ ଗ୍ରହ-ଉପଗ୍ରହର ସନ୍ଧାନ କରି ଚନ୍ଦ୍ରରୁ ଅପସରିଯିବୁ ।

—ପୃଥିବୀରେ ମଣିଷ ବାସୋପଯୋଗୀର ଯଥେଷ୍ଟ ସୁବିଧା ଥିଲେହେଁ ପୃଥିବୀକୁ ଆସିବା କଥା ଆମେ ବିଚାରୁନୁ । ତାର କାରଣ ହେଉଛି ପୃଥିବୀର ମାଧ୍ୟାକର୍ଷଣ ବଳ ଏତେ ବେଶି ଯେ, ଚନ୍ଦ୍ରର କମ୍ ମାଧ୍ୟାକର୍ଷଣ ବଳରେ ଅଭ୍ୟସ୍ତ ଥିବା ନରନାରୀଙ୍କର ପୃଥିବୀରେ ଚଳାଚଳ ହେବା ବିଶେଷ ସୁବିଧାଜନକ ନୁହେଁ । ଅବଶ୍ୟ ଆମେ ଯେ ଏଠାକୁ ଆସିଛୁ, ଚାଲିବୁଲି, ଯିବା-ଆସିବାରେ ଆମେ ଯେ ଖୁବ୍ କଷ୍ଟ ଅନୁଭବ କରୁଛୁ, ତା ହୁଏତ ଆପଣମାନେ ଜାଣିପାରୁ-ନାହାନ୍ତି । କାରଣ ପୃଥିବୀର ଅବସ୍ଥା ସହିତ ଅଭ୍ୟସ୍ତ ହେବାପାଇଁ ଓ ଏଠାକାର ବିରାଟ ମାଧ୍ୟାକର୍ଷଣ ବଳ ଭିତରେ ଯା'ଆସ କରିବାପାଇଁ ଆମକୁ ଗତ ବହୁ ବର୍ଷ ଧରି ଚନ୍ଦ୍ରରେ କମ୍ ଶିକ୍ଷା ନେବାକୁ ପଡ଼ିନି । ସେହି ଶିକ୍ଷା କି ତନ୍ତ୍ର, ଏବେ ବି ଆମେ ଭୁଲିପାରିନୁ । ଚନ୍ଦ୍ରଲୋକର କୋଡ଼ିଏ କୋଟି ଜନସମାଜକୁ ପୃଥିବୀପୃଷ୍ଠର ଅବସ୍ଥା ସହିତ ଅଭ୍ୟସ୍ତ କରାଇ

ପୃଥିବୀକୁ ଆସିବା ଅସମ୍ଭବ ଛଡ଼ା ଅନ୍ୟ କିଛି ନୁହେଁ । ତା ଛଡ଼ା ପୃଥିବୀରେ ସେମାନଙ୍କରୁ ସନ୍ତାନସନ୍ତତି ହ୍ରାସ ପାଇବାର ସମ୍ଭାବନା ଅଛି । ଫଳରେ ଅଳ୍ପ କେଇବର୍ଷ ଭିତରେ ପୃଥିବୀରେ ଆଶ୍ରୟ ନେଇଥିବା ଚନ୍ଦ୍ରାଧିବାସୀମାନେ ସ୍ୱତଃ ଶେଷ ପାଇଯିବେ । ପୁଣି ଯାହା ବା ସନ୍ତାନସନ୍ତତି ହେବେ, ସେମାନେ ଆକାରରେ ଏତେ ଖ୍ରେଟ ହେବେ ଯେ ଜନ୍ମ ହେଲାବେଳକୁ ସେମାନଙ୍କ ଉଚ୍ଚତା ମାତ୍ର କେଇ ଇଞ୍ଚରୁ ଅଧିକ ହୋଇ ନଥିବ । ତେଣୁ ତୁମ-ଆମ ଭଳି ଆକୃତିବିଶିଷ୍ଟ ଲୋକର ସନ୍ତାନ ପୂର୍ଣ୍ଣବୟସ ପ୍ରାପ୍ତ ହେଲା ବେଳକୁ ଯଦି ହାତେ ଦେଢ଼ ହାତରୁ ଅଧିକ ଉଚ୍ଚ ନ ହୁଏ, ତେବେ ସେମାନଙ୍କର ପିତାମାତାଙ୍କ ମନ ଉପରେ ଯେ କି ପ୍ରଭାବ ପଡ଼ିବ, ତାହା ଆପଣମାନେ ସହଜରେ ଅନୁମାନ କରି ପାରୁଥିବେ । ଏହି ସବୁ କାରଣ ହେତୁ ଆମ ଉପଗ୍ରହର ଲୋକେ ପୃଥିବୀକୁ ଆସିବାକୁ ଏକାନ୍ତ ଅନିଚ୍ଛୁକ ।

—ଆମେ ବର୍ତ୍ତମାନ ପୃଥିବୀ ବ୍ୟତୀତ ଆମ ଲୋକଙ୍କ ବାସୋପଯୋଗୀ ଅନ୍ୟ ଗ୍ରହ-ଉପଗ୍ରହ ଅନ୍ୱେଷଣରେ ବ୍ୟସ୍ତ । ଯେତେ ଦିନ ପର୍ଯ୍ୟନ୍ତ ଏମିତି ଏକ ଗ୍ରହ ବା ଉପଗ୍ରହର ଠାବ ନ କରିଛୁ, ସେତେ ଦିନ ପର୍ଯ୍ୟନ୍ତ ଆମକୁ ଆମର ଆଶୁ ବିପଦ ସହିତ ଯୁଦ୍ଧ କରିବାକୁ ପଡ଼ିବ । ଚନ୍ଦ୍ର ବାହାରୁ ଜଳ ଓ ବାୟୁ ଆହରଣ ନ କଲେ ଆମେ ଆମ ଲୋକଙ୍କୁ ବଞ୍ଚାଇ ପାରିବୁ ନାହିଁ । ତେଣୁ ଆମେ ଆପଣମାନଙ୍କଠାରୁ ଜଳ ଓ ବାୟୁର ସାହାଯ୍ୟ ନେବାପାଇଁ ଆସିଛୁ । ଆମେ ଚନ୍ଦ୍ରମଣ୍ଡଳରୁ ପୂର୍ଣ୍ଣପୂର୍ଣ ବିଦାୟ ନ ନେଲା ପର୍ଯ୍ୟନ୍ତ ଆମର ଯେତିକି ବାୟୁ ଓ ଜଳ ଦରକାର, ତାହା ନେବାକୁ ଆପଣମାନେ ଅନୁମତି ଦେଲେ ପୃଥିବୀର ବାୟୁମଣ୍ଡଳ ଓ ଜଳଭଣ୍ଡାରରୁ ସେଗୁଡ଼ିକ ଆହରଣ କରିବୁ । ତାହା ପୃଥିବୀରୁ ବୋହିନେବା ପାଇଁ ଆମର ବିରାଟ ବିରାଟ ମହାଶୂନ୍ୟ-ପୋତ ପୃଥିବୀ ଓ ଚନ୍ଦ୍ର ଭିତରେ ଆତଯାତ କରିବ । ସେଥିପାଇଁ ଆପଣମାନଙ୍କ ଅନୁମତି ନେଇ ଆମକୁ ନାନା ପ୍ରଚେଷ୍ଟା କରିବାକୁ ପଡ଼ିବ ଏହି ପୃଥିବୀ-ପୃଷ୍ଠରେ । ବାୟୁମଣ୍ଡଳର ବାୟୁକୁ ତରଳ ବା କଠିନ ବାୟୁରେ ପରିଣତ କରି ଚନ୍ଦ୍ରମଣ୍ଡଳକୁ ପ୍ରେରଣ କରିବା ପାଇଁ ଆମକୁ ବହୁ କଳକାରଖାନା ବସାଇବାକୁ ପଡ଼ିବ ଏହି ସହରର ଆଖପାଖରେ । ଏହି ଜଳ ଓ ବାୟୁ ଯୋଗାଇବା ପାଇଁ ଆପଣମାନେ ଯାହା ମୂଲ୍ୟ ଗ୍ରହିବେ ଆମେମାନେ ଦେବାକୁ ପ୍ରସ୍ତୁତ ଅଛୁ । ଆପଣମାନଙ୍କ ପୃଥିବୀରେ ସୁନାର ମୂଲ୍ୟ ଅଧିକ ଥିବାରୁ ଓ ଆପଣମାନଙ୍କ ମଜୁରି ଦିଆନିଆରେ ସ୍ୱର୍ଣ୍ଣମୁଦ୍ରା ବ୍ୟବହୃତ ହେଉଥିବାରୁ ଆମେ ଆପଣମାନଙ୍କ ପ୍ରାପ୍ୟ ଖାଣ୍ଟି ସୁନାରେ ଦେବାପାଇଁ ପ୍ରସ୍ତୁତ । ଆମେ ଏଠାରେ ପ୍ରତିଷ୍ଠା କରିବାକୁ ଯାଉଥିବା କଳକାରଖାନାରେ ଆପଣମାନଙ୍କ ଶ୍ରମିକ ମାନେ କାମ କରିବେ ଓ ସେମାନଙ୍କ ମଜୁରି ହିସାବରେ ଆମେ କେବଳ ସୁନାହିଁ ଦେବୁ ।

ରାଷ୍ଟ୍ରଦୂତଙ୍କ ଭାଷଣରୁ ମହର୍ଷିମାନେ କିଛି ନ ବୁଝିଲା ଭଳି ମୂଳରୁ ଜଣାପଡ଼ୁଥାଏ । ଭାଷଣର ଶେଷ ବେଳକୁ ସେମାନେ ଯାହା ବୁଝିଲେ, ସାଧାରଣ ଲୋକଙ୍କଠାରୁ କିଛି ଅଧିକା ବୁଝିଲାଭଳି ଜଣାପଡ଼ୁ ନଥାଏ । ସେମାନେ ଯୁବକଙ୍କ ବକ୍ତୃତାରୁ ଏତିକି ବୁଝିଲେ ଯେ

ଯୁବକ-ଯୁବତୀଦ୍ୱୟ ଚନ୍ଦ୍ରଲୋକରୁ ଆସିଛନ୍ତି ପୃଥିବୀରୁ ଜଳ ଓ ବାୟୁ ନେବା ପାଇଁ । ସେମାନେ ଯେ ଖାଲି ନେବେ ତା ନୁହେଁ, ପ୍ରତି ବଦଳରେ ଦେବେ ଯଥେଷ୍ଟ ପରିମାଣର ସୁନା ।

ମହର୍ଷିମାନେ ବୁଝନ୍ତୁ ବା ନବୁଝନ୍ତୁ, ନଗରପାଳକ ବୁଝିଲେ ଯେ ନବାଗତଙ୍କ ପ୍ରସ୍ତାବ କିଛି ମନ୍ଦ ନୁହେଁ । ପୃଥିବୀରେ ଜଳ ଓ ବାୟୁ ତ ଅପର୍ଯ୍ୟାପ୍ତ ପରିମାଣରେ ରହିଛି । ସେମାନେ ଯେତେ ପରିମାଣରେ ନେଲେ ମଧ୍ୟ କିଛି କ୍ଷତି ନାହିଁ; ପ୍ରତିବଦଳରେ ଯେଉଁ ମୂଲ୍ୟ ସୁନାଭାବରେ ଦେବେ, ତାହା ସେମାନଙ୍କର ବିଶେଷ ଦରକାରରେ ଆସିବ । ବର୍ତ୍ତମାନ ମହେଞ୍ଜୋଦାଡ଼ୋର ଯେଉଁ ଆର୍ଥିକ ଅବସ୍ଥା, ସେଥିରେ ଅଧିକ ପରିମାଣରେ ସୁନା ନହେଲେ ନଚଳେ । ସହରକୁ ସିନ୍ଧୁ ନଦୀର ଭବିଷ୍ୟତ ବନ୍ୟା ଆକ୍ରମଣରୁ ରକ୍ଷା କରିବାକୁ ପଡ଼ିବ । ଏଣେ ମହେଞ୍ଜୋଦାରୋର ଯୁବକମାନେ ଯୁଦ୍ଧ କରିବାକୁ ବିମୁଖ ଥିବାରୁ ଶତ୍ରୁମାନଙ୍କୁ ଥରକୁଥର ସୁନା ଦେଇ ବିଦାୟ କରିବାକୁ ପଡ଼ିବ; ଏଥିପାଇଁ ବହୁ ପରିମାଣରେ ସୁନା ମଧ୍ୟ ଆବଶ୍ୟକ । ଏହି ଆବଶ୍ୟକୀୟ ସୁନା ଯଦି ଅତି ସହଜ ଓ ସୁବିଧାରେ ମିଳିଯାଏ, ତେବେ ଏହାଠାରୁ ଅଧିକ ସୌଭାଗ୍ୟ କଥା ଆଉ କଣ ହୋଇପାରେ ? ଏମିତି ଏକ ଉପକାରରେ ଲାଗିବା ଭଳି ପ୍ରସ୍ତାବରେ ଅରାଜି ହେବାର କାରଣ ନାହିଁ ।

କିନ୍ତୁ ଗୋଟିଏ ପ୍ରଶ୍ନ ନଗରପାଳକଙ୍କ ମନରେ ଉଙ୍କିମାରି ଉଠୁଥାଏ । ଠିକ୍ ସେଇ ପ୍ରଶ୍ନ ଯୁବକଙ୍କୁ ପଚାରିଥିଲେ ଦେଶର ଶ୍ରେଷ୍ଠ ବୈଜ୍ଞାନିକ ମହର୍ଷି ତପୋବନଗୃତ୍ସ । ସେ ପଚାରିଲେ—ରାଷ୍ଟ୍ରଦୂତଙ୍କ ଜଳ ନେବାର ଆକାଂକ୍ଷା ଆମେ ଜାଣିଲୁଁ । କିନ୍ତୁ ଯେଉଁ ବାୟୁ କଥା କହୁଛନ୍ତି, ସେ କି ଜିନିଷ ଆମକୁ ଟିକିଏ ବିଶଦ ବ୍ୟାଖ୍ୟା କରି ଜଣାଇବେ କି ? ଆମେ ଠିକ୍ ଭାବରେ ଜାଣିପାରୁନୁ, ସେ ଏହାଦ୍ୱାରା କେଉଁ ଜିନିଷଟିକୁ ବୁଝାଉଛନ୍ତି ?

ଅଢ଼େଇଶହ ବର୍ଷ ବୟସ୍କ ମହର୍ଷି ଭୃଗୁପତି ମଧ୍ୟ ସେଇଆ ପଚାରିବା ପାଇଁ ଇଚ୍ଛା କରୁଥିଲେ । ରାଷ୍ଟ୍ରଦୂତ ମହର୍ଷି ତପୋବନଗୃତ୍ସଙ୍କ ପ୍ରଶ୍ନରେ ନ ହସି ରହିପାରିଲେନି । କହିଲେ—ଓ ! ଆପଣମାନେ ବାୟୁ କାହାକୁ କହନ୍ତି ଜାଣିନାହାନ୍ତି । ସେଥିପାଇଁ ଆପଣମାନେ ଆମ କଥା ବୁଝିପାରୁନାହାନ୍ତି ।

—ଆପଣମାନେ ଯେଉଁ ଜିନିଷଟିକୁ ନିଶ୍ୱାସରେ ନେଉଛନ୍ତି, ସେହି ଜିନିଷଟି ହେଉଛି ବାୟୁ । ଆପଣମାନଙ୍କ ଆକାଶମଣ୍ଡଳ ଏହି ବାୟୁରେ ପୂରିରହିଛି । ଏହି ବାୟୁ ମଧ୍ୟ ମାଟି, ଗୋଡ଼ି, ଜଳ ଭଳି ଏକପ୍ରକାର ବସ୍ତୁ ।

'ବସ୍ତୁ ?'—ମହର୍ଷି ସୁଦକ୍ଷିଣାଗ୍ନିଶ ଚମକି ପଡ଼ିଲେ । ରାଷ୍ଟ୍ରର ସେ ହେଉଛନ୍ତି ସବୁଠାରୁ ବଡ଼ ବୈଜ୍ଞାନିକ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ବାୟୁ ଗୋଟିଏ ବସ୍ତୁ ? ଯଦି—ଆମେ ଏହାକୁ ଦେଖିପାରୁନୁ, ସ୍ପର୍ଶ କରିପାରୁନୁ କେମିତି ? ଯାହାକୁ ଦେଖିପାରିବ, ସ୍ପର୍ଶ କରିପାରିବ, ଯାହାର ଉପସ୍ଥିତି ଅନୁଭବ କରିପାରିବ, ସେଇ ହେଉଛି ସିନା ବସ୍ତୁ ! ଏ ପରିସ୍ଥିତିରେ ଆପଣମାନେ ବାୟୁକୁ ଏକ ବସ୍ତୁ ବୋଲି କେମିତି କହୁଛନ୍ତି, ଆମେ ବୁଝିପାରୁନୁ ।

"ବାୟୁ ଏକପ୍ରକାର ବାଷ୍ପଭାବରେ ଥିବାରୁ ଆପଣମାନେ ଏହାକୁ ଦେଖିପାରୁନାହାନ୍ତି" —ସ୍ୱପ୍ନଦୂତ ଆରମ୍ଭ କଲେ—କାହିଁକି ନା, ବାଷ୍ପ ଅଦୃଶ୍ୟ; କିନ୍ତୁ ଏହାର ଉପସ୍ଥିତିକୁ ତ ଅନୁଭବ କରିହେବ । ବିଞ୍ଚଣାରେ ବିଞ୍ଚିହୁଅନ୍ତୁ; ଦେଖିବେ ବାୟୁ ଗତି କରି ଆପଣମାନଙ୍କ ଦେହକୁ ଥଣ୍ଡା କରୁଛି । ବାୟୁକୁ ଯଦି ଆହୁରି ଥଣ୍ଡା କରିବେ ତେବେ ଦେଖିବେ ଏହା ଜଳ ଭଳି ତରଳ ଓ ତୁଷାର ଭଳି କଠିନ ପଦାର୍ଥରେ ପରିଣତ ହେବ । ତେଣୁ ସେ ପରିସ୍ଥିତିରେ ବାୟୁକୁ ପଦାର୍ଥ କୁହା ନ ଯିବ କାହିଁକି ? ଆମେ ଆପଣମାନଙ୍କ ପୃଥିବୀର ବାୟୁ ଚନ୍ଦ୍ରଲୋକକୁ ନେଲାବେଳେ ଏହାକୁ ତରଳ ଓ କଠିନ କରି ନେବୁ; ସେମିତି ବାଷ୍ପାବସ୍ଥାରେ ନେବୁ ନାହିଁ । ସେତେବେଳେ ଆପଣମାନେ ଦେଖିବାକୁ ପାଇବେ ଏହି ଅଦୃଶ୍ୟ ବାୟୁ କେମିତି ଜଳ ଭଳି ତରଳ ଓ ତୁଷାର ଭଳି କଠିନ ଦିଶିବ ।

ସ୍ୱପ୍ନଦୂତଙ୍କ ଏହି ବ୍ୟାଖ୍ୟା ବିଷୟଟିକୁ ସରଳ କରିବା ପରିବର୍ତ୍ତିରେ ଆହୁରି ଜଟିଳ କରୁଥିଲା । କାରଖାନା ବସିବ, ସେଠି ଅଦୃଶ୍ୟ ବାୟୁ ତରଳ ଓ କଠିନ ବସ୍ତୁରେ ପରିଣତ ହେବ—ମହର୍ଷିମାନେ କିଛି ବୁଝିପାରୁନଥାନ୍ତି । ମହର୍ଷି ତପୋବନଭୂଷି ଓ ସୁଦକ୍ଷନାସ୍ୱାମୀ ଏହିସବୁ ଆଲୋଚନାରୁ ଯତ୍‌କିଞ୍ଚିତ ହୃଦୟଙ୍ଗମ କରୁଥିଲେ; ସେ ପୁଣି କିଛି ବୁଝେ । ମହର୍ଷି ଭୃଗୁପତି ଆଦି ପୂର୍ବପୂରି ନବୀକ୍ । ସେମାନେ ଧ୍ୟାନ କଲାବେଳେ ଯେମିତି ବାହାରର କିଛି ଶବ୍ଦ ସେମାନଙ୍କ କାନ ଭିତରକୁ ଯାଏ ନାହିଁ, ସେହିଭଳି ସ୍ୱପ୍ନଦୂତଙ୍କ ଏହିସବୁ ବ୍ୟାଖ୍ୟା ସେମାନଙ୍କ କାନ ଭିତରକୁ ପଶୁନଥାଏ ଆଲୋଚନାରେ ବା ସେ କ'ଣ ଭାଗ ନେବେ ? ବିଶୁଦ୍ଧ ସଂସ୍କୃତଭାଷାରେ ଆଲୋଚନା ହୋଇ ମଧ୍ୟ ଅଜଣା ଭାଷାରେ ଆଲୋଚନା ହେଲାଭଳି ସେମାନଙ୍କୁ ଅବୋଧ ମନେହେଉଥାଏ ।

ନବାଗତ ଯୁବକଟି ଆଉ ଯାହା କିଛି ଆଲୋଚନା କରିବାକୁ ଚାହିଁଥାନ୍ତେ, ପ୍ରତିନିଧି-ମାନଙ୍କ ଅଜ୍ଞତା ଦେଖି ସେ ଚୁପ୍ ରହିଲେ । ଅଧିକ ଆଲୋଚନା କଲେ କାଳେ ସେମାନେ ବିରକ୍ତ ହୋଇ ତାଙ୍କ ପ୍ରସ୍ତାବକୁ ମନା କରିଦେବେ, ଏହି ଭୟରେ ସେ ଚୁପ୍ ରହିବାକୁ ବାଧ୍ୟ ହେଉଥାନ୍ତି ।

ନଗରପାଳକ ବିଚାର କରି ସେମାନଙ୍କ ସିଦ୍ଧାନ୍ତ ପରେ ଜଣାଇଦେବେ କହି ଆଲୋଚନା ଶେଷ କଲେ ।

---

## ଛଅ

ପୃଥିବୀପୃଷ୍ଠରୁ ଜଳ ଓ ବାୟୁ ନେବା ପାଇଁ ସ୍ୱପ୍ନଦୂତଦ୍ୱୟଙ୍କୁ ଅନୁମତି ମିଳିଗଲା । ଅନ୍ୟ କେଉଁଠୁ ଜଳ ନ ନେଇ ସିନ୍ଧୁ ନଦୀର ବିସ୍ତୃତ ଜଳରାଶିରୁ ଆବଶ୍ୟକୀୟ ଜଳ ସ୍ଥାନାନ୍ତରିତ

କରିବାପାଇଁ ସେମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ଏହି ଆଦେଶ ଦେଲାବେଳକୁ ନଗରପାଳିକା ସମିତିର ସଦସ୍ୟମାନଙ୍କ ସହିତ ଭଲଭାବରେ ଆଲୋଚନା କରି ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ । ରାଷ୍ଟ୍ରଦୂତଦ୍ୱୟଙ୍କୁ ଅନୁମତି ଦେଲାବେଳକୁ ବର୍ଷାଋତୁ ଆରମ୍ଭ ହେବା ଉପରେ । ମହେଞ୍ଜୋଦାରୋର ଜାଣିଲା-ଶୁଣିଲା ଲୋକଙ୍କ ଅଭିଜ୍ଞତାରୁ ଜଣାପଡ଼ିଥାଏ ଯେ ସେହି ବର୍ଷ ସିନ୍ଧୁ ନଦୀର ବନ୍ୟା ବିରାଟ ଆକାର ଧାରଣା କରିବା ସମ୍ଭାବନା । ଏଣେ ଗତ ପାଞ୍ଚବର୍ଷ ଧରି ସିନ୍ଧୁ ନଦୀର ବନ୍ୟାକବଳରୁ ରକ୍ଷା କରୁଥିବା ବନ୍ଧର ମରାମତି ଅଭାବ ଯୋଗୁଁ ତାର ଶୋଚନୀୟ ଅବସ୍ଥା ଆସି ପହଞ୍ଚିଯାଇଥାଏ । ନଗର କମିଟିର ବୃଦ୍ଧ ସଭାସଦ୍‌ବର୍ଗଙ୍କୁ ତଡ଼ି ଯେଉଁ ଯୁବକ ସଭାସଦ୍‌ମାନେ ଆସ୍ଥାନ ଦଖଲ କରି ବସିଥାନ୍ତି, ସେମାନେ ନଦୀବନ୍ଧର ମରାମତି ପାଇଁ କୌଣସି ଖର୍ଚ୍ଚ ବରାଦ କରିବାକୁ ନାରାଜ । ସେମାନଙ୍କର ମତ, ଭବିଷ୍ୟତରେ ବନ୍ୟା କେବେ ଆସିବ, ସେଥିପ୍ରତି ଦୃଷ୍ଟି ରଖି ଆଜିଠୁଁ ଏତେଗୁଡ଼ାଏ ଅର୍ଥ ବ୍ୟୟ କରିବା ବିଜ୍ଞତାର କାର୍ଯ୍ୟ ନୁହେଁ; ବରଂ ସେହି ଅର୍ଥବ୍ୟୟରେ ନଗର ଅଧିବାସୀଙ୍କ ଜୀବନଧାରଣର ମାନ ବଢ଼ାଇବା ବିଧେୟ । ନଗରରେ ସୁନ୍ଦର ରାସ୍ତା, ପ୍ରାସାଦ ଓ କାରୁକାର୍ଯ୍ୟ ଖଚିତ ମନ୍ଦିର ନିର୍ମାଣ, ସୁନ୍ଦର ଓ ପ୍ରଶସ୍ତ ସନ୍ତରଣ ପୁଷ୍କରିଣୀ ଖନନ ଓ ପ୍ରତ୍ୟେକଙ୍କ ବାସଗୃହକୁ ବିଶୁଦ୍ଧ ଥଣ୍ଡା ଉଷୁମ ଜଳ ଯୋଗାଣଦ୍ୱାରା ନଗରବାସୀଙ୍କ ଜୀବନଧାରଣ ମାନକୁ ଉନ୍ନତ କରିବା ଉଚିତ । ସଭାସଦ୍‌ବର୍ଗଙ୍କ ଭିତରୁ ଯେଉଁ ଦୁଇଜଣ ଅଭିଜ୍ଞ ଓ ବୃଦ୍ଧ ସଦସ୍ୟ ଥିଲେ, ଏହିଭଳି ବିବେକଶୂନ୍ୟ ବିପଜ୍ଜନକ ସିଦ୍ଧାନ୍ତକୁ ଗ୍ରହଣ ନ କରିବାପାଇଁ ବାରମ୍ବାର ତାଗିଦ କରୁଥିଲେହେଁ ସେମାନଙ୍କ କଥାକୁ କେହି ଶୁଣୁନଥିଲେ । ଜନୈକ ଯୁବକ ସଭାସଦ୍‌ଙ୍କ ନିର୍ଦ୍ଦେଶମତେ ସିନ୍ଧୁ ନଦୀର ଜଳକୁ ସ୍ଥାନାନ୍ତରିତ କରିବାଦ୍ୱାରା ଭବିଷ୍ୟତର ବନ୍ୟାକୁ ଯେ ଦୂର କରିହେବ ତାହା ସମସ୍ତଙ୍କର ଆଖି ଖୋଲିଦେଇଥିଲା । ବଡ଼ ବିଚକ୍ଷଣ ସିଦ୍ଧାନ୍ତ; ଆଶୁ ବିପଦର ଦୂରୀକରଣ ସହ ଅପର୍ଯ୍ୟାପ୍ତ ଅର୍ଥାଗମର ପଥ ସୁଗମ ହେବ । ସିନ୍ଧୁ ନଦୀର ଜଳ ଓ ଆକାଶ-ମଣ୍ଡଳର ବାୟୁ ନେବା ଯୋଗୁଁ ରାଷ୍ଟ୍ରଦୂତଦ୍ୱୟଙ୍କୁ କର ଦେବାକୁ କୁହାଗଲା— ମାସକୁ ଏକ ହଜାର ମହଣ ଖାଣ୍ଟି ସୁନା । ଏହି ଅପର୍ଯ୍ୟାପ୍ତ ସୁନା ଚିରଦିନ ପାଇଁ ବନ୍ଦ କରିପାରିବ ଆର୍ଯ୍ୟମାନଙ୍କର ଥରକୁ ଥର ମହେଞ୍ଜୋଦାରୋ ଆକ୍ରମଣ । ଯେଉଁ ଦୁଇଟି ଶତ୍ରୁ ମହେଞ୍ଜୋଦାରୋ ଅଧିବାସୀଙ୍କ ଜୀବନକୁ ବାରମ୍ବାର ବିପନ୍ନ କରୁଥିଲା, ତାହା ଏହି ଚନ୍ଦ୍ର ଅଧିବାସୀଙ୍କ ଦୟାରୁ କିଛିତ୍ ପରିମାଣରେ ଦୂର ହେବା ଆଶା ଜଳଜଳ ଦିଶିଲା ।

× × ×

ସିନ୍ଧୁ ନଦୀର ଅପର ତଟରେ ତରଳ ଓ କଠିନ ବାୟୁ ଉତ୍ପାଦନ ଲାଗି କାରଖାନା ବସାଇବା ପାଇଁ ଓ ତା'ଠାରୁ କିଛି ଦୂରରେ ଘନ ଜଙ୍ଗଲ ଭିତରେ ଏକ ମହାଶୂନ୍ୟ ଘାଟି ପ୍ରତିଷ୍ଠା କରିବା ପାଇଁ ରାଷ୍ଟ୍ରଦୂତଙ୍କୁ ଅନୁମତି ମିଳିଗଲା । ଏଥିରେ କାମ କରିବା ପାଇଁ ଉପଯୁକ୍ତ ପାରିଶ୍ରମିକ ଦେଇ ଶ୍ରମିକ ନିଯୁକ୍ତ କରିବା ଅଧିକାର ସେମାନେ ହାସଲ କଲେ । ଶ୍ରମିକମାନଙ୍କୁ ଆଣି କାମରେ ଲଗାଇବା, ସେମାନଙ୍କ କାର୍ଯ୍ୟ ତଦାରଖ କରିବା ଓ ପାରିଶ୍ରମିକ

ଦେବା ଆଦର ଦାୟିତ୍ୱ ରାଷ୍ଟ୍ରଦୂତଦ୍ୱୟ ମୋ ଉପରେ ଅର୍ପଣ କଲେ । କାରଖାନାରେ ଏକ କର୍ମଚାରୀଭାବରେ ମୋତେ ନିଯୁକ୍ତି ନେବାକୁ ପଡ଼ିଲା ଯୁବକ-ଯୁବତୀଦ୍ୱୟଙ୍କ ଅନୁରୋଧକ୍ରମେ । ଆଗରୁ କେବେ ଚାକିରି କରି ନଥିଲି; ତେଣୁ ଚାକିରି କରିବାକୁ ଭଲଲାଗୁଥାଏ । ଗାଈ, ମେଣ୍ଢା ଚରାଇବା ଅପେକ୍ଷା ଏହା ବେଶ୍ ଭଲ କାମ ।

ଚନ୍ଦ୍ରମଣ୍ଡଳକୁ ଜଳ ଓ ବାୟୁ ବହନ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ନବାଗତଦ୍ୱୟ ଚନ୍ଦ୍ରଲୋକକୁ ଫେରିଗଲେ । ଅଳ୍ପ କେଇଦିନ ଭିତରେ ଚନ୍ଦ୍ରଲୋକରୁ ବିଶେଷଜ୍ଞ ଓ ଯନ୍ତ୍ରପାତି ନେଇ ପୃଥିବୀକୁ ଫେରିଆସିବେ କହି ମୋଠାରୁ ବିଦାୟ ନେଲେ । ସେମାନେ ଫେରିଲାବେଳକୁ ଶ୍ରମିକମାନଙ୍କୁ ସଂଗଠିତ କରାଇ ମୁଁ ଯେମିତି ସେମାନଙ୍କ ଅପେକ୍ଷାରେ ଥାଏ, ତାଗିଦ୍ କରିବାକୁ ଭୁଲି ନଥିଲେ ।

× × ×

ସିନ୍ଧୁ ନଦୀକୂଳରେ ମହେଞ୍ଜୋଦାରୋ ସହରଠାରୁ ମୋଟେ ଦୁଇ ମାଇଲ ଦୂରରେ ଏକ ନିପଟ ବନ ଭିତରେ ଚନ୍ଦ୍ରଲୋକର ବିଶେଷଜ୍ଞମାନଙ୍କ ସହାୟତାରେ ବିରାଟ କାରଖାନାମାନ ଗଢ଼ିଉଠିଲା । ଚନ୍ଦ୍ରମଣ୍ଡଳର ଲୋକେ କାରଖାନାର ପରିଚାଳନା ଦାୟିତ୍ୱରେ ରହିଲେ । ଶ୍ରମିକମାନଙ୍କର ପରିଚାଳନା ଦାୟିତ୍ୱ ମୋ ଉପରେ ରହିଲା । ସମସ୍ତଙ୍କ ଉପରେ କାରଖାନା ପରିଚାଳନା ଦାୟିତ୍ୱରେ ରହିଲେ ରାଷ୍ଟ୍ରଦୂତଦ୍ୱୟ । ସିନ୍ଧୁ ନଦୀର ବିରାଟ ଜଳରାଶିରୁ ଜଳ ଶୋଧିତ ହୋଇ ଯେଉଁ ଆକାରରେ ଚନ୍ଦ୍ର ଅଭିମୁଖେ ପ୍ରେରିତ ହେଲା, ବର୍ଷାଋତୁ ନ ହୋଇ ଯଦି ଅନ୍ୟ ଋତୁ ହୋଇଥାନ୍ତା ତେବେ ସିନ୍ଧୁନଦୀ ଏକାବେଳକେ ଶୁଖିଯାଇଥାନ୍ତା । ଆଖପାଖରୁ ବାୟୁମଣ୍ଡଳରୁ ତରଳୀକୃତ ଓ ଘନୀଭୂତ ବାୟୁ ଯେଉଁ ପରିମାଣରେ ପ୍ରେରିତ ହେଉଥିଲା,ମନେ ହେଉଥିଲା ଅଳ୍ପ କେଇଦିନ ଭିତରେ ଚନ୍ଦ୍ରର ବାୟୁମଣ୍ଡଳ ପୂରାପୂରି ପୂର୍ଣ୍ଣ ହୋଇଯିବ ।

କାରଖାନାଗୁଡ଼ିକ ଏମିତି ଭାବରେ ସଂରକ୍ଷିତ ଥାଏ ଯେ ବାହାରର ଲୋକେ ତାର ପାଖ ମାଡ଼ି ପାରୁ ନ ଥାଆନ୍ତି । ତା'ଛଡ଼ା ନିଗୁଛିଆ ଜାଗା, ଚାରିପାଖ ନିପଟ ବଣ, କିଏ ବା କାହିଁକି ଏଆଡ଼କୁ ଆସିବ ? ଲୋକେ ବା ଯାହା ଆସନ୍ତେ, ଏ କାରଖାନା କ'ଣ, ଏଠି କଣ ହେଉଛି, କିଛି ବୁଝିପାରୁ ନ ଥିବାରୁ ସେମାନଙ୍କର ଏଆଡ଼କୁ ଲକ୍ଷ୍ୟ ନ ଥାଏ । କାରଖାନାରେ କାମ କରୁଥିବା ଚନ୍ଦ୍ରମଣ୍ଡଳର ଲୋକେ କାରଖାନା ବାହାରକୁ ବିଶେଷ ଆସନ୍ତି ନାହିଁ; ଯଦି ଆସନ୍ତି ତେବେ ଆଖପାଖ ବଣ ଭିତରେ ବୁଲାବୁଲି କରି ପୁଣି ଫେରିଯାଆନ୍ତି; ପୃଥିବୀର ଲୋକମାନଙ୍କ ସହିତ ମିଶିବାକୁ ସତେ ଯେମିତି ସେମାନଙ୍କର ଆଗ୍ରହ ନାହିଁ ।

କୌଣସି କାର୍ଯ୍ୟ ଉପଲକ୍ଷେ ଆମ ଦେଶର ଲୋକେ ସେମାନଙ୍କ ସହିତ ସାକ୍ଷାତ୍ କରିବାକୁ ଯଦି ଆସନ୍ତି, ସେମାନେ ସାଧାରଣ ମୋତେ ପଠାଇଦିଅନ୍ତି ସେମାନଙ୍କ ସହିତ ଆଲୋଚନା ପାଇଁ । ଖୁବ୍ ଦରକାର ନ ପଡ଼ିଲେ ସେମାନେ ଆମ ଦେଶର ଲୋକଙ୍କୁ

ସାକ୍ଷାତ୍ ଉତ୍ତର ନାହିଁ ।

ଦିନକର ଘଟଣା—ହଠାତ୍ ମହେଞ୍ଜୋଦାରୋର ଶ୍ରେଷ୍ଠ ବୈଜ୍ଞାନିକ ସୁଦକ୍ଷନାରାୟଣ ବାୟୁ ଉପରେ କଠିନ ଓ ତରଳ ଦ୍ରବ୍ୟ ଦେଖିବା ପାଇଁ ଆସି ପହଞ୍ଚିଗଲେ । ତାଙ୍କ ସହିତ ମହର୍ଷି ଭୃଗୁଗତି ଆଦି ଦଳେ ଋଷି । ସମସ୍ତଙ୍କର ଇଚ୍ଛା ବାୟୁକୁ କଠିନ ଓ ତରଳ ଅବସ୍ଥାରେ ଦେଖିବେ । କାରଖାନାର ଦ୍ୱାରରେ ହାଜର ହୋଇ ସ୍ୱୟଂ ଦୂତଙ୍କୁ ଡକାଇପଠାଇଲେ; କିନ୍ତୁ ସ୍ୱୟଂ ଦୂତ ସେମାନଙ୍କୁ ଦେଖାଦେବାକୁ ଅନିଚ୍ଛା ପ୍ରକାଶ କରିବାରୁ ମୋତେ ଯିବାକୁ ପଡ଼ିଲା । ମହର୍ଷିମାନଙ୍କୁ ଦେଖି ମୁଁ ଚମକିପଡ଼ିଲି । ସେ ଦିନର ଆଲୋଚନାରେ ଯେଉଁ ମହର୍ଷିମାନେ ଥିଲେ, ସମସ୍ତେ ଆସି ଏଠି ହାଜର । ସେମାନଙ୍କୁ କାରଖାନା ବୁଲାଇ ଟିକିନିଖି ସବୁ ବୁଝାଇବାର ଦାୟିତ୍ୱ ମୋ ଉପରେ ।

ସେମାନଙ୍କୁ ନେଇ କାରଖାନା ଭିତରକୁ ଗଲି । ଆକାଶମଣ୍ଡଳରେ ବାୟୁ କେମିତି ଯନ୍ତ୍ର ସାହାଯ୍ୟରେ ତରଳ ତଥା ଘନୀଭୂତ ହେଉଛି ଦେଖି ସେମାନେ ଅବାକ । କାରଖାନାର ପ୍ରକାଣ୍ଡ ପ୍ରକାଣ୍ଡ ଯନ୍ତ୍ରପାତି ଦେଖି ସେମାନେ ଗୁହଁଆଁ । ଯେଉଁ ବାୟୁକୁ ଦେଖିପାରୁନାହାନ୍ତି ବୋଲି ତାହାର ଅସ୍ତିତ୍ୱ ସ୍ୱୀକାର କରିବାକୁ ସେମାନେ ନାରାଜ ହେଉଥିଲେ, ସେହି ବାୟୁକୁ ସେମାନେ ତରଳ ଅବସ୍ଥାରେ ଜଳ ଭଳି ଓ କଠିନ ଅବସ୍ଥାରେ ବରଫ ଦେଖି ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ଏଗୁଡ଼ିକ ପୁଣି ପୃଥିବୀରୁ କେମିତି ଭାବରେ ଚନ୍ଦ୍ରଲୋକକୁ ଯାଉଛି, ଜାଣିବାକୁ ସେମାନଙ୍କର ଆଗ୍ରହ କମ୍ ନଥିଲା । ତେଣୁ ସେମାନଙ୍କୁ ନେଇ ମହାଶୂନ୍ୟ ଘାଟି ଦେଖେଇବାକୁ ପଡ଼ିଲା ।

ସେମାନଙ୍କୁ ଯେତେବେଳେ କହିଲି ଯେ ଚନ୍ଦ୍ର ପୃଥିବୀ ଚାରିପାଖରେ ଘୂରୁଛି ଓ ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଛି, ସେମାନେ ହଠାତ୍ ବୁଝିବାକୁ ନାରାଜ । ମୋ କଥା ଶୁଣି ମହର୍ଷି ଭୃଗୁଗତି ଜୋର୍ ଦେଇ କହିଲେ, ଚନ୍ଦ୍ର ପୃଥିବୀ ଚାରିପାଖେ ଯେପରି ଘୂରୁଛି, ସେହିପରି ସୂର୍ଯ୍ୟ ପୃଥିବୀ ଚାରିପାଖରେ ଘୂରୁଛି—ଏହା ଅବିସମ୍ବାଦିତ ସତ୍ୟ ।

ମୁଁ ପୁଣି ଯେତେବେଳେ କହିଲି ପୃଥିବୀ କମଳାଲେମ୍ବୁ ପରି ଗୋଲ, ସେମାନେ ହସି ହସି ବେଦମ୍ ହୋଇଗଲେ । ସେମାନଙ୍କ ଧାରଣା ପୃଥିବୀ ଥାଳି ଭଳି ସମତଳ, ଏହାକୁ ବାସୁକୀ ମୁଣ୍ଡରେ ଟେକି ଧରିଛି ଓ କୌଣସି ଗୋଟିଏ ସ୍ଥାନରେ ବିଶେଷତଃ ଦୂର ସମୁଦ୍ରର ଆରପାରିରେ ଏହା ଶେଷ ହୋଇଯାଇଛି । ମହାସମୁଦ୍ର ଭିତରେ ମନୁଷ୍ୟ ବହୁ ଦୂରକୁ ଗ୍ଲଲିଗଲେ, ପୃଥିବୀରୁ ଖସିପଡ଼ିବ ଓ ପୃଥିବୀରୁ ଖସିପଡ଼ିଲେ ଆଉ ରକ୍ଷା ନାହିଁ—ମୃତ୍ୟୁ ଅନିବାର୍ଯ୍ୟ । ବଡ଼ ଅଦ୍ଭୁତ ଯୁକ୍ତିସବୁ ସେମାନଙ୍କର ! ମୋର ବା ଜ୍ଞାନ କେତେ ସେମାନଙ୍କ ଯୁକ୍ତିକୁ କାଟି ସେମାନଙ୍କ ଭ୍ରାନ୍ତ ଧାରଣାକୁ ବଦଳାଇବି ? ସେମାନଙ୍କର ଆଉ ଏକ ବିଚିତ୍ର ଯୁକ୍ତିରେ ମୁଁ ସେଦିନ ନ ହସି ରହିପାରିଲିନି । ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ରାହୁ ଓ କେତୁ ନାମକ ରାକ୍ଷସଦ୍ୱୟ ଚନ୍ଦ୍ର ଓ ସୂର୍ଯ୍ୟ ଗ୍ରାସ କରିବା ହେତୁ ଘଟେ । କଥାବାର୍ତ୍ତା ପ୍ରସଙ୍ଗରେ ମୋତେ ମହର୍ଷି ଭୃଗୁପତି ପଚାରିଥିଲେ—ତୁମେ ତ ଚନ୍ଦ୍ରଲୋକର ଅଧିବାସୀ-

ମାନଙ୍କ ସଂସ୍ପର୍ଶରେ ସବୁବେଳେ ଆସୁଛ ଉତ୍କଳାବର୍ତ୍ତୀ ! କହିପାରିବ, ଚନ୍ଦ୍ରକୁ ଯେତେବେଳେ ରାହୁ ଓ କେତୁ ରାକ୍ଷସ ଗ୍ରାସ କରେ, ସେତେବେଳେ ଚନ୍ଦ୍ରଲୋକର ଅଧିବାସୀମାନେ କୁଆଡ଼େ ଯାଆନ୍ତି ? ସେମାନଙ୍କୁ ତ ସେହି ରାକ୍ଷସ ଗିଳିପକାଉଥିବ ? ଚନ୍ଦ୍ରଲୋକର ଏହି ଗ୍ରହଣ ବିପଦ କଥା ତ ଚନ୍ଦ୍ରଲୋକର ଅଧିବାସୀମାନେ ତୁମକୁ କହୁଥିବେ । ସେମାନେ କେମିତି ଏ ବିପଦରୁ ରକ୍ଷାପାଆନ୍ତି, ତୁମେ କହିପାରିବ ? ଏହିଭଳି ବହୁ ଅଦ୍ଭୁତ ପ୍ରଶ୍ନ । ମୁଁ ବା କଣ ଉତ୍ତର ଦେବି ? ହସିବା ଛଡ଼ା ମୋର ସେ ପ୍ରଶ୍ନ ପାଇଁ ଆଉ କିଛି ଉତ୍ତର ନ ଥିଲା । କାରଖାନାର ତତ୍ତ୍ୱାବଧାନରେ ଥିବା ଚନ୍ଦ୍ରଲୋକର ରାଷ୍ଟ୍ରଦୂତ କେବଳ ଏମାନଙ୍କ ଭ୍ରାନ୍ତ ଧାରଣାକୁ ବଦଳାଇବାକୁ ସମର୍ଥ ହୋଇଥାନ୍ତେ । ମହାଶୂନ୍ୟଘାଟୀରେ ଆମେ ଏମିତି କଥାବାର୍ତ୍ତା ହେଉଥିବୁ ଚନ୍ଦ୍ରଲୋକର ଏକ ମହାଶୂନ୍ୟଯାନ ସେ ଘାଟୀରେ ଆସି ଓହ୍ଲେଇଲା । ମହାଶୂନ୍ୟ-ଯାନରୁ ଯେଉଁ ବିପୁଳ ପରିମାଣ ସୁନା ଓହ୍ଲାଗଲା, ତାହା ଦେଖି ଏମାନେ ଅବାକ୍ । ମହର୍ଷି ତକ୍ଷସାର ସମ୍ଭାଳି ନପାରି ପଚାରିଲେ — ଚନ୍ଦ୍ରଲୋକରେ ସୁନାର କଣ କିଛି ବ୍ୟବହାର ହୁଏ ନାହିଁ ? ତା ନ ହେଲେ ଏତେ ସୁନା ସେମାନେ ପଠାନ୍ତେ କିପରି ?

ତକ୍ଷସାରଙ୍କ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ନଥିଲା । କାରଣ ଚନ୍ଦ୍ରଲୋକ ତ ମୁଁ ଦେଖିନ । ସେଠାକାର ଅବସ୍ଥା ଓ ସୁନାର ବ୍ୟବହାର କଥା ମୁଁ ବା କଣ କହିବି ?

ମହର୍ଷିମାନଙ୍କୁ କୌଣସି ପ୍ରକାରେ ବିଦାୟ ଦେଇ ମୁଁ ଯେତେବେଳେ କାରଖାନା ଭିତରକୁ ଫେରିଆସେ, ରାଷ୍ଟ୍ରଦୂତ ଓ ତାଙ୍କ ସ୍ତ୍ରୀ ହସି ହସି ମୋତେ ସ୍ୱାଗତ ଜଣାଇ କହିଲେ—ତୁମେ ମହର୍ଷିମାନଙ୍କୁ ଯେମିତି ବୁଝାଇ ବିଦାୟ ଦେଲ, ତାହା ଆମେ କରି ପାରି ନ ଥାନ୍ତୁ । ସେମାନଙ୍କ ପ୍ରଶ୍ନଗୁଡ଼ାକ ଏଡ଼େ ପିଲାଳିଆ ଯେ ଶୁଣି ହସି ହସି ଆମ ପେଟ ଫାଟି-ଯାଇଥାନ୍ତା ।

ରାଷ୍ଟ୍ରଦୂତ ଆହୁରି କହିଲେ—ସେଥିପାଇଁ ଆମେ ସେମାନଙ୍କ ସାକ୍ଷାତ୍ ଦେବାକୁ ଇଚ୍ଛା କଲୁ ନାହିଁ । ସେମାନେ ପ୍ରଶ୍ନ ଭଳି ପ୍ରଶ୍ନ ପଚାରିଲେ ସିନା କିଏ ଉତ୍ତର ଦେବ, କିନ୍ତୁ ସେମାନେ ଯେଉଁଭଳି ଅବାନ୍ତର ପ୍ରଶ୍ନ ପଚାରନ୍ତି, ତାର ଉତ୍ତର ଦେବାକୁ କାହାର ଧୈର୍ଯ୍ୟ ରହିବ ? ସେମାନଙ୍କର ପ୍ରଶ୍ନ ଶୁଣି ତ ଆମେ ତଟସ୍ଥ ହେଉ; ଉତ୍ତର ଦେବୁ କଣ ?

ଯୁବତୀଟି ମୁଖରେ ବିସ୍ମୟର ଭାବ ଫୁଟାଇ ପଚାରିଲେ — ଏମାନେ ପରା ହେଲେ ଏ ରାଜ୍ୟରୁ ସବୁଠାରୁ ବିଜ୍ଞ ବ୍ୟକ୍ତି ? ଜ୍ଞାନଗାରିମାରେ ଏମାନଙ୍କ ସମକକ୍ଷ ହେବାପାଇଁ କେହି ନାହିଁ ? ଏଇଥିପାଇଁ ପରା ସେ ଦିନର ଆଲୋଚନାକୁ ଏମାନଙ୍କୁ ଡକାଯାଇଥିଲା । ଏହି କଣ ହେଉଛି ସେମାନଙ୍କ ଅଗାଧ ଜ୍ଞାନର ପ୍ରମାଣ ? ବିଜ୍ଞାନ କଣ ଏମାନେ ଜାଣିନାହାନ୍ତି । କେବେ ଯେ ଏମାନେ ବିଜ୍ଞାନର ଆଲୋକ ପାଇବେ ତା ଭାବି ହେଉନି !

# ସାତ

ପୃଥିବୀପୃଷ୍ଠରେ ପ୍ରାୟ ଦୁଇ ବର୍ଷରୁ କିଛି ଊର୍ଦ୍ଧ୍ୱକାଳ କଟିଯିବା ପରେ ଦିନେ ଚନ୍ଦ୍ରଲୋକର ରାଷ୍ଟ୍ରଦୂତ କେବଲପ୍ରାସ୍ଥ ଓ ପତ୍ନୀ ଶାଙ୍ଗରିନା ମୋତେ ତାଙ୍କ କକ୍ଷକୁ ଡାକି କହିଲେ—ଦେଖ ଉତ୍କଳାବର୍ତ୍ତି ! ଆଉ କିଛି ଦିନ ପରେ ପୃଥିବୀପୃଷ୍ଠରୁ ଆମର ବାୟୁ ଓ ଜଳ ନେବା ଯୋଜନା ଶେଷ ହୋଇଯିବ । ଗତ ଦୁଇବର୍ଷ ଭିତରେ ଆମେ ଯେତକ ନେଇ-ସାରିଲୁଣି, ତାହା ଆମ ଅଭାବ ବହୁବର୍ଷ ପର୍ଯ୍ୟନ୍ତ ମେଣ୍ଟାଇ ପାରିବ । ତେଣୁ ଆଉ କେତେ ଦିନ ପରେ ଏଠାରୁ ଆମେ ଘାଣ୍ଟି ଉଠାଇ ନେଇ ଚନ୍ଦ୍ରଲୋକକୁ ଫେରିଯିବୁ । ଆମେ ଚାଲିଗଲା ପରେ ତୁମେ ହେବ ମୁକ୍ତ । ଏତେ ଦିନଧରି ତୁମେ ଆମ ସହିତ ରହି ଆମର ଯେତେ ଉପକାର କରିଛ, ଆମେ ସେଥିପାଇଁ ତୁମଠାରେ ଋଣୀ । ତୁମରି ସାହାଯ୍ୟରୁ ହିଁ ଆଜି ଚନ୍ଦ୍ରର ଅଧିବାସୀଙ୍କ ଜୀବନରକ୍ଷା ଦିଗରେ ଆମେ ଏତେ ଦୂର ସଫଳ ହୋଇଛୁ । ତୁମର ଏହି ଉପକାର ପାଇଁ ସାରା ଚନ୍ଦ୍ରଲୋକର ଅଧିବାସୀ ତୁମକୁ ଭୁଲି ପାରିବେନି ।

ମୋ ପତ୍ନୀ ଶାଙ୍ଗରିନା ତୁମ କାର୍ଯ୍ୟରେ ଏତେ ପ୍ରୀତ ଯେ ତୁମେ ଯଦି ଇଚ୍ଛା କର ଆମେ ତୁମକୁ ଚନ୍ଦ୍ରଲୋକ ଯିବା ପାଇଁ ସୁବିଧା ଦେବାକୁ ପ୍ରସ୍ତୁତ । କିନ୍ତୁ ଆମେ ତୁମର ପ୍ରକୃତ ଇଚ୍ଛା ଜାଣିନାହୁଁ ବୋଲି ତୁମକୁ ଏ ପ୍ରସ୍ତାବ ଦେଉନଥିଲୁ । ତୁମେ ଯଦି ରାଜି ହୁଅ, ତେବେ ତୁମ ଚନ୍ଦ୍ରମଣ୍ଡଳ ଯାତ୍ରା ନେଇ ଆମେ ଆମର ସରକାରଙ୍କ ସହିତ ଆଲୋଚନା କରିବୁ । ଆମର ଆଶା, ତୁମ ଭଳି ଏତେ ଉପକାରୀ ଲୋକକୁ ଚନ୍ଦ୍ରଲୋକରେ ପ୍ରବେଶ କରିବା ପାଇଁ ସେମାନେ ଅନୁମତି ଦେବାକୁ ପଛାଇବେ ନାହିଁ ।

ରାଷ୍ଟ୍ରଦୂତ କେବଲପ୍ରାସ୍ଥ ଓ ପତ୍ନୀ ଶାଙ୍ଗରିନାଙ୍କ ସେହି ପ୍ରସ୍ତାବରେ ମୁଁ ଏତେ ଖୁସି ହୋଇପଡ଼ିଥିଲି ଯେ ଚନ୍ଦ୍ରଲୋକକୁ ଯିବା ପାଇଁ ସଙ୍ଗେ ସଙ୍ଗେ ମୋର ସମ୍ମତି ଜଣାଇଦେଲି ।

ସେମାନେ ଯୋଜନାରେ ଯୋଗଦେବା ଦିନଠାରୁ ମୋର ମନ ଭିତରେ ଚନ୍ଦ୍ରଲୋକ ପ୍ରତି ଏକ ବିରାଟ ଆକର୍ଷଣ ଜାତ ହୋଇଥିଲା । ମୁଁ ମନକୁ ମନ କେତେଥର ଭାବିଛି—ଚନ୍ଦ୍ରଲୋକକୁ ଯିବାକୁ ମୋତେ ସୁବିଧା ମିଳନ୍ତା କି ! ଶାଙ୍ଗରିନାଙ୍କର ମୋ ପ୍ରତି ସ୍ନେହ ଚନ୍ଦ୍ରଲୋକ ପ୍ରତି ମୋ ଆକର୍ଷଣକୁ ବହୁଗୁଣିତ କରିଥିଲା । ତେଣୁ କେବଲପ୍ରାସ୍ଥଙ୍କ ପ୍ରସ୍ତାବରେ ମୁଁ ରାଜି ହୋଇଗଲି । ସେ ଚନ୍ଦ୍ରମଣ୍ଡଳ ସରକାରଙ୍କ ସହିତ ଆଲୋଚନା କରି ମୋତେ ସାଙ୍ଗରେ ନେଇଯିବେ ବୋଲି ପ୍ରତିଶ୍ରୁତି ଦେଲେ । ସେମାନଙ୍କ ପ୍ରତି ମୋ ମନ କୃତଜ୍ଞତାରେ ପୂରିଗଲା । ସେମାନଙ୍କ ପ୍ରସ୍ତାବରେ ମୁଁ ରାଜି ହୋଇଯିବା ଦେଖି ସେମାନେ ବି ଅତ୍ୟନ୍ତ ଖୁସି ହୋଇଗଲେ । ପୃଥିବୀରେ ମୋର କେହି ଆତ୍ମୀୟ-ସ୍ୱଜନ ନ ଥିବାରୁ ଆଉ କାହାକୁ ପଚାରିବା ଦରକାର ପଡ଼ିଲାନି । ଭାବିଲି, ମହେଞ୍ଜୋଦାରୋ ସହରରେ ଏକ ସାମାନ୍ୟ ଶ୍ରମିକ

ଭାବରେ ରହିବା ଅପେକ୍ଷା ଚନ୍ଦ୍ରଲୋକକୁ ଚାଲିଯିବା ଢେର୍ ଭଲ ।

X X X

ଯେଉଁ ଦିନ ଚନ୍ଦ୍ରଲୋକରୁ ମୋ ଯିବା ନେଇ ଅନୁମତି ଚାଲିଆସିଲା, ସେଦିନ କେବଲପ୍ରାସ୍ତ ଓ ଶାଙ୍ଗରିନାଙ୍କ ଆନନ୍ଦ କହିଲେ ନ ସରେ । ମୋତେ ଏ ଶୁଭ ଖବର ଜଣେଇ ଶାଙ୍ଗରିନା କହିଲେ—ତୁମେ ଏଠାରେ ଯେଉଁ କଷ୍ଟରେ ଜୀବନଯାପନ କରୁଥିଲ ତାଠାରୁ ଢେର୍ ଉନ୍ନତ ଧରଣର ଜୀବନଯାପନ କରିପାରିବ ଚନ୍ଦ୍ରଲୋକରେ । ତୁମକୁ ଉପଯୁକ୍ତ ଶିକ୍ଷା ବିଶେଷତଃ ବିଜ୍ଞାନର ଶିକ୍ଷା ଦେବାପାଇଁ ଆମର ସରକାର ସବୁ ସୁବିଧା କରିଦେବେ । ତୁମେ ପ୍ରଥମ କେଇଦିନ ଆମର ଅତିଥି ଭାବରେ ଚନ୍ଦ୍ରଲୋକରେ ବାସକରିବା ପରେ ତୁମ ଇଚ୍ଛାନୁସାରେ ଚନ୍ଦ୍ରମଣ୍ଡଳରେ ଶିକ୍ଷା ସମାପ୍ତକରି ପୃଥିବୀକୁ ଫେରିଆସିପାର କିମ୍ବା ଇଚ୍ଛାକଲେ ସେଠାରେ ନାଗରିକ ଭାବରେ ସେଠାରେ ଅବସ୍ଥାନ କରିପାର । ଯଦି ପୃଥିବୀକୁ ଫେରିଆସିବାକୁ ଚାହିଁବ, ତୁମକୁ ଏଠାରେ ପହଞ୍ଚାଇଦେବା ପାଇଁ ସମସ୍ତ ଦାୟିତ୍ୱ ଆମର ଶାସକବର୍ଗ ଗ୍ରହଣ କରିବାକୁ ରାଜି ହୋଇଛନ୍ତି ।

ଚନ୍ଦ୍ରଲୋକକୁ ଯିବାଦିନ ଯେତେ ପାଖେଇ ଆସୁଥାଏ, ମୋ ମନ ସେତେ ଆନନ୍ଦରେ ବିହ୍ୱଳ ହୋଇଉଠୁଥାଏ । ଚନ୍ଦ୍ରଲୋକକୁ ମୋତେ ନେବା ପୂର୍ବରୁ ମୋର କି କି ବ୍ୟବସ୍ଥା କରିବା ଦରକାର, ଚନ୍ଦ୍ରଲୋକର ଶାସନ ପରିଷଦଠାରୁ ନାନାପ୍ରକାର ନିର୍ଦ୍ଦେଶ ଥରକୁ ଥର ଆସୁଥାଏ ରାଷ୍ଟ୍ରଦୂତ କେବଲପ୍ରାସ୍ତ ଓ ଶାଙ୍ଗରିନାଙ୍କଠାକୁ । ଯେହେତୁ ମୁଁ ପୃଥିବୀର ଲୋକ । ପୃଥିବୀର କୌଣସି ରୋଗଜୀବାଣୁ ଯେପରି ମୋ ସହିତ ଚନ୍ଦ୍ରମଣ୍ଡଳକୁ ଚାଲି ନ ଯାଏ, ସେଥିପାଇଁ ନାନା କଟକଣା କରିବା ପାଇଁ ବାରମ୍ବାର ତାଗିଦ୍ ଆସୁଥାଏ । ମୋତେ ପୂରାପୂରି ରୋଗ-ବୀଜାଣୁଶୂନ୍ୟ କରିବାପାଇଁ ସାତଦିନ କାଳ ଗୋଟିଏ ଘରେ ଆବଦ୍ଧ ରଖି ମୋତେ ଚିକିତ୍ସା କରିବା ପାଇଁ ନିର୍ଦ୍ଦେଶ ତଥା ନାନା ଔଷଧ ସାମଗ୍ରୀ ଚନ୍ଦ୍ରମଣ୍ଡଳରୁ ଚାଲିଆସିଲା । ଶାଙ୍ଗରିନାଙ୍କର ଭେଷଜବିଜ୍ଞାନରେ ଦକ୍ଷତା ଥିବାରୁ ମୋତେ ବୀଜାଣୁମୁକ୍ତ କରିବାର ସମସ୍ତ ଦାୟିତ୍ୱ ସେ ନିଜେ ବହନ କଲେ । ମୋତେ ସାତଦିନ କାଳ ଗୋଟିଏ ଘରେ ଆବଦ୍ଧ କରି ଯେଉଁ ଚିକିତ୍ସା ଆରମ୍ଭ କଲେ, ତାହା ଏବେ ସୁଦ୍ଧା ମନରୁ ଯାଇନି । ତା ପୂର୍ବରୁ ଆମର ଚନ୍ଦ୍ରମଣ୍ଡଳକୁ ଫେରିଯିବାର ସମସ୍ତ ଯୋଜନା ଶେଷ ହୋଇଯାଇଥାଏ ।

ଯେଉଁଦିନ ଆବଦ୍ଧ କୋଠରିରୁ ମୁକ୍ତ ହେଲି, ଶାଙ୍ଗରିନା ମୋତେ ସ୍ୱାଗତ ଜଣାଇ କହିଲେ, ଏଥର ତୁମର ଚନ୍ଦ୍ରମଣ୍ଡଳ ଅଭିମୁଖେ ଯାତ୍ରା କରିବାର ସମସ୍ତ ପ୍ରତିବନ୍ଧକ ଦୂର ହେଲା ଉତ୍କଳାବର୍ତ୍ତି ! କାଲି ପ୍ରତ୍ୟୁଷରୁ ଆମେ ଚନ୍ଦ୍ରମଣ୍ଡଳ ଅଭିମୁଖେ ପ୍ରସ୍ଥାନ କରିବା । ମୁଁ ଜାଣେନା, ତୁମେ ଏଥିରେ ଦୁଃଖିତ ହେବ କି ଆନନ୍ଦିତ ହେବ । ଆମେ ପୃଥିବୀରୁ ବିଦାୟ ନେବାପର୍ଯ୍ୟନ୍ତ ତୁମେ ଆଉ କୌଣସି ପୃଥିବୀବାସୀଙ୍କ ସହିତ ମିଳିତ ହେବ ନାହିଁ । ତୁମକୁ କେବଳ ଆମରି ମେଳରେ ହିଁ ରହିବାକୁ ପଡ଼ିବ । ଶାଙ୍ଗରିନାଙ୍କ ପ୍ରସ୍ତାବରେ ଦୁଃଖ କରିବାର କିଛି ନ ଥିଲା; କାରଣ ଆଗରୁ କହିଛି ମୋର କୌଣସି ଆତ୍ମୀୟ ଆଖପାଖରେ ନ ଥିବାରୁ

ସେମାନଙ୍କଠାରୁ ଶେଷ ବିଦାୟ ନେବା ଦରକାର ନଥିଲା । ମୋର ଯେଉଁ କେତେଜଣ ଆତ୍ମୀୟ ଥିଲେ,ସେମାନେ ଏତେ ଦୂରରେ ଥିଲେ ଯେ ସେମାନଙ୍କଠାକୁ ଯାଇ ବିଦାୟ ନେବା ଆବଶ୍ୟକ ମନେକଲିନି । ମୁଁ ପୃଥିବୀ ଛାଡ଼ି ଯାଉଛି ବୋଲି ଦୁଃଖ କରିବାକୁ ମୋର ନିଜର ବୋଲି କେହି ପୃଥିବୀରେ ନ ଥିଲେ; ତେଣୁ ମୋର ବା ଦୁଃଖ ଆସିବ କାହିଁକି ?

## ଆଠ

ପୃଥିବୀ ଛାଡ଼ିବା ଦିନ ପ୍ରତ୍ୟୁଷରୁ ରାଷ୍ଟ୍ରଦୂତ କେବଲପ୍ରାସ୍ତ, ଶାଙ୍ଗରିନା ଓ ମୁଁ ପ୍ରାତଃ-ଭୋଜନ ଶେଷ କରି ମହାଶୂନ୍ୟଯାନ ଆଡ଼କୁ ଗଲୁ । ଯାତ୍ରା କଲାବେଳେ ବସିବା ପାଇଁ ମହାଶୂନ୍ୟଯାନ ଭିତରେ ଆମ ପାଇଁ କୋଠରି ନିର୍ଦ୍ଦିଷ୍ଟ ହୋଇଥାଏ । ସାଙ୍ଗରେ ନେବାପାଇଁ ଆମେ ଅଳ୍ପ କିଛି ଜିନିଷପତ୍ର ଏଥିପୂର୍ବରୁ ଯାନ ଭିତରକୁ ପଠାଇଦେଇଥିଲୁ । ବହୁ ପୂର୍ବରୁ ମହେନ୍ଦୋଦାରୋର ନଗରପାଳକଙ୍କ ସହିତ ଆମର ଦେଣା-ପାଉଣା ନେଇ ସବୁ ହିସାବ ତୁଟାଇ ଦିଆଯାଇଥାଏ ।

ଆମେ ଯାଇ ମହାଶୂନ୍ୟଯାନର ଏକ କୋଠରିରେ ବସିଛୁ କି ନାହିଁ, ଶାଙ୍ଗରିନା କହିଲେ—ତୁମେ ଜାଣିନ ଉତ୍କଳାବନ୍ତି ! ଆମର ଏହି ଯାତ୍ରା ପାଇଁ ତିନିଘଣ୍ଟାରୁ ଅଧିକ ସମୟ ଲାଗିବନି । ଆମ ମହାଶୂନ୍ୟଯାନର ବେଗ ହେଉଛି ଘଣ୍ଟାକୁ ଅଶୀହଜାର ମାଇଲ । ଏହା ହେଉଛି ଆମ ଚନ୍ଦ୍ରଲୋକର ସବୁଠାରୁ ନ୍ୟୂନତମ ବେଗବିଶିଷ୍ଟ ଯାନ । ଆମେ ମଧ୍ୟାହ୍ନ ପୂର୍ବରୁ ଚନ୍ଦ୍ରମଣ୍ଡଳରେ ପହଞ୍ଚି ଯାଇପାରିବା । ଏହାଠାରୁ ଆହୁରି ବହୁ ଶକ୍ତିଶାଳୀ ମହାଶୂନ୍ୟଯାନ ଚନ୍ଦ୍ରରେ ରହିଛି । ସେସବୁ ଆମର ଦୂରଦୂରାନ୍ତର ଅଭିଯାନ ପାଇଁ ବ୍ୟବହୃତ ହେଉଛି । ପୃଥିବୀ ଆମର ଏତେ ନିକଟବର୍ତ୍ତୀ ଯେ ଏଠାକୁ ଆସିବା ପାଇଁ ସେସବୁ ଯାନର ଆବଶ୍ୟକତା ଆମେ ଅନୁଭବ କରୁନୁ ।

ମହାଶୂନ୍ୟଯାନ ଛାଡ଼ିବା କିଛି ସମୟ ପୂର୍ବରୁ କେବଲପ୍ରାସ୍ତ ମୁଁ ଶାଙ୍ଗରିନା ବସିଥିବା କୋଠରି ଭିତରକୁ ଆସିଲେ । ଆମ ପରମାଣୁଯାନର ଚାଳକ ହେଉଛନ୍ତି ସ୍ୱୟଂକେବଲପ୍ରାସ୍ତ । ପୃଥିବୀପୃଷ୍ଠରୁ ମହାଶୂନ୍ୟଯାନକୁ ଉଠାଇ ନେଇ ମହାକାଶ ଭିତରେ ଚନ୍ଦ୍ରାଭିମୁଖୀ କରାଇ ସେ ପୁଣି ଆମ କୋଠରିକୁ ଫେରିଆସିବେ । ଠିକ୍ ହୋଇଥାଏ, ସୂର୍ଯ୍ୟ ଚକ୍ରବାଳରେ ଦେଖା-ଦେଲାକ୍ଷଣି ମହାକାଶ ପୃଥିବୀ ଛାଡ଼ି ଚନ୍ଦ୍ରାଭିମୁଖେ ଧାବମାନ ହେବ ।

ଆମଠାରୁ ସାମୟିକ ବିଦାୟ ନେବା ପୂର୍ବରୁ କେବଲପ୍ରାସ୍ତ ଶାଙ୍ଗରିନାଙ୍କୁ କହିଲେ—ମୁଁ ଇଞ୍ଜିନ୍ କକ୍ଷକୁ ଯାଉଛି । ମହାକାଶଯାନ ପୃଥିବୀ ଛାଡ଼ିବା ସମୟରେ ଯେଉଁସବୁ ସାବଧାନତା ଅବଲମ୍ବନ କରିବା କଥା, ଦେଖିବ ସେସବୁ ଯେମିତି ଉତ୍କଳାବନ୍ତି ପାଳନ କରନ୍ତି । ତାଙ୍କର

ତ ମହାଶୂନ୍ୟ ଭ୍ରମଣ ଅଭିଜ୍ଞତା ନାହିଁ; ତେଣୁ ସେସବୁର ଦାୟିତ୍ୱ ତୁମକୁ ବହନ କରିବାକୁ ପଡ଼ିବ ।

ମୁଁ ଆଉ ଶାଙ୍ଗରିନା ମହାଶୂନ୍ୟଯାନର କକ୍ଷ ଭିତରେ ବସି ଗବାକ୍ଷ ଦେଇ ପ୍ରାଚୀ ଦିଗବଳୟଆଡ଼େ ଅନେଇ ରହିଥାଉଁ । ଦିଗ୍‌ବଳୟର ବର୍ଣ୍ଣ ଧୀରେ ଧୀରେ ବଦଳିବାକୁ ଲାଗିଲା । ରକ୍ତବର୍ଣ୍ଣର ଆଭାରେ ପୂର୍ବାକାଶର ଦିଗ୍‌ବଳୟ ଝଟକି ଉଠିଲା ।

ମୁଁ ଲକ୍ଷ୍ୟ କଲି, ଶାଙ୍ଗରିନା ମଧ୍ୟ ଚକ୍ରବାଳ ଆଡ଼କୁ ଅନାଇ ଉଷାର ସେହି ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହେଲା ଭଳି ଜଣାପଡ଼ୁଥାନ୍ତି । ପୂର୍ବ । ଦିଗ୍‌ବଳୟକୁ ଦୃଷ୍ଟି ରଖି ସେ କହିଲେ—ପୃଥିବୀରେ ଏହି ସୂର୍ଯ୍ୟୋଦୟ ଓ ଏହାରି ଭଳି ସୁନ୍ଦର ସୂର୍ଯ୍ୟାସ୍ତ ମୋତେ ଭାରି ଭଲଲାଗେ ଉତ୍କଳାବର୍ତ୍ତି ! ଦେଖୁଛ, କି ସୁନ୍ଦର ସେ ପ୍ରାଚୀ ଦିଗ୍‌ବଳୟର ସୌନ୍ଦର୍ଯ୍ୟ ! ଯେଉଁ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ସୌନ୍ଦର୍ଯ୍ୟ ତୁମେ ପ୍ରତିଦିନ ଉପଭୋଗ କର, ସେମିତି ସୁଯୋଗ ଆମକୁ ଚନ୍ଦ୍ରଲୋକରେ ସବୁଦିନ ମିଳେନି । ଚନ୍ଦ୍ରଲୋକରେ ଏହି ସୂର୍ଯ୍ୟୋଦୟ ହୁଏ ମାସକରେ ମାତ୍ର ଥରେ । ସୂର୍ଯ୍ୟାସ୍ତ ବି ହୁଏ ଥରେ । ଆମେ ସେଠି ମାସକରେ ଥରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଦେଖିବାର ସୁଯୋଗ ପାଉଥିବାରୁ ତୁମ ଭଳି ସୌନ୍ଦର୍ଯ୍ୟ ଉପଭୋଗର ସୁଯୋଗ ପାଇବା ଆମ ପକ୍ଷରେ ସ୍ୱପ୍ନ । ବାସ୍ତବିକ ପୃଥିବୀର ଲୋକେ ଏ ଦୃଷ୍ଟିରୁ ଭାଗ୍ୟବାନ୍ । ଆମର ବଡ଼ ଆଶା, ଚନ୍ଦ୍ରଲୋକରେ ପୃଥିବୀର ଅବସ୍ଥା ସୃଷ୍ଟି କରାଯାଆନ୍ତା କି ! ମାସକ ଭିତରେ ପନ୍ଦରଦିନଧରି ଘନ ଅନ୍ଧକାର ଓ ପନ୍ଦରଦିନ ସୂର୍ଯ୍ୟାଲୋକ ଭିତରେ ରହି ରହି ଆମେ ଅତିଷ୍ଠ ହୋଇପଡ଼ୁ; କିନ୍ତୁ ଉପାୟ ନାହିଁ । ପ୍ରକୃତିକୁ ବଦଳାଇବାର ଚେଷ୍ଟା ସେତେ ସହଜ ନୁହେଁ ।

—ଚନ୍ଦ୍ରଲୋକରେ ପୃଥିବୀର ଅବସ୍ଥା ସୃଷ୍ଟି କରିବା ପାଇଁ, ବିଶେଷତଃ ପୃଥିବୀ ଭଳି ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସୃଷ୍ଟି କରିବା ପାଇଁ ଯେ ଚେଷ୍ଟା ନ ଚାଲିଛି, ତା ନୁହେଁ । ଆମ ଉପଗ୍ରହର କକ୍ଷ ଚାରିପାଖରେ ଘୂର୍ଣ୍ଣନକୁ ଯଦି ପନ୍ଦରଗୁଣ ବେଗଶାଳୀ କରାଯାଇପାରିଥାନ୍ତା, ତେବେ ଆମର ମଧ୍ୟ ଚନ୍ଦ୍ରଲୋକରେ ପୃଥିବୀଭଳି ପ୍ରତିଦିନ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ହୋଇ-ପାରନ୍ତା । ଆମେ ଚନ୍ଦ୍ରଲୋକ ଛାଡ଼ିଲାବେଳେ ସେହିଭଳି ଏକ ଯୋଜନାର ବିଚାର ଚାଲିଥିଲା । କିନ୍ତୁ ସେଗୁଡ଼ିକ କେତେ ଦୂର କାର୍ଯ୍ୟକାରୀ ହେଲାଣି, ଆମେ ଜାଣିନାହୁଁ । ଚନ୍ଦ୍ରଲୋକରେ ମଣିଷ-ବସତି ଦିନକୁ ଦିନ କଷ୍ଟକର ହୋଇପଡ଼ୁଥିବାରୁ ତାହା ପ୍ରତି ଆମ ଲୋକଙ୍କର ମମତା ଧୀରେ ଧୀରେ କମିଆସୁଛି । ଆମର ଲୋକେ ଯେତେବେଳେ ଅନ୍ୟ ଗ୍ରହ-ଉପଗ୍ରହରେ ବସବାସ ପାଇଁ ସ୍ଥାନ ଖୋଜୁଛନ୍ତି, ସେତେବେଳେ ଚନ୍ଦ୍ରର ଆବର୍ତ୍ତନର ପରିବର୍ତ୍ତନ ପାଇଁ ଲାଳାୟିତ ଥିବେ କି କଣ ସନ୍ଦେହ ହେଉଛି ।

ଶାଙ୍ଗରିନା ମୋତେ ଚନ୍ଦ୍ରଲୋକର ଅବସ୍ଥା କଥା ବୁଝାଇଚାଲିଛନ୍ତି, ହଠାତ୍ ଆମ ମହାକାଶଯାନ ଛାଡ଼ିବାର ପ୍ରଥମ ସଙ୍କେତ ଦିଆଗଲା । ଝରକା ଦେଇ ଲକ୍ଷ୍ୟ କଲି, ପ୍ରାଚୀ ଦିଗ୍‌ବଳୟରେ ସୂର୍ଯ୍ୟ ଠିକ୍ ଉଦୟ ହେବା ଉପରେ । କିଛି ସମୟ ପରେ ଦ୍ୱିତୀୟ ସଙ୍କେତର

ଧ୍ୱନି । ପର ମୁହୂର୍ତ୍ତରେ ଆମ କକ୍ଷର ଲାଉଡ୍‌ସ୍ପିକର୍‌ରେ ଗୁଞ୍ଜରି ଉଠିଲା କେବଲପ୍ରାସ୍ୱଙ୍କ ସ୍ୱର ।

—ଦେଖ୍ ଶାଙ୍ଗ୍ ! ଆମ ଯାନ ବର୍ତ୍ତମାନ ପୃଥିବୀ ଛାଡ଼ିବା ଉପରେ । ପୃଥିବୀ ଛାଡ଼ିବା ସମୟରେ ଯେଉଁସବୁ ସାବଧାନତା ଅବଲମ୍ବନ କରିବା କଥା ତୁମକୁ କହିଆସିଥିଲି, ତୁମେ ସେଗୁଡ଼ିକ ନିଶ୍ଚୟ ବିସ୍ମୃତ ହୋଇନାହଁ । ଉତ୍କଳାବର୍ତ୍ତିଙ୍କୁ ସେ ସମ୍ପର୍କରେ ଯାହା ଉପଦେଶ ଦେବା କଥା; ତୁମେ ଦେଇଥିବ ବୋଲି ଆଶା । ନଜର ରଖିଥିବ,ପୃଥିବୀ ଛାଡ଼ିବା ସମୟରେ ଉତ୍କଳାବର୍ତ୍ତିଙ୍କର ଯେମିତି କିଛି ଅସୁବିଧା ନହୁଏ ।

ରାଷ୍ଟ୍ରଦୂତ କେବଲପ୍ରାସ୍ୱ ଏତକ କହିସାରିଛନ୍ତି କି ନାହିଁ, ହଠାତ୍ ତୃତୀୟ ସଙ୍କେତର ମୃଦୁ ଧ୍ୱନି ଆମ କକ୍ଷରେ ଗୁଞ୍ଜରି ଉଠିଲା । ଗଗନଭେଦୀ ଏକ ବିରାଟ କର୍କଶ ଶବ୍ଦ କରି ଆମ ମହାଶୂନ୍ୟଯାନ ଉପରକୁ ଉଠିବାକୁ ଉପକ୍ରମ କଲା । ଝରକା ଦେଇ ଲକ୍ଷ୍ୟ କଲି, ସୂର୍ଯ୍ୟ ଠିକ୍ ଚକ୍ରବାଳ ଉପରକୁ ଉଠିଆସୁଛନ୍ତି । ଦୂରଆଡ଼ ବାଳସୂର୍ଯ୍ୟଙ୍କର ସୁନେଲି କିରଣରେ ଉଦ୍‌ଭାସିତ ହୋଇଉଠୁଛି । ଆଖିଆଗରେ କଳ୍ପନାର ଏକ ସୁନେଲି ସ୍ୱପ୍ନପୁରୀ ସୃଷ୍ଟି ହେଲା । ଯାନଟି ଉଠିଲାବେଳେ ବେଶ୍ ଆମୋଦଜନକ ଲାଗୁଥାଏ । ଧୀରେ ଧୀରେ ଆଖପାଖ ସ୍ଥାନ, ବଣ, ସିନ୍ଧୁନଦୀ ଓ ତାର ଆରପାଖରେ ଥିବା ଚୂନଧବଳିତ ମହେଞ୍ଜୋଦାରୋ ସହରକୁ ତଳେ ପକାଇଦେଇ ଆମ ଯାନ ଉପରକୁ ଉପରକୁ ଉଠୁଥାଏ । ଗବାକ୍ଷ ଦେଇ ମହେଞ୍ଜୋଦାରୋ ସହରଟି ବେଶ୍ ସୁନ୍ଦର ଦିଶୁଥାଏ । ଆକାଶରୁ ସହରଟି ବାସ୍ତବିକ କେଡ଼େ ସୁନ୍ଦର ! ଦେଖି ଚମତ୍କୃତ ହେଲି । ମହେଞ୍ଜୋଦାରୋ ସହର କେବେ ତ ମୋତେ ଏତେ ସୁନ୍ଦର ଦିଶୁ ନଥିଲା !

ମହେଞ୍ଜୋଦାରୋ ସହର କଥା ଭାବିବସିଲିଛି, ଲକ୍ଷ୍ୟ କଲି ସହରଟି ମୋ ଆଖିକୁ ଅସ୍ପଷ୍ଟରୁ ଅସ୍ପଷ୍ଟତର ହେବାକୁ ଲାଗିଲା । ଧୀରେ ଧୀରେ ଅଳ୍ପ କିଛି ସମୟ ପରେ ଏହା ପୂରାପୂରି ଅଦୃଶ୍ୟ ହୋଇଗଲା । ସେଥି ସହ ଦୂର ପର୍ବତ,ବଣ,ସବୁ କିଛି ଅସ୍ପଷ୍ଟ ହୋଇଉଠୁଥାଏ । କ୍ରମେ କ୍ରମେ ଯାନର ବେଗ ପ୍ରବଳ ହେବାର ଲାଗିଲା । କକ୍ଷର ଆରପାଖରେ ବସି ଶାଙ୍ଗରନା ମୋତେ ହସି ହସି ପଚାରୁଥାନ୍ତି—ତୁମର ତ କିଛି ଅସୁବିଧା ହେଉନାହିଁ, ଉତ୍କଳାବର୍ତ୍ତି ? ବୋଧହୁଏ ଆଗ ଆପେକ୍ଷା ଟିକିଏ ଅଧିକ ଅସ୍ୱସ୍ତି ଲାଗୁଥିବ ତୁମକୁ । ହେଲେ ଏହି ଅବସ୍ଥା ଆଉ ବେଶି ସମୟ ରହିବ ନାହିଁ । ମହାକାଶ ଭ୍ରମଣ ସହିତ ପରିଚିତ ଥିଲେ, ତୁମେ ଏ ଅବସ୍ଥାକୁ ସହଜରେ ଏଡ଼ାଇଦେଇ ପାରନ୍ତ । ଆମ ଯାନ ବର୍ତ୍ତମାନ ପୃଥିବୀର ମାଧ୍ୟାକର୍ଷଣକୁ ଏଡ଼ି ମହାଶୂନ୍ୟ ଭିତରକୁ ପଶିଯାଉଥିବାରୁ ପୃଥିବୀ ଓ ଯାନ ଭିତରେ ଶେଷ ଟଣାଟଣିର ଏ ପ୍ରଭାବ । ଛାତି ଉପରେ ଟିକିଏ ଚାପ ଅନୁଭବ କରୁଥିବ ବୋଧହୁଏ । ତା'ଛଡ଼ା ଆମ ଯାନ ବର୍ତ୍ତମାନ ତାର ନିର୍ଦ୍ଧାରିତ ବେଗ ଘଣ୍ଟାକୁ ଅଶୀହଜାର ମାଇଲ ହାସଲ କରିବାକୁ ଯାଉଛି ବୋଲି ଆଉ ଟିକିଏ ଅସ୍ୱସ୍ତି ଲାଗୁଥିବ । ମହାଶୂନ୍ୟ ଭିତରକୁ ପୂରାପୂରି ପଶିଗଲେ, ଏ ଅସ୍ୱସ୍ତି ଆଉ ରହିବ ନାହିଁ ।

"ନା, ମୋତେ ବିଶେଷ କଷ୍ଟ ଲାଗୁନି । ଛାତି ଉପରେ ଟିକିଏ ଚାପା ରହିଲା ଭଳି ଲାଗୁଛି; ନିଃଶ୍ୱାସପ୍ରଶ୍ୱାସକ୍ରିୟାରେ ଟିକିଏ କଷ୍ଟ ଲାଗୁଛି । ତା ବ୍ୟତୀତ ଆଉ କିଛି ନାହିଁ ।" —ଉତ୍ତର ଦେଲି ।

ମୋ କଥା ଶୁଣି ଶାର୍ଙ୍ଗରଞ୍ଜନ ତାଙ୍କ ଆସନରୁ ଉଠିଆସିଲେ । ପ୍ରକୋଷ୍ଠର ଗୋଟିଏ କୋଣରେ ଝୁଲୁଥିବା କ'ଣ ଏକ ଯନ୍ତ୍ର ଆଣି ମୋ ମୁହଁ ଉପରେ ଲଗାଇଦେଇ ଆଉ ଏକ ଯନ୍ତ୍ର ଆଣି ମୋ ଛାତି ଉପରେ ଥୋଇଦେଲେ । ଅନୁଭବ କଲି, ଏହା କରିଦେବା ସଙ୍ଗେ ସଙ୍ଗେ ମୋର ଯେମିତି ସବୁ କଷ୍ଟ ଓ ଅସୁବିଧା ଆଖିପିଛୁଳାକେ କୁଆଡ଼େ ଉଭେଇଗଲା ।

ଯନ୍ତ୍ରଟି ଲଗାଇଦେଇ ଶାର୍ଙ୍ଗରଞ୍ଜନ ମୋ ପାଖ ଚେୟାରରେ ବସିପଡ଼ିଲେ । ପଚାରିଲେ— ଏଥର ତମକୁ କେମିତି ଲାଗୁଛି ଉତ୍କଳାବର୍ତ୍ତି ? ଆଉ କିଛି କଷ୍ଟ ଲାଗୁ ନଥିବ ବୋଧହୁଏ ?

ଶାର୍ଙ୍ଗରଞ୍ଜନଙ୍କୁ କୃତଜ୍ଞତା ଜଣାଇବା ପାଇଁ ସେତେବେଳେ ମୋ ପାଖିରେ ଭାଷା ନଥିଲା; ଖାଲି ତାଙ୍କ ଆଡ଼କୁ ଅନାଇ ଆଖିର ନୀରବ ଭାଷାରେ ମୋ ହୃଦୟର କୃତଜ୍ଞତା ଜଣାଇଲି । ସେତେବେଳକୁ ଶାର୍ଙ୍ଗରଞ୍ଜନ ମୋତେ ଅନାଇ ରହିଥିଲେ । ମୁଁ ମଧ ତାଙ୍କୁ ଅନାଇ ରହିଥିଲି । ମନ ମୋର ଶାର୍ଙ୍ଗରଞ୍ଜନଙ୍କର କମନୀୟ ରୂପ ଉପଭୋଗରେ ମଜ୍ଜି ଯାଇଥିଲା । ମନେ ମନେ ଭାବୁଥିଲି—ଆଃ, ଶାର୍ଙ୍ଗରଞ୍ଜନ ବାସ୍ତବିକ କେଡ଼େ ସୁନ୍ଦର ନୁହଁନ୍ତି ? ଶାର୍ଙ୍ଗରଞ୍ଜନଙ୍କୁ ତ ମୁଁ ଏଁତେଥର ଦେଖିଛି; କାହିଁ ସେ ତ କେଉଁ ଦିନ ମୋ ଆଖିକୁ ଏତେ ଲୋଭନୀୟ ଦିଶୁ ନଥିଲେ ! ଶାର୍ଙ୍ଗରଞ୍ଜନ ଖାଲି ସୁନ୍ଦରଶ୍ରୀ, ନା ଚନ୍ଦ୍ରଲୋକର ସ୍ତ୍ରୀଲୋକ ମାନେ ହିଁ ଏତେ ସୁନ୍ଦରଶ୍ରୀ ? ପୃଥିବୀବାସୀ ଯାହା କହନ୍ତି—ସ୍ୱର୍ଗର ପରୀ ଝିଅ ! ଚନ୍ଦ୍ରଲୋକ ତା ହେଲେ କଣ ସେଇ !

ଶାର୍ଙ୍ଗରଞ୍ଜନଙ୍କୁ ଯେତେ ଦେଖିଲି, ସେ ମୋତେ ବେଳକୁବେଳ ଆହୁରି ସୁନ୍ଦର ଦିଶିବାକୁ ଲାଗିଲେ । ସତେ ଯେମିତି ଶାର୍ଙ୍ଗରଞ୍ଜନଙ୍କ ସୌନ୍ଦର୍ଯ୍ୟ ଭିତରେ ମୁଁ ଦେଖୁଥିଲି ଆଉ କିଛି ।

ତାଙ୍କର ମୁଖ, ଆଖି, ଅଧର, ଦେହର ସମସ୍ତ ଅବୟବ ମୋତେ ବେଳକୁବେଳ ଅଧିକ ସୁନ୍ଦର ଦିଶିଲା । ଶାର୍ଙ୍ଗରଞ୍ଜନ ମୋତେ ଅନାଇ କଣ ଭାବୁଥିଲେ, ହଠାତ୍ ଚମକି ଉଠି କହିଲେ—"ଏଥର ବୋଧହୁଏ ଆମ ଯାନ ପୃଥିବୀର ମାଧ୍ୟାକର୍ଷଣ ପ୍ରଭାବରୁ ପୂରାପୂରି ମୁକ୍ତ ହୋଇଗଲା । ଆଉ ବୋଧହୁଏ ଏ ଯନ୍ତ୍ରର ଆବଶ୍ୟକତା ପଡ଼ିବ ନାହିଁ ଏଥର । ଏ ଅଭିଯାନରେ ତୁମର ବଡ଼ ଅସୁବିଧା ହେଉଥିବ ଉତ୍କଳାବର୍ତ୍ତି ।" ପଚାରିଲାବେଳେ ଶାର୍ଙ୍ଗରଞ୍ଜନଙ୍କ ମୁଖରେ ଅପୂର୍ବ ହସର ମୃଦୁ ଢେଉ ।

—କିନ୍ତୁ ତୁମେ ଥାଉଁ ଥାଉଁ ଆଉ ମୋର କି କଷ୍ଟ ହେବ ଶାର୍ଙ୍ଗରଞ୍ଜନ ସେତିକି ବିଶ୍ୱାସ ଅନ୍ତତଃ ମୋର ତ ଅଛି ତୁମ ଉପରେ ।

—ତୁମର କଥାବାର୍ତ୍ତାରେ ତ ଢେର୍ ପରିବର୍ତ୍ତନ ଦେଖୁଛି ଉତ୍କଳାବର୍ତ୍ତି ! ଯା ହେଉ ଧୀରେ ଧୀରେ ତୁମେ ପୃଥିବୀର ଉତ୍କଳାବର୍ତ୍ତିରୁ ଚନ୍ଦ୍ରଲୋକର ଉତ୍କଳାବର୍ତ୍ତିକୁ ରୂପାନ୍ତରିତ ହେଉଛ ଏ ମହାଶୂନ୍ୟ ଭିତରେ । ତୁମେ ଚନ୍ଦ୍ରଲୋକରେ ପହଞ୍ଚିଲାବେଳକୁ ଆଉ ବୋଧହୁଏ

ପୃଥିବୀର ଉଜ୍ଜ୍ୱଳାବର୍ତ୍ତି ହୋଇ ନଥିବ !

ସେତିକବେଳେ ହଠାତ୍ ଲାଉଡ୍‌ସ୍ପିକରରେ ଶୁଭିଲା—ଏଥର ଆମେ ପୃଥିବୀର ମାଧ୍ୟାକର୍ଷଣ ପ୍ରଭାବରୁ ମୁକ୍ତ ହୋଇଗଲେ, ଶାର୍ଙ୍ଗରନା ! ଏବେ ଆମ ମହାଶୂନ୍ୟଯାନ ବେଶ ନିର୍ବିଘ୍ନରେ ଚାଲିବ ମହାଶୂନ୍ୟ ଭିତରେ ଆମ ଉପଗ୍ରହ ଅଭିମୁଖେ । ବର୍ତ୍ତମାନ ତୁମେସବୁ ବିନା ଦ୍ୱିଧାରେ କକ୍ଷ ଭିତରେ ଚଲାବୁଲା କରିପାର । ତୁମମାନଙ୍କ ସହିତ ଯୋଗଦେବାପାଇଁ ମୁଁ ଏଇ ଯାଉଛି ।

ଲାଉଡ୍‌ସ୍ପିକରରୁ କଥା ସରିଛି କି ନାହିଁ, ପଛ ଦୁଆର ଖୋଲି କୋଠରି ଭିତରକୁ ପଶିଆସିଲେ କେବଳପ୍ରାପ୍ୟ; ମୁହଁରେ ତାଙ୍କର କୃତକାର୍ଯ୍ୟତାର ଛାପ । କକ୍ଷଭିତରକୁ ପଶି ଆସୁଁ ଆସୁଁ ସେ କହିଲେ—"ତୁମେ କେମିତି ଅଛ ଉଜ୍ଜ୍ୱଳାବର୍ତ୍ତି ! ଯାତ୍ରା ଆରମ୍ଭବେଳେ ତୁମର କିଛି ଅସୁବିଧା ହୋଇନାହିଁ ତ ? ମୋର ବଡ଼ ଭୟ ଥିଲା, ତୁମେ ତ ଏମିତି ଅଭିଯାନ ସହିତ ମୋଟେ ଅଭ୍ୟସ୍ତ ନୁହଁ, କାଳେ ଏହାର ପ୍ରଭାବ ତୁମ ଉପରେ ପଡ଼ି ତୁମକୁ ବଡ଼ କଷ୍ଟ ଦେଇଥିବ । ତୁମକୁ ଯେମିତି ଅଧିକ କଷ୍ଟ ନ ହୁଏ,ତୁମ ପ୍ରତି ଅଧିକ ନଜର ଦେବାପାଇଁ ଶାର୍ଙ୍ଗରନାକୁ ତାଗିଦ୍ କରିଦେଇ ଯାଇଥିଲି । ଶାର୍ଙ୍ଗରନା ନିଶ୍ଚୟ ତୁମର ସମସ୍ତ ଯତ୍ନ ନେଇଥିବେ ।" ପୁଣି ଶାର୍ଙ୍ଗରନା ଆଡ଼କୁ ଅନାଇ କହିଲେ—କଣ ଉଜ୍ଜ୍ୱଳାବର୍ତ୍ତିଙ୍କୁ ବିଶେଷ କଷ୍ଟ ହୋଇଛି ଶାର୍ଙ୍ଗ୍ ?

ଶାର୍ଙ୍ଗରନା ହସି ହସି କହିଲେ—ଦେଖୁନ, ତାଙ୍କ ମୁହଁ ଉପରେ ସେ ଯନ୍ତ୍ର, ଛାତି ଉପରେ ସେହି ମେସେଜର୍ ଯନ୍ତ୍ରଟି ନଥିଲେ, ସେ ବୋଧହୁଏ ଯନ୍ତ୍ରଣାରେ ଛାଟିପିଟି ହେଉଥାନ୍ତେ । ବାଃ, ଯା ହେଉ, ଭଲ ଉପାୟରେ ଉଜ୍ଜ୍ୱଳାବର୍ତ୍ତିଙ୍କ ଭଳି ଅନଭିଜ୍ଞ ମହାଶୂନ୍ୟଚାରୀଙ୍କୁ ଦକ୍ଷତାର ସହିତ ବିପଦସଂକୁଳ ସମୟ ପାରକରାଇ ଦେଇଛ ।—କହୁଁ କହୁଁ କେବଳପ୍ରାପ୍ୟ ନିଜେ ମୋ ମୁହଁ ଉପରୁ ସେହି ଯନ୍ତ୍ରଟି ଓ ଛାତି ଉପରୁ ଯାନ୍ତ୍ରିକ ମେସେଜର୍‌ଟିକୁ କାଢ଼ିଦେଇ କହିଲେ—ଏଥର ତୁମେ ପୂର୍ବପରି ସଳଖ ବସିପାର ଉଜ୍ଜ୍ୱଳାବର୍ତ୍ତି ! ଏତେ ସମୟ କାଳ ତୁମେ ଏମିତି ଅବସ୍ଥାରେ ପଡ଼ିରହି ତୁମର ଅଶେଷ ଧୈର୍ଯ୍ୟର ପ୍ରମାଣ ଦେଇଛ; ଏଥର ଆଉ ଭୟ ନାହିଁ । ତୁମେ ବର୍ତ୍ତମାନ କକ୍ଷ ଭିତରେ ନିଜ ଇଚ୍ଛା ମୁତାବକ ପଦଚାରଣ କରିପାର । କହୁଁ କହୁଁ ପାଖରେ ପଡ଼ିଥିବା ଚେୟାରରେ ବସିପଡ଼ିଲେ କେବଳପ୍ରାପ୍ୟ । ଶାର୍ଙ୍ଗରନାଙ୍କୁ ଲକ୍ଷ୍ୟ କରି ପଚାରିଲେ—ଆମ ଯାନର ବେଗ ବର୍ତ୍ତମାନ କେତେ ଶାର୍ଙ୍ଗରନା ?

—କାହିଁକି, ଏହା ତ ସେଇ ନିର୍ଦ୍ଧାରିତ ବେଗ···ଘଣ୍ଟାକୁ ଅଶୀହଜାର ମାଇଲ ହୋଇଥିବ ।

—ଉଁ ହୁଁ, ମୁଁ ସେଇଥିପାଇଁ ତୁମକୁ ପଚାରିଲି ବେଗ କଥା । ତୁମେ ବିଶ୍ୱାସକର ପାରିବନି ଶାର୍ଙ୍ଗ୍ ! ଆମ ଯାନ ବର୍ତ୍ତମାନ ଚାଲିଛି ଘଣ୍ଟାକୁ ଲକ୍ଷେ କୋଡ଼ିଏ ହଜାର ମାଇଲ ବେଗରେ ।

—ଏଁ, ଦେଢ଼ଗୁଣ ଅଧିକ? ବାଃ ଏଥର ବେଶ ବେଗ ନେଇଛି ଏ ଯାନ । ଗତଥର

ଚନ୍ଦ୍ରକୁ ଗଲାବେଳେ ଏହା କେମିତି ସତସ୍ତରି ହଜାର ମାଇଲ ବେଗରେ ଯାଇଥିଲା ଯେ, ଚନ୍ଦ୍ରରେ ପହଞ୍ଚୁ ପହଞ୍ଚୁ ଦେଖିଲନି, କେମିତି ଚାରିଘଣ୍ଟା ଲାଗିଗଲା ! ଏଥର ବେଶ୍ ଭଲ ହୋଇଛି । ଦୁଇଘଣ୍ଟା ଭିତରେ ଚନ୍ଦ୍ରଲୋକରେ ଆମେ ପହଞ୍ଚିଯିବା ।

—ହଁ, ସେହିପରି କିଛି । ଯେତେ ଶୀଘ୍ର ପହଞ୍ଚିପାରିଲେ, ସେତେ ଭଲ । ଏଥର ଟିକିଏ ସୁବିଧା ହୋଇଗଲା, ପୃଥିବୀର ବାୟୁମଣ୍ଡଳ ପାରହେଲାବେଳକୁ ଆମ ବେଗ ବେଶ୍ ଆଶାଜନକ ହୋଇଯାଇଥିଲା । ପୃଥିବୀର ମାଧ୍ୟାକର୍ଷଣ ପ୍ରଭାବରୁ ମୁକ୍ତହେଲାବେଳକୁ ଏହା ଘଣ୍ଟାକୁ ଲକ୍ଷେ କୋଡ଼ିଏ ହଜାର ମାଇଲ ବେଗ ପାଖାପାଖି ହେଉଥିଲା । ତେଣୁ ଆମର ସେଇ ବେଗ ହିଁ ମହାଶୂନ୍ୟ ଭିତରେ ରହିଗଲା । କିନ୍ତୁ ଗତଥର ଆମେ ପୃଥିବୀର ବାୟୁମଣ୍ଡଳ ଛାଡ଼ିଲାବେଳକୁ ଆମର ବେଗ ଆଶାଜନକ ହୋଇ ନଥିଲା । ତେଣୁ ପୃଥିବୀର ମାଧ୍ୟାକର୍ଷଣ ବଳକୁ ଅତିକ୍ରମ କଲାବେଳକୁ ଏହା ମୋଟେ ଘଣ୍ଟାକୁ ସତସ୍ତରି ହଜାର ମାଇଲ ବେଗରେ ପହଞ୍ଚିଥିଲା । ତେଣୁ ଆମର ସେଇ ବେଗ ମହାଶୂନ୍ୟରେ ରହିଯାଇଥିଲା । ତୁମେ ତ ଏଥର ନିଶ୍ଚୟ ସ୍ୱୀକାର କରିବ ଶାଙ୍ଗ୍, ମୁଁ ଜଣେ ସୁଦକ୍ଷ ମହାଶୂନ୍ୟଯାନଚାଳକ ?

—ହଁ, ତା ସ୍ୱୀକାର କରିବି କାଲେ ? ତୁମେ ମୋଠାରୁ ଦକ୍ଷ ଚାଳକ, ଏହା ସ୍ୱୀକାର କରିପାରେ; କିନ୍ତୁ ତୁମକୁ ସୁଦକ୍ଷ ଚାଳକ କହି ସୁଦକ୍ଷ ଚାଳକର ଗୌରବ ଦେବାକୁ ରାଜି ନୁହେଁ । କାରଣ ଏହା ଅନ୍ୟାୟ ହେବ । ତୁମକୁ ଯଦି ସୁଦକ୍ଷ ଚାଳକ କହିବି, ତେବେ ଯେଉଁମାନେ ଅନ୍ୟ ନକ୍ଷତ୍ର ଆଡ଼କୁ ଯାଉଛନ୍ତି, ସେକେଣ୍ଡକୁ ଯେଉଁମାନେ ଲକ୍ଷ ଲକ୍ଷ ମାଇଲ ବେଗରେ ଗତି କରୁଛନ୍ତି, ସେମାନଙ୍କୁ କଣ କୁହାଯିବ ତାହେଲେ ? ସୁଦକ୍ଷ ଚାଳକର ସୁନାମ ଏତେ ସହଜରେ ହାସଲ କରିବାକୁ ଚେଷ୍ଟା କରନି କେବଲପ୍ରାସ୍ଥ !

ହେଉ, ଛାଡ଼ ସେ କଥା ! ମୁଁ ଦକ୍ଷ ହୁଏ ବା ସୁଦକ୍ଷ ହୁଏ, ବର୍ତ୍ତମାନ ଆମ ଖାଇବା ବନ୍ଦୋବସ୍ତ କର ଶାଙ୍ଗରିନା ! ବଡ଼ ଭୋକ ହେଲଣି ମୋତେ । ଉକ୍ଳାବର୍ତ୍ତିଙ୍କୁ ବି ଢେର୍ ଭୋକ ଲାଗିବଣି । ଆସିଲାବେଳେ ନିଶ୍ଚୟ କିଛି ଖାଦ୍ୟ ପଦାର୍ଥ ଆଣିଥିବ ସାଙ୍ଗରେ ପୃଥିବୀରୁ ? ଉକ୍ଳାବର୍ତ୍ତିଙ୍କ ପାଇଁ କିଛି ଉତ୍ତେଜକ ପାନୀୟ ଏବେ ଦରକାର । ଦେଖୁନାହଁ, ସେ କେମିତି ନିଷ୍କ୍ରିୟଭାବରେ ତାଙ୍କ ଜାଗାରେ ପଡ଼ିରହିଛନ୍ତି ।

ଶାଙ୍ଗରିନା କିଛି ଗରମ ଉତ୍ତେଜକ ପାନୀୟ ତିଆରି କରିବାପାଇଁ କକ୍ଷକୁ ଲାଗିରହିଥିବା ଗ୍ରେଟ ରନ୍ଧନଶାଳାକୁ ଗଲେ । କିଛି ସମୟ ପରେ ପୃଥିବୀରୁ ତିଆରି କରି ଆଣିଥିବା କିଛି ଜଳଖିଆ ଓ ପାତ୍ରରେ କିଛି ଉଷ୍ମ ପାନୀୟ ଧରି ଆମ ପାଖେ ଆସି ହାଜର ହେଲେ । ଆମ ପାଖରେ ପଡ଼ିଥିବା ଟେବୁଲ ଉପରେ ଥୋଇଦେଇ, ମୋ ହାତକୁ ଓ କେବଲପ୍ରାସ୍ଥଙ୍କ ହାତକୁ ବଢ଼ାଇ ଦେଉଛନ୍ତି,କେବଲପ୍ରାସ୍ଥ କହିଲେ—ଦେଖ ଶାଙ୍ଗ୍ ! ମାଧ୍ୟାକର୍ଷଣ ଅଭାବରେ ଯେଉଁ ଅସୁବିଧା ଉପୁଜେ, ଉକ୍ଳାବର୍ତ୍ତିଙ୍କୁ ସେ କଥା ତ କହିନାହଁ । ତାଙ୍କର ତାହେଲେ ତ ମହାଶୂନ୍ୟ ଭିତରେ ବିରାଟ ଅନୁଭୂତିର ଅଭାବ ରହିଯିବ । ମହାଶୂନ୍ୟ ଭିତରେ ଲକ୍ଷ ଲକ୍ଷ ମାଇଲ ଗତି କରି ସେ ଜାଣିପାରିବେନି ଏଠାକାର ଅବସ୍ଥା । ତାହେଲେ ତାଙ୍କୁ

ମହାଶୂନ୍ୟର ପ୍ରକୃତ ରୂପ ଦେଇ ହେବନି । ଏଠାକାର କୃତ୍ରିମ ଅବସ୍ଥାରେ ରହି ସେ ଭାବୁଥିବେ—ପୃଥିବୀରେ ଯେଉଁ ଅନୁଭୂତ, ମହାଶୂନ୍ୟରେ ବି ସେଇଆ !

—ତୁମେ ଟିକିଏ ଗଲ ଶାର୍ଙ୍ଗଧରନା ଇଞ୍ଜିନ୍ ରୁମ୍‌କୁ, କୃତ୍ରିମ ମାଧ୍ୟାକର୍ଷଣ ସୃଷ୍ଟିକାରୀ ଯନ୍ତ୍ରଟିକୁ ଟିକିଏ ବନ୍ଦ କରି ଦେଇ ଆସିବ । ଉତ୍କଳାବର୍ତ୍ତି ନିଜେ ଅନୁଭବ କରନ୍ତୁ, ମାଧ୍ୟାକର୍ଷଣ ଅଭାବରେ କି ଅସୁବିଧା ଉପୁଜେ ।

କେବଳପ୍ରାପ୍ତ ଶାର୍ଙ୍ଗଧରନାଙ୍କୁ କଣ କହୁଥାନ୍ତି, ମୁଁ ତାର ଅର୍ଥ ବୁଝିପାରୁ ନଥାଏ । ମାଧ୍ୟାକର୍ଷଣ କଣ, କୃତ୍ରିମ ମାଧ୍ୟାକର୍ଷଣ-ସୃଷ୍ଟିକାରୀ ଯନ୍ତ୍ର କଣ, ତାହା ମୋ ପାଇଁ ସମ୍ପୂର୍ଣ୍ଣ ଅବୋଧ ।

ଶାର୍ଙ୍ଗଧରନା ଇଞ୍ଜିନ୍ ଗୃହକୁ ଯାଇ ଯନ୍ତ୍ରଟିକୁ ବନ୍ଦ କରିଦେଇ ଆସୁଛନ୍ତି, ଆଉ ଆସି ନ ପାରି ପାଟି କରି ଉଠିଲେ—କେତେବଡ଼ ଭୁଲଟାଏ କରିପକାଇଲି କେବଳପ୍ରାପ୍ତ ! ଚୁମ୍ବକ ହିଲ୍ ଲଗା ଜୋତା ନ ପିନ୍ଧି ମୁଁ କଳଟା ବନ୍ଦ କରିଦେଲି କେମିତି ? ଏଇ କଥା କେଇ ପଦ କହିଲାବେଳକୁ ଶାର୍ଙ୍ଗଧରନାଙ୍କ ପାଦ ଆଉ କକ୍ଷର ଚଟାଣରେ ନ ଥାଏ । ସେ ଏକାରକମ ଭାସିବା ଉପରେ—ନାଁ ସେ ଇଞ୍ଜିନ୍ ରୁମକୁ ଯାଇପାରୁଛନ୍ତି, ନାଁ କେବଳପ୍ରାପ୍ତଙ୍କ ନିକଟକୁ ଆସିପାରୁଛନ୍ତି !

ଚେୟାର ଉପରେ ବସି କେବଳପ୍ରାପ୍ତ କହିଲେ—ମହାଶୂନ୍ୟରେ ଏତେଥର ଯିବା-ଆସିବା ପରେ, ତୁମେ ଏମିତି ଭୁଲ କରିବ ବୋଲି ମୁଁ ଆଶା କରି ନଥିଲି ଶାର୍ଙ୍ଗଧରନା ! ସେମିତି ଭୁଲ ଉତ୍କଳାବର୍ତ୍ତି କରିବାର ସମ୍ଭାବନା ଥିଲା; ଶେଷରେ ତୁମେ ସେପରି ଭୁଲ କଲ ?

—ମୋର ସେ ଆଡ଼କୁ ମୋଟେ ଖିଆଲ ନାହିଁ; ତୁମେ ମୋତେ ଟିକିଏ ମନେକରାଇ ଦେଲନାହିଁ ।

ହେଉ, ଉତ୍କଳାବର୍ତ୍ତି ଟିକିଏ ଗଲ, ଶାର୍ଙ୍ଗଧରନାଙ୍କୁ ଧରି ଏଠାକୁ ନେଇ ଆସିବ ।—କେବଳପ୍ରାପ୍ତ ମୋତେ କହିଲେ ।

ମୁଁ କିଛି ନବୁଝିଲାପରି ହଠାତ୍ ଚେଆରରୁ ଉଠିପଡ଼ିଲି । ମୁଁ ଶାର୍ଙ୍ଗଧରନାଙ୍କ ପାଖକୁ ଯିବି କଣ, ଯାଇ କକ୍ଷର ଛାତ ପାଖରେ ପୂରାପୂରି ଭାସିବାକୁ ଲାଗିଲି—ଠିକ୍ ଯେମିତି ମାଛ ପାଣିରେ ପହଁରି ବୁଲେ । ଶାର୍ଙ୍ଗଧରନା ମଧ୍ୟ ଇଞ୍ଜିନ୍ ରୁମ୍‌ର ଦ୍ୱାର ପାଖରେ ଭାସୁଥାଆନ୍ତି । ମୁଁ ଯେତେ ଚେଷ୍ଟାକଲି କେମିତି ତଳକୁ ଖସିଆସିବି, ଆଉ ହେଲାନାହିଁ । ପହଁରିଲାଭଳି ହାତଗୋଡ଼ ପିଟି ସେହି ବାୟୁରେ ଯେତେ ପହଁରିଲେ ମଧ୍ୟ ତଳକୁ ଆସି ପାରିଲି ନାହିଁ । ନିଜର ଅସହାୟ ଅବସ୍ଥା ଦେଖି ସାହାଯ୍ୟ ପାଇଁ କେବଳପ୍ରାପ୍ତଙ୍କୁ ଅନୁରୋଧ କଲି ।

ଆମକୁ ନେଉଛ ନା ଆମ ସହିତ ଖେଳୁଛ ? ମୁହଁରେ କୃତ୍ରିମ ରାଗ ଫୁଟାଇ କହିଲେ ଶାର୍ଙ୍ଗଧରନା—ତୁମକୁ ବେଶ୍ ମଜାଲାଗୁଛି, ନୁହେଁ ?

—ଅପେକ୍ଷା କର ବନ୍ଧୁ ! ମୁଁ ତୁମ ଉଷ୍ମପାନୀୟ ଟିକେ ପିଇ ଆତ୍ମତୃପ୍ତି ଲାଭକରେ;

ତାପରେ ତୁମମାନଙ୍କ କଥା ବିଗୃର କରିବ । ଓଃ, ପାନୀୟଟି କେତେ ମଜାଳାଗୁଛି ସତେ ! ବଡ଼ ସୁନ୍ଦର ଭାବରେ ତିଆରି କରିଛ ' ଶାର୍ଙ୍ଗରନା !

—ତୁମେ ସେଠି ପିଉଥାଅ, ଆଉ ଆମେ ଏଠି ଅସହାୟ ଅବସ୍ଥାରେ ଭାସିବୁଲୁଥାଉ ।

—କଣ କରାଯିବ ଆଉ ସେଥିପାଇଁ ? ଯିଏ ଭୁଲ କରିଥାଏ, ତାକୁ ଟିକେ ପସ୍ତାଇବାକୁ ପଡ଼େ । ଆଉଟିକେ ଅପେକ୍ଷା କର, ମୁଁ ଏ ପାନୀୟତକ ଶେଷକରିଦିଏ । ବଡ଼ ସୁସ୍ୱାଦୁ ହୋଇଛି ତୁମ ତିଆରି ପାନୀୟ ଶାର୍ଙ୍ଗରନା !

—ଦେଖୁଛ, ଉତ୍କଳାବନ୍ତି ଆମର ଅତିଥି । ତାଙ୍କୁ ଏଭଳି ଅବସ୍ଥାରେ ପକାଇଦେଇ ତୁମେ କେମିତି ସେଗୁଡ଼ାକୁ ଉଦରସ୍ଥ କରୁଛ ମୁଁ ବୁଝିପାରୁନାହିଁ ! ମୁଁ ସିନା ଭୁଲ କରିଛି, ଦଣ୍ଡ ପାଇବି; ବିଚରା ଉତ୍କଳାବନ୍ତିଙ୍କୁ କାହିଁକି ଏତେ ହଇରାଣ କରୁଛ ? ତାଙ୍କ ଖାଇବାପାଇଁ ଖାଦ୍ୟ ପାନୀୟ ମଗାଇ ନିଜେ ଉଦରସ୍ଥ କଲ । ବେଶ୍ ଭଲ ଅତିଥି-ଚର୍ଚ୍ଚା କରିବ ତମେ !

ଆରେ ସତେ ତ ! ମୋର ସେଆଡ଼କୁ ମୋଟେ ଖିଆଲ ନାହିଁ । ଆଃ ଆଃ, ଉତ୍କଳାବନ୍ତି ବିଗୃରୀର କି ଦୁଃଖ । ତୁମମାନଙ୍କ ଭଳି ମୁଁ ଯଦି ଭୁଲକରିଥାଆନ୍ତି ଶାର୍ଙ୍ଗରନା, ଆମେ ସମସ୍ତେ ଏହି କକ୍ଷଭିତରର ବାୟୁମଣ୍ଡଳରେ ଭାସୁଥାଆନ୍ତେ । ଆମକୁ ଆଉ କିଏ ଉଦ୍ଧାର କରିଥାନ୍ତା କହିଲ ?—ଏହା କହି କେବଳପ୍ରାସ୍ୱ ନିଜ ଗୋଡ଼ରୁ ଜୋତା ଦୁଇଟିକୁ ଓହ୍ଲାଇ ହାତରେ ଧରି ପୋଖରୀରେ ପହଁରିଲା ଭଳି ଶାର୍ଙ୍ଗରନାଙ୍କ ପାଖକୁ ଡେଇଁପଡ଼ିଲେ । ବଡ଼ ବିଚିତ୍ର ସେ ଦୃଶ୍ୟ ! ପୋଖରୀରେ ପହଁରିଲାଭଳି ବାୟୁରେ ପହଁରି ପହଁରି ଯାଇ ଶାର୍ଙ୍ଗରନାଙ୍କ ନିକଟରେ ହାଜର । ହାତରେ ତାଙ୍କର ଦୁଇପଟ ଜୋତା । ଶାର୍ଙ୍ଗରନାଙ୍କ ହାତକୁ ଜୋତା ହଳକ ବଢ଼ାଇ ଦେଇ କହିଲେ—ଏ ହଳକ ତୁମେ ନେଇ ପିନ୍ଧ ଶାର୍ଙ୍ଗ୍ ! ତଳକୁ ଯାଇ ଆମ ଦୁଇଜଣଙ୍କ ପାଇଁ ଜୋତା ଦୁଇହଳ କେଉଁଠି ରଖିଛ ବାହାରକରି ଆଣ । ତୁମ ଭଳି ମୁଁ ଏଇଠି ଭାସିବୁଲୁଛି ! ଦେଖ, ଆମ ସହିତ ଯେମିତି ନଖେଳ । ତେଣେ ପାନୀୟ ସବୁ ଥଣ୍ଡା ହୋଇଗଲଣି ।

—ମୁଁ ଖେଳିବି ନାହିଁ ତ କଣ ? କୃତ୍ରିମ ରାଗରେ ଗରଗର ହୋଇ ଜୋତା ପିନ୍ଧୁ ପିନ୍ଧୁ ଶାର୍ଙ୍ଗରନା କହିଲେ—ଜୋତା ହଳକ ପିନ୍ଧିବାରେ କେତେ କଷ୍ଟ । ପିନ୍ଧିସାରି ଗୋଡ଼ ଦୁଇଟିକୁ ତଳକୁ ଦେଖାଇଛନ୍ତି କି ନାହିଁ ସେ ଟାଣି ହୋଇଗଲେ ତଳକୁ । ତଳେ ଠିଆ ହୋଇ ବେଶ୍ ସାଧାରଣ ଅବସ୍ଥାରେ ଚଲାବୁଲା-ପାରିପାରିଲେ । ଆମେ ଦୁଇ ଜଣ ସେମିତି ଭାସୁଥାଉ ।

ଶାର୍ଙ୍ଗରନା ସଙ୍ଗେ ସଙ୍ଗେ କକ୍ଷର ଏକ ଆଲମାରି ଖୋଲି ଜୋତା ଦୁଇ ହଳ ବାହାର କରି ଆଣି ଆମ ହାତକୁ ବଢ଼ାଇଦେବେ କଅଣ ହେଲେ ମୋ ଆଡ଼କୁ, ହେଲେ କେବଳପ୍ରାସ୍ୱଙ୍କ ଆଡ଼କୁ ଫୋପାଡ଼ିଦେଲେ । ବଡ଼ ବିଚିତ୍ର, ଜୋତା ଦୁଇହଳ ଆମଠାକୁ ଆସିବ କଣ; କିଛି ଦୂର ଆସି ପୁଣି ସିଧାସଳଖ ଗୃଲିଗଲା ତଳକୁ—ଚଟାଣ ଆଡ଼କୁ । ଗୃହୁଁ ଗୃହୁଁ ଦୁଇ ହଳଯାକ ଠକ୍ ଠକ୍ ଶବ୍ଦ କରି ଇସ୍ପାତ୍ ଚଟାଣ ସହ ଲାଗିରହିଲା ।

କେବଳପ୍ରାଣ୍ଟ କହିଲେ—ପୃଥିବୀରେ ଏତେ ଦିନ ରହିବା ଫଳରେ ତୁମେ ଯେମିତି ମହାଶୂନ୍ୟ-ଭ୍ରମଣର ଅଭିଜ୍ଞତା ପାସୋରିଦେଲଣି ଶାଙ୍ଗ୍ ! ଜୋତା ଦୁଇ ହଳ ଆମ ହାତକୁ ବଢ଼ାଇ ନ ଦେଇ ଏମିତି ଫୋପାଡ଼ି ଦେବ ବୋଲି ମୁଁ ଆଶା କରି ନଥିଲି । ଚୁମ୍ବକ-ହିଲ୍ ଲଗା ଜୋତା ଚଟାଣ ଆଡକୁ ନ ଯାଇ ଆମଠାକୁ କେମିତି ଆସନ୍ତା କହିଲ ?

—ଆରେ ସତେ ତ, ମୁଁ ସବୁ ଭୁଲିଗଲିଣି । ଏହାକୁ ସାଧାରଣ ଜୋତା ଭଳି ମୁଁ ତୁମଠାକୁ ଫୋପାଡ଼ି ଦେଉଛି କେମିତି ମ ? ସତରେ କେବଳପ୍ରାଣ୍ଟ, ପୃଥିବୀରେ ରହି ମୁଁ ସବୁ ଭୁଲିଗଲିଣି ।

ଜୋତା ଦୁଇ ହଳକୁ ଚଟାଣରୁ ଗୋଟାଇ ଶାଙ୍ଗରିନା ଆମ ଦୁଇଜଣଙ୍କ ହାତକୁ ବଢ଼ାଇଦେଲେ । କେବଳପ୍ରାଣ୍ଟଙ୍କ ନିର୍ଦ୍ଦେଶମତେ ଚୁମ୍ବକ-ହିଲ୍ ଲଗା ଜୋତା ପିନ୍ଧି ତଳକୁ ଆସିଲି । ଆସିଲାବେଳେ ଗୋଡ଼ରୁ କାଢ଼ିଥିବା ମୋର ଆର ଜୋତା ହଳକ ଆଣିବାକୁ ଭୁଲିଗଲି । ତଳେ ଆସି ଦେଖେ ତ ଜୋତା ହଳକ ଗ୍ରୁତପାଖେ ଭାସିବୁଲୁଛି । କେବଳପ୍ରାଣ୍ଟ ତାଙ୍କ ପୂର୍ବ ଜୋତା ହଳକ ସଙ୍ଗରେ ନେଇଆସିଥାନ୍ତି ।

ଜୋତା ହଳକ ଗ୍ରୁଡ଼ିଆସିଥିବାରୁ ବଡ଼ ବ୍ୟସ୍ତ ହୋଇ କହିଲି—ଜୋତା ହଳକ କଣ ସେହି ଗ୍ରୁତଠାରେ ସେମିତି ଭାସିବୁଲୁଥିବ । ସେ ହଳକ କେମିତି ଆଣିବ କହିଲ ?

—ଆଉ ଆଉ, ସେ ହଳକ ଆପେ ଆପେ ତଳକୁ ଆସିଯିବ । ବର୍ତ୍ତମାନ ଖାଇବସ । ଆଉ ଉଷ୍ମ ପାନୀୟ ସବୁ ଯେ ଥଣ୍ଡା ହୋଇଗଲାଣି ।

ଆମେ ଜଳଖିଆ ଖାଇବାକୁ ଆରମ୍ଭ କରିଛୁ, ଶାଙ୍ଗରିନା ଉଷ୍ମ ପାନୀୟ ଆମ କପ୍‌ରେ ସବୁ ଢାଳିବାକୁ ଯାଉଛନ୍ତି । ଢାଳିଲା ବେଳକୁ କିଛି ପାତ୍ରରୁ ବାହାରିବାକୁ ନାହିଁ । ଦେଖି ମୁଁ ତଟସ୍ଥ ।

ସେମିତି ଢାଳିଲେ କଣ ସେ ପାନୀୟପାତ୍ର ଭିତରୁ ସହଜରେ ବାହାରିବ ଶାଙ୍ଗରିନା ? ଏହାକୁ ବି ତୁମେ ଭୁଲିଗଲଣି ?—କେବଳପ୍ରାଣ୍ଟ କହିଲେ ।

—ଆରେ ସତେ ତ, ପୁଣି ଭୁଲ୍ ହୋଇଗଲା । ଏଗୁଡ଼ିକ ଭୁଲିଯିବାର ଢେର୍ କାରଣ ଅଛି କେବଳପ୍ରାଣ୍ଟ ! ଯେଉଁ ଦିନରୁ ମହାଶୂନ୍ୟଯାନ ଭିତରେ କୃତ୍ରିମ ମାଧ୍ୟାକର୍ଷଣ ବଳ ସୃଷ୍ଟି କରାହେଲାଣି,ସେ ଦିନରୁ ଏଗୁଡ଼ାକ ମନରୁ ଗଲାଣି । ମହାଶୂନ୍ୟରେ ଚଳିବାପାଇଁ ସେ ଯେଉଁ-ସବୁ କଷ୍ଟ, ସେସବୁ କଣ ଆଜିକାଲି ଅଛି ? ଏବେ ମହାଶୂନ୍ୟ, କି ଚନ୍ଦ୍ର,କି ପୃଥିବୀ ଭିତରେ ଚଳାଚଳରେ ଆଉ କିଛି ପାର୍ଥକ୍ୟ ନାହିଁ । ସେହି ଯନ୍ତ୍ରଟାକୁ ବନ୍ଦ କରି ନଥିଲେ ଆମର କାହିଁକି କିଛି ଅସୁବିଧା ହୁଅନ୍ତା । ଏଥର ମୁଁ ଯାଉଛି ସେ ଯନ୍ତ୍ରଟାକୁ ଚଳାଇ ଦେଇଆସେ ।

—ହଁ। ହଁ।, ଆଉ ଟିକେ ଅପେକ୍ଷା କର ଶାଙ୍ଗ୍ ! ଉଜ୍ଜଳାବନ୍ତି ଟିକେ ଅଭ୍ୟସ୍ତ ହୁଅନ୍ତୁ । ମହାଶୂନ୍ୟର ମାଧ୍ୟାକର୍ଷଣ ଅଭାବ ସହି ପୁରାକାଳରେ ଆମ ମହାକାଶଗ୍ରାମୀମାନେ କେମିତି ମହାଶୂନ୍ୟରେ ଚଳିବାରେ ହନ୍ତସନ୍ତ ହେଉଥିଲେ, ସେ କଥା ଉଜ୍ଜଳାବନ୍ତି ଜାଣିବା ଦରକାର ? ହେଉ ହେଉ, ଏଥର ଢାଳିଲ ପାନୀୟ, ଦେଖିବା କେମିତି ଆସୁଛି ।

ଶାର୍ଙ୍ଗରନା ପାତ୍ରଟିର ମୁହଁକୁ କପ୍ ଉପରେ ଥୋଇ ପାତ୍ରଟିର ପଛଆଡ଼ୁ ବାଡ଼େଇବାରେ ଲାଗିଲେ । ଯେତେଥର ସେ ବାଡ଼ୋଉଥାନ୍ତି, ସେତେଥର କିଛି କିଛି ପାନୀୟ ପାତ୍ର ଭିତରୁ ବାହାରୁଥାଏ । ଅଳ୍ପ ଅଳ୍ପ ବାହାରିବାର ଦେଖି ସେ ଏତେ ବ୍ୟସ୍ତ ହୋଇପଡ଼ିଲେ ଯେ ପାତ୍ରଟିର ପଛ ପାଖକୁ ବେଶ୍ ଜୋର୍‌ରେ ବାଡ଼େଇ ଦେଲେ । ହଠାତ୍ ଗୁଡ଼ାଏ ପାନୀୟ ବାହାରିଆସିଲା ।

ତାଙ୍କୁ ସାବଧାନ କରିବାପାଇଁ ମୁଁ କହିଲି—ହାଁ ହାଁ, ତଳେ ପଡ଼ିଯିବ ଯେ ।

କିନ୍ତୁ ଦେଖି ବିସ୍ମିତ ହେଲି ଯେ, ପାନୀୟ ତଳେ ପଡ଼ିଯିବ କଣ, ସେହି ବାୟୁରେ ଝୁଲିରହି ରହିଲା । ଶାର୍ଙ୍ଗରନା ପାତ୍ରର ମୁହଁ ଖୋଲି ପାନୀୟ ଆଡ଼କୁ ଦେଖାଇ ପୁଣି ପାତ୍ର ଭିତରକୁ ଫେରାଇଆଣିଲେ । କୁହୁକ ଭଳି ଲାଗିଲା ମତେ । ପାନୀୟ ପାତ୍ରରୁ ବାହାରିଯାଉଛି, ସଙ୍ଗେ ସଙ୍ଗେ ପାତ୍ର ଭିତରକୁ ପୁଣି ସେଗୁଡ଼ିକୁ ଆଣିହେଉଛି ! ଐନ୍ଦ୍ରଜାଲିକର କୁହୁକ ତ ଏହା ତୁଳନାରେ କିଛି ନୁହେଁ !

ମୁଁ ଖାଦ୍ୟ କି ପାନୀୟ ଖାଇବି କଣ, ଏସବୁ ଦେଖି କାଠ ଭଳି ଅନାଇ ରହିଥାଏ । ରଙ୍ଗମଞ୍ଚର ଅଭିନେତ୍ରୀ ଭଳି ଶାର୍ଙ୍ଗରନା ଏସବୁକୁ ଗୋଟିକ ପରେ ଗୋଟିଏ କରିଯାଉଥାନ୍ତି ।

ମୋତେ ଏମିତି ଆଶ୍ଚର୍ଯ୍ୟ ହେବାର ଦେଖି ଶାର୍ଙ୍ଗରନା କହିଲେ—ତୁମେ ଏମିତି କାଠ ହେଲା ଭଳି କଣ ବସିଯାଉଛ ଉତ୍କଳାବର୍ତ୍ତି ? ତୁମକୁ ଏସବୁ ଭେଲିକ ଭଳି ଲାଗୁଛି, ନୁହେଁ ? ତୁମେ ବିଜ୍ଞାନ ଅଧ୍ୟୟନ କଲେ ଜାଣିପାରିବ ମାଧ୍ୟାକର୍ଷଣର ଅଭାବରୁ ଏସବୁ କେମିତି ହେଉଛି ।

—ଉତ୍କଳାବର୍ତ୍ତିଙ୍କୁ ଆଉ ହଇରାଣ କରି ଲାଭ ନାହିଁ ଶାର୍ଙ୍ଗରନା ! ଏସବୁ ତାଙ୍କ ମସ୍ତିଷ୍କକୁ ବିବ୍ରତ କରିପକାଉଥିବ । ତୁମେ ଯାଇ ଯନ୍ତ୍ରଟିକୁ ପୁଣି ଚଳାଇଦିଅ । ପୂର୍ବାବସ୍ଥା ଫେରିଆସୁ । ବିଜ୍ଞାନ ସମ୍ପର୍କରେ ତାଙ୍କର କିଛି ଧାରଣା ନଥିବାରୁ ତାଙ୍କୁ ଏମିତି ଲାଗୁଛି ସିନା; ବିଜ୍ଞାନରେ ଅଳ୍ପ କିଛି ଜ୍ଞାନ ଥିଲେ ସେ ଏତେ ଆଶ୍ଚର୍ଯ୍ୟ ହୁଅନ୍ତେ ନାହିଁ । ଚନ୍ଦ୍ରପୃଷ୍ଠରେ ପହଞ୍ଚିଲାକ୍ଷଣି ଆମେ ତାଙ୍କର ବିଜ୍ଞାନଶିକ୍ଷାର ବିହିତ ବ୍ୟବସ୍ଥା କରିବା ଦରକାର ।

ଶାର୍ଙ୍ଗରନା କୃତ୍ରିମ ମାଧ୍ୟାକର୍ଷଣ-ସୃଷ୍ଟିକାରୀ ଯନ୍ତ୍ରକୁ ଚଳାଇଛନ୍ତି କି ନାହିଁ, ହଠାତ୍ ଗ୍ଲାସ ପାଖରେ ଭାସୁଥିବା ଜୋତା ହଳକ ତଳେ ପଡ଼ିଗଲା । ତାପରେ ଯେଉଁସବୁ ପାନୀୟ ଚତୁର ଭାସିବୁଲୁଥିଲା ସେଗୁଡ଼ିକ ବିନ୍ଦୁ ବିନ୍ଦୁ ଆକାର ଧାରଣ କରି ଚଟାଣ ଉପରେ ଖସିପଡ଼ିଲା । ପାତ୍ର ଭିତରୁ ପାନୀୟ ଏଥର ସ୍ୱାଭାବିକ ଗତିରେ ବାହାରିଆସିଲା ।

ମୋ ପାତ୍ରରେ ପାନୀୟ ଢାଳୁ ଢାଳୁ ଶାର୍ଙ୍ଗରନା କହିଲେ—ଏଥର ଆଉ ତୁମର କିଛି ଅସୁବିଧା ହେବନି, ଉତ୍କଳାବର୍ତ୍ତି ! ତୁମେ ଏଥର ନିର୍ବିଘ୍ନରେ ତୁମ ଭୋଜନ ଶେଷ କରିପାର । କହୁ କହୁ ଶାର୍ଙ୍ଗରନାଙ୍କ ମୁହଁରେ ହସ ଫୁଟିଉଠିଲା ।

କେବଳପ୍ରାୟଙ୍କ ପାତ୍ରରେ ପାନୀୟ ଢାଳୁ ଢାଳୁ ଶାର୍ଙ୍ଗରନା କହିଲେ—ବର୍ତ୍ତମାନ

ଉକ୍କଳାବର୍ତ୍ତିଙ୍କ ପାଇଁ ଗୋଟିଏ ବଡ଼ ପରୀକ୍ଷା ହୋଇଗଲା । ଏ ଅନୁଭୂତକୁ ଉକ୍କଳାବର୍ତ୍ତି ବୋଧହୁଏ ଅନେକ ଦିନ ପର୍ଯ୍ୟନ୍ତ ମନେରଖିବେ ।

ଶାଙ୍ଗରିନାଙ୍କ 'କଥାରେ କିଛି ମନ୍ତବ୍ୟ ନ ଦେଇ କେବଲପ୍ରାପ୍ତ ଗରମ କପ୍‌ରେ ମୁହଁ ମାରିବାକୁ ଯାଉଛନ୍ତି, ହଠାତ୍ ଇଞ୍ଜିନ୍‌ରୁମ୍‌ର ବିପଦ-ଘଣ୍ଟି ବାଜିବାରେ ଚମକିପଡ଼ିଲେ । କଣ ଏକ 'ବିପଦ ଆଶଙ୍କାରେ ସେ ଖାଇବା ଟେବୁଲ ଛାଡ଼ି ଇଞ୍ଜିନ୍‌ରୁମ୍‌କୁ ଦୌଡ଼ିଗଲେ । ତାଙ୍କ ପଛେ ପଛେ ଶାଙ୍ଗରିନା ବି ।

ଦୁଇଜଣଙ୍କ ଦୌଡ଼ାଦୌଡ଼ିରେ ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ । କଣ ହେଲା, ଏମାନେ ଏମିତି ଦୌଡ଼ାଦୌଡ଼ି କାହିଁକି କଲେ ବୁଝି ତ ପାରିଲିନି; ଏକ ବିପଦର ଆଶଙ୍କାରେ ଯେ ଏମିତି ହେଉଛନ୍ତି ବୁଝିବା ମୋ ପକ୍ଷରେ ସମ୍ଭବ ହେଲାନି । କଣ କିଛି ଗୋଟାଏ ହୋଇଥିବ, ଏଇଥିପାଇଁ ଭାବି ଇଞ୍ଜିନ୍‌କକ୍ଷ ଆଡ଼କୁ ଅନାଇ ରହିଲି ।

କେବଲପ୍ରାପ୍ତ କଣ ଏକ ଯନ୍ତ୍ର ଖୋଲି ମହାଶୂନ୍ୟ ଭିତରକୁ ଲକ୍ଷ୍ୟ କରିବାକୁ ଲାଗିଲେ । କିଛି ସମୟ ପରେ ପାଖରେ ଥିବା ଆଉ ଏକ କାଚ ପରଦାରେ ମହାଶୂନ୍ୟର ଏକ ସ୍ପଷ୍ଟ ଚିତ୍ର ପଡ଼ିଛି । କାଚ ପରଦା ଉପରେ ଠାଏ ଠାଏ ଦୀପ ଭଳି କଣ ଜୁଳୁଜୁଳୁ କରୁଛି । ଶାଙ୍ଗରିନା ନଇଁପଡ଼ି ସେ ପରଦାକୁ ଲକ୍ଷ୍ୟ କରିବାକୁ ଲାଗିଲେ ।

କାଚ ପରଦାକୁ ଲକ୍ଷ୍ୟ କରୁ କରୁ କେବଲପ୍ରାପ୍ତ କହିଲେ—ଦେଖୁଛ, ଦେଖୁଛ ଶାଙ୍ଗ୍ ! ଏହି ବିରାଟକାୟ ଧୂମକେତୁଟି କେମିତି ଆମ ପଥକୁ ଅବରୋଧ କରି ଏଠି ବିସ୍ତାରିତ ହୋଇ ପଡ଼ିଛି । ଆଉ ତୁମେ ଜାଣିଛ, ଏହା ଏକ ସାଧାରଣ ଧୂମକେତୁ ନୁହେଁ । ଏ ହେଉଛି ପ୍ରତିଧୂମକେତୁ । ଏଭଳି ବିପଜ୍ଜନକ ଧୂମକେତୁ କେବେ ଆମ ସୌରଜଗତକୁ ଆସି ନଥିଲା । ଆମ ପଥରେ ଏଭଳି ପ୍ରତିବନ୍ଧକ ରହିଛି ବୋଲି ବିପଦ-ଘଣ୍ଟିର ସେଇ ଅଂଶଟା ବାଜୁଛି; ତା ନ ହୋଇଥିଲେ ଅନ୍ୟ ଅଂଶଟା ବାଜୁଥାନ୍ତା ।

ଆଉ କଣ ପରୀକ୍ଷା କରିବାପାଇଁ କେବଲପ୍ରାପ୍ତ ଆଉ କେତେଗୁଡ଼ିଏ ଯନ୍ତ୍ରକୁ ମୋଡ଼ାମୋଡ଼ି କଲେ । ଶାଙ୍ଗରିନା ସେଠି ଠିଆହୋଇ ସେଗୁଡ଼ାକୁ ଦେଖୁଥାନ୍ତି । ପରୀକ୍ଷା କରୁ କରୁ କେବଲପ୍ରାପ୍ତ କହିଲେ—ଏ ମହା ବିପଦ ଶାଙ୍ଗରିନା ! ଦେଖୁନାହିଁ, ଏ ଯନ୍ତ୍ର ନିର୍ଦ୍ଦେଶ ଦେଉଛି ଆମ ପଥକୁ ଅବରୋଧ କରୁଛି ଏକ ବିପଜ୍ଜନକ ଧୂମକେତୁର ପୁଚ୍ଛ । ତା ସହିତ ଯଦି ଆମର ସଂଘର୍ଷ ହୁଏ, ଆମ ଯାନର ବିସ୍ଫୋରଣ ଅନିବାର୍ଯ୍ୟ ।

—ଠିକ୍‌ଏ ଲକ୍ଷ୍ୟ କର ଶାଙ୍ଗ ସେଇ କାଚ ପରଦାକୁ । ଏହା କେମିତି ଏମୁଣ୍ଡରୁ ସେମୁଣ୍ଡ ହୋଇ ପଡ଼ିରହିଛି ଏହି ମହାଶୂନ୍ୟ ଭିତରେ । ଧୂମକେତୁର ସାରା ଦେହଟି ବେଶ୍ ଉଜ୍ଜ୍ୱଳ ଦିଶୁଛି ଅନ୍ଧକାରର ପୃଷ୍ଠଭାଗରେ । ଚନ୍ଦ୍ରମଣ୍ଡଳ ରାସ୍ତା ପୂରାପୂରି ଅବରୁଦ୍ଧ । ବଡ଼ ବିପଦ ଘନେଇଆସୁଛି ଶାଙ୍ଗ୍ ! ଏ ଧୂମକେତୁକୁ ଅତିକ୍ରମ କରି ଆମେ କେମିତି ଆରପାରିକୁ ଯିବା, ସେହି ହେଉଛି କଥା ।

—ଧୂମକେତୁକୁ ଅତିକ୍ରମ କରିବାପାଇଁ ଏତେ ଭୟ କାହିଁକି କେବଲପ୍ରାପ୍ତ ? ଆମେ

କଣ କେବେ ଧୂମକେତୁକୁ ଅତିକ୍ରମ କରିନାହୁଁ ନା କଣ ? ଗତବର୍ଷ ଆମେ ଏହି ପଥରେ ଚନ୍ଦ୍ରକୁ ଆସିଲାବେଳେ ବିନେଲି ଧୂମକେତୁ ଲାଞ୍ଜ ଭିତରେ ପଶି ଆରପାରିକୁ ଚାଲିଆସିଥିଲେ ତ; ଆଉ ସ୍ୱାଁ ଲାଞ୍ଜଟା କଣ ଅତିକ୍ରମ କରିପାରିବା ନାହିଁ ? ତା ଭିତରେ ବିଭିନ୍ନ ପ୍ରକାର ବିଷାକ୍ତ ବାଷ୍ପ ଥିବ—ଏଇଆ ତ ଭୟ, ଆଉ କଣ ? ଟିକିଏ ସାବଧାନ ହୋଇଗଲେ ତ ସେ ବିଷାକ୍ତ ବାଷ୍ପ ଆମର କିଛି କ୍ଷତି କରିପାରିବ ନାହିଁ ।

—ତା ହୋଇଥିଲେ ମୁଁ ଏତେ ଚିନ୍ତା କରିଆନ୍ତି କାହିଁକି ଶାଙ୍ଗ୍ ?

—ତେବେ ?

—ଏ କିଛି ସାଧାରଣ ଧୂମକେତୁ ନୁହେଁ ଶାଙ୍ଗ୍ ! ଏ ହେଉଛି ଏକ ପ୍ରତିଧୂମକେତୁ । ମୋ ଜାଣିବା ଭିତରେ ଏ ହେଉଛି ଆମ ସୌରଜଗତର ନୂଆ । ଏ ଧୂମକେତୁ ଆସିଛି ଆଉ ଏକ ବିଶ୍ୱରୁ, ଯାହା ଆମେ ନାମ ଦେଇଛୁ ପ୍ରତିବିଶ୍ୱ । ସେହି ପ୍ରତିବିଶ୍ୱରୁ ଆସିଛି ଏ ଧୂମକେତୁ ପ୍ରଳୟର ସଂକେତ ନେଇ । ଏ ଧୂମକେତୁର ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ ସବୁ କିଛି ପ୍ରତିବସ୍ତୁରୁ ତିଆରି । ଆମେ ଯଦି ସେହି ଲାଞ୍ଜ ଭିତରେ ପଶିଯିବା, ତେବେ ଆମ ଅବସ୍ଥା କଣ ହେବ ଜାଣିଛ ତ ?

ଭୟ ଓ ଆତଙ୍କମିଶା ଦୃଷ୍ଟିରେ ଶାଙ୍ଗରିନା ଅନାଇ ରହିଲେ ସ୍ୱାମୀ କେବଳପ୍ରାସ୍ତୁଙ୍କୁ ।

ଆମେ ଓ ଆମ ଆକାଶଯାନ ଧ୍ୱଂସ ହୋଇ ଶକ୍ତି ରୂପରେ ସାରା ବିଶ୍ୱରେ ବ୍ୟାପିଯିବ । ଆମେ ସମସ୍ତେ ଆଖିପିଛୁଳାକେ ବିସ୍ଫୋରିତ ହୋଇଯିବା । ଆମ ଯାନ କି ଆମେ, ସେଇ ଲାଞ୍ଜର ଆରପାରିକୁ ଯିବାକୁ କେହି ନଥିବା । —କେବଳପ୍ରାସ୍ତୁ କହିଲେ ।

—ତୁମେ ଜାଣିଛ ଶାଙ୍ଗରିନା । ଆମର ସେହି ବିପଦସଙ୍କେତ ଘଣ୍ଟା କାହିଁକି ଏତେ ଦ୍ରୁତଗତିରେ ବାଜିଉଠୁଛି ? ସେ ଜଣାଉଛି ଯେ ବିପଜ୍ଜନକ ପ୍ରତିବସ୍ତୁ ଏହି ରାସ୍ତାରେ ପଡ଼ିରହିଛି । ପ୍ରତିବସ୍ତୁ ନଥିଲେ ଏ ଘଣ୍ଟା ଏମିତିଭାବରେ ବାଜନ୍ତା ନାହିଁ । ଆଉ ଏ ଯନ୍ତ୍ର —ଶାଙ୍ଗରିନାକୁ ନିର୍ଦ୍ଦେଶ କରି କହିଲେ, କଣ ଜଣାଉଛି ଜାଣ ? ସେହି ପ୍ରତିବସ୍ତୁ ଧୂମକେତୁ ଆମଠାରୁ ମାତ୍ର ଅଶୀ ହଜାର ମାଇଲ ଦୂରରେ ଅଛି । ଆମେ ଯେଉଁ ବେଗରେ ଯାଉଛେ, ପ୍ରାୟ ପଞ୍ଚଚାଳିଶ ମିନିଟ୍ ପରେ ପ୍ରତିଧୂମକେତୁଠାରେ ପହଞ୍ଚିଯିବା । ତେଣୁ ଜାଣ ଶାଙ୍ଗରିନା ! ଆମ ଧ୍ୱଂସ ହେବାର ବେଳ ଆଉ ବେଶି ଡେରି ନାହିଁ । ହୁଏତ ଆଉ ପଞ୍ଚଚାଳିଶ ମିନିଟ୍ ପରେ···ଆଉ କହିପାରିଲେନି କେବଳପ୍ରାସ୍ତୁଙ୍କ କଣ୍ଠ ତାଙ୍କର ରୁଦ୍ଧ ହୋଇ ଆସିଲା । ଆଖିଆଗରେ ଏଡ଼େ ବଡ଼ ବିପଦ ଦେଖି ସେ ନିଜକୁ ସମ୍ଭାଳି ନେଇପାରିଲେ ନାହିଁ ।

ପୁଣି ବିବ୍ରତ ଭାବରେ ସେ କହିଲେ—ଆମେ କେମିତି ଏ ଆଶୁ ବିପଦରୁ ରକ୍ଷା ପାଇପାରିବା, ମୋ ମୁଣ୍ଡରେ କିଛି ପଶୁନି ଶାଙ୍ଗରିନା ! ମନ ଭିତରେ ଉଦ୍‌ବେଗ ତାଙ୍କ କଣ୍ଠକୁ ପୂରାପୂରି ଚପିଧରୁଥାଏ ।

ଆମେ ଯଦି ଆମ ଯାନଟିରୁ ପୃଥିବୀକୁ ଫେରାଇନିଅନ୍ତେ ?—ଶାଙ୍ଗରିନା ପଚାରିଲେ ।

—ଫେରାଇନେବା ବି ସେତେ ସହଜ ନୁହେଁ । ଆମେ ବର୍ତ୍ତମାନ ଯେଉଁ ବେଗରେ ଯାଉଛେ, ଫେରାଇ ନେଲେ ବି ଏହା ଯେଉଁ ବକ୍ରପଥ ଦେଇ ପୃଥିବୀକୁ ଫେରିବ, ସେହି ବକ୍ରପଥ ଧୂମକେତୁକୁ ପ୍ରାୟ ସ୍ପର୍ଶ କରି ଯିବ । ଧୂମକେତୁ ସହିତ ସ୍ପର୍ଶ ହେଲେ ହିଁ ଆମର ଧ୍ୱଂସ ଅନିବାର୍ଯ୍ୟ ।

—ଆମେ ଯଦି ଧୂମକେତୁର ମୁଣ୍ଡ କି ଲାଞ୍ଜ ଉପର ଦେଇ ବୁଲି ଚାଲିଯିବା ?

—ସେ କଥା ମୁଁ ଯେ ନ ଭାବିଛି ତା ନୁହେଁ । ଗଣନା କରି ଦେଖୁଛି, ଏଥିପାଇଁ ଆମକୁ ଛ'ମାସରୁ କମ୍ ଲାଗିବ ନାହିଁ ଚନ୍ଦ୍ରଲୋକରେ ପହଞ୍ଚିବାକୁ । ଛ'ମାସ ପାଇଁ ତ ଆମଠାରେ ଖାଦ୍ୟ ପଦାର୍ଥ ନାହିଁ, ଭୋକ-ଉପାସରେ ମହାଶୂନ୍ୟରେ ମରିବା ହିଁ ସାର ହେବ ।

—ତାହେଲେ କଣ ତମେ ଆଉ କିଛି ଉପାୟ ଦେଖୁନାହଁ କେବଳପ୍ରାଣ ?

—ନା, ମୋ ମୁଣ୍ଡରେ ତ ଆଉ କିଛି ପଶୁନାହିଁ । ମୃତ୍ୟୁହିଁ ସୁନିଶ୍ଚିତ । ମୃତ୍ୟୁ ଛଡ଼ା ଆଉ ଅନ୍ୟ ଉପାୟ ନାହିଁ ।

—କିନ୍ତୁ କେବଳପ୍ରାଣ ! ଚନ୍ଦ୍ରରୁ ଆମଠାକୁ ଆମର ଗତିପଥ ସମ୍ପର୍କରେ ଯେଉଁ ବାର୍ତ୍ତା ଆସିଥିଲା, ସେଥିରେ ତ ଆମ ପଥରେ ଏମିତି ବିପଦ କଥା କିଛି ଉଲ୍ଲେଖ ନଥିଲା । ପୃଥିବୀକୁ ଚନ୍ଦ୍ରର ପଥ ପରିଷ୍କାର ବୋଲି କହିବା ପୂର୍ବରୁ ସେମାନେ ତ ଜାଣିଥାନ୍ତେ ଏହି ଭୟଙ୍କର ବିପଦ କଥା । ସେମାନେ ଆମକୁ ସେ କଥା ନ ସୂଚାଇଲେ କାହିଁକି ? ତା ହୋଇଥିଲେ ଆମେ ତ ପୃଥିବୀ ଛାଡ଼ି ଆସି ନଥାନ୍ତେ କିମ୍ବା ଆସିଥିଲେ ଆମେ ପ୍ରସ୍ତୁତ ହୋଇ ଅନ୍ୟ କୌଣସି ପଥରେ ଚନ୍ଦ୍ରମଣ୍ଡଳ ଅଭିମୁଖେ ଆସିପାରିଥାନ୍ତେ । ସେମାନେ ତ ଆମକୁ ସାବଧାନ କରାଇଦେବା ଉଚିତ ଥିଲା ।

—ହଁ, ତା ତ ଉଚିତ । ଯଦି କରି ନ ଯାଇଛି ତେବେ ବର୍ତ୍ତମାନ କାହାକୁ ଦୋଷ ଦେଇ କି ଲାଭ ? ବିପଦ ତ ଆମକୁ ଗ୍ରାସ କରିବା ପାଇଁ ଧାଇଁଆସୁଛି ।

—ଚନ୍ଦ୍ରଲୋକର ପଥ-ବିଶେଷଜ୍ଞ ସହିତ କଥାବାର୍ତ୍ତା କର; ସେ କେମିତି ଜାଣିଶୁଣି ଆମକୁ ଏଡ଼େ ବଡ଼ ବିପଦ ଭିତରକୁ ଠେଲିଦେଲେ ? ଏସବୁ ଦିଗରେ ଏତେ ଦାୟିତ୍ୱହୀନ ହେଲେ କ'ଣ ହୁଏ ?

ଶାର୍ଙ୍ଗିନୀଙ୍କ ମୁହଁରୁ ଏଇ କଥା କେଇପଦ ସରିଛି କି ନାହିଁ, କେବଳପ୍ରାଣ ସଙ୍ଗେ ସଙ୍ଗେ ବେତାରଯନ୍ତ୍ର ସୁଇଚ୍ ଟିପିଦେଲେ । ବେତାରଯନ୍ତ୍ରର କାଚ ପରଦା ଉପରେ ଚନ୍ଦ୍ରଲୋକର ପଥ-ବିଶେଷଜ୍ଞଙ୍କ ହସ ହସ ମୁଖ ଫୁଟିଉଠିଲା ।

ଛବିଟି ହସି ହସି ପଚାରିଲା—ବାଃ, ତୁମେ କଣ ଏତେ ବାଟ ଆଗେଇ ଆସିଲଣି କେବଳପ୍ରାଣ ! ଆଉ ତ ଅଳ୍ପ ସମୟ ପରେ ଦେଶରେ ଆସି ପହଞ୍ଚିବ । ବେଶ୍, ସବୁ ଭଲ ତ ? ହଠାତ୍ ସଂଯୋଗ ସ୍ଥାପନ କରିବାର ଉଦ୍ଦେଶ୍ୟ ? ପୃଥିବୀ ଓ ଚନ୍ଦ୍ର ପଥ ସମ୍ପର୍କରେ ମୁଁ ତ ତୁମକୁ ସବୁ ଠିକ୍‌ଠାକ୍ ଖବର ଦେଇଛି, ଆଉ ମାତ୍ରେ ଡାକିବା କାହିଁକି

— ଆମେ ସାଙ୍ଘାତିକ ବିପଦରେ ପଡ଼ିବୁ ।

— ବିପଦ ? କାହାର ବିପଦ ? ତୁମେ କଅଣ କହୁଛ କେବଲପ୍ରାପ୍ତ ?

—ଆପଣ ଯେତେବେଳେ ଆମେ ଆସିବା ପାଇଁ ପଥ ଓ ସମୟର ନିର୍ଦ୍ଦେଶ ଦେଲେ ସେତେବେଳେ ବାଟରେ ଏତେ ବଡ ବିପଦଟାଏ ପଡ଼ିବ ବୋଲି ତ କିଛି ଆଭାସ ଦେଇଥାନ୍ତେ ? କିନ୍ତୁ ଆପଣ ଜଣାଇଲେ, ପୃଥିବୀପୃଷ୍ଠରୁ ଚନ୍ଦ୍ର ପର୍ଯ୍ୟନ୍ତ ମହାଶୂନ୍ୟ ପଥ ବେଶ୍ ପରିଷ୍କାର । ବିପଦ-ଆପଦର କିଛି ସମ୍ଭାବନା ନାହିଁ ।

—ହଁ ମୋର ତ ମନେପଡ଼ୁଛି ମୁଁ ସେପ୍ରୀ ନିର୍ଦ୍ଦେଶ ଦେଇଥିଲି ।

—କିନ୍ତୁ ବାଟରେ ଯେ ଧୂମକେତୁ ରହିଛି, ସେ କଥାତ କିଛି ଜଣାଇ ନାହାନ୍ତି ଆପଣ ! ଆମେ ଏହି ପ୍ରତିବସ୍ତୁ-ଧୂମକେତୁକୁ ଅତିକ୍ରମ କରିବୁ କେମିତି ?

—ଓ ! ଏଇଥିପାଇଁ ଏତେ ଭୟ ? ବାସ୍ତବିକ ମୁଁ ତୁମକୁ ସେ କଥା କହିବାକୁ ଭୁଲିଯାଇଛି । ମୋର ମୋଟେ ସେ ଧୂମକେତୁ କଥା ଖିଆଲ ନାହିଁ । ତୁମେ ସେହି ଧୂମକେତୁ ପାଇଁ ଏତେ ଚିନ୍ତିଆ ପରି ! ଖାଲି ତୁମେ ଚିନ୍ତିଆ, ନା ତୁମ ସହିତ ଶାଙ୍ଗରିନା ବି ?

—ଆମ ଧ୍ୱଂସ ଆନିବାର୍ଯ୍ୟ ଭାବି ଶାଙ୍ଗରିନା ବିଶେଷ ଚିନ୍ତାକୁଳ ।

ଟେଲିଫୋନ୍‌ଭିଜନ୍ ପରଦା ଉପରେ ପୁଣି ହସ ଠିକ୍ ପୂର୍ବଭଳି ।

କେବଲପ୍ରାପ୍ତ କାଚ ପରଦା ଉପରେ ହସ ଦେଖି ବିରକ୍ତ ହେଲା ଭଳି ମନେହେଲା । ସେ କହିଲେ, ଆପଣ ସିନା ହସୁଛନ୍ତି; ମାତ୍ର ଆମେ କାନ୍ଦିବା ଉପରେ । ମହାଶୂନ୍ୟ ଭିତରର ବିଭିନ୍ନ ପଥ ଦାୟିତ୍ୱରେ ରହି ଆପଣ କଣ କରୁଛନ୍ତି, ମୁଁ ଭାବିପାରୁନି । ଆପଣଙ୍କର ଏତାଦୃଶ ଦାୟିତ୍ୱହୀନତା ଆମର ଯେ ପ୍ରଧାନ କାଳ ହୋଇଛି, ଏକଥା ଭୁଲିଯାଆନ୍ତୁ ନାହିଁ ।

ଟେଲିଫୋନ୍‌ଭିଜନ୍ ପରଦାକୁ ଫଟାଇ ଉଠିଲା ଏକ ବିରାଟ ହସ ।

—ମୋତେ ଦାୟିତ୍ୱହୀନ କହି ଖୁବ୍ ହସାଇଲ କେବଲପ୍ରାପ୍ତ ! ତୁମେ କ'ଣ ଭାବୁଛ ମୁଁ ଯେତେବେଳେ ମହାଶୂନ୍ୟର ଶତାଧିକ ପଥର ଦାୟିତ୍ୱ ବହନ କରି ବସିଛି, ସେସବୁର ଖବର ରଖୁନି ? ତୁମେ ବର୍ତ୍ତମାନ ଯେଉଁ ଧୂମକେତୁ ଦେଖି ବିବ୍ରତ ହୋଇପଡ଼ିଛ, ମୁଁ ତାହାର ଉପସ୍ଥିତି ଜାଣିଥିଲି ଓ ତାହା ତୁମର କୌଣସି କ୍ଷତି କରିବ ନାହିଁ ବୋଲି ବି ଜାଣିଛି । ସେ ଯେଉଁ ପ୍ରତିଧୂମକେତୁ ତୁମ ରାସ୍ତା ଅବରୋଧ କରି ରହିଛି, ସେହି ଧୂମକେତୁର ଧ୍ୱଂସ ଆଉ ବେଶି ଡେରି ନାହିଁ । ଦ୍ୱିଜା ନକ୍ଷତ୍ରରୁ ଏକ ବିରାଟ ଉଲ୍‌କା ଆସୁଛି ସେହି ଧୂମକେତୁ ସହିତ ବାଧା ପାଇବା ପାଇଁ । ଉଲ୍‌କାଟି ବସ୍ତୁରୁ ଓ ଧୂମକେତୁଟି ପ୍ରତିବସ୍ତୁରୁ ତିଆରି ହୋଇଥିବାରୁ ଏ ଦୁହିଁଙ୍କର ସଂଘର୍ଷ ଏକ ବିରାଟ ବିସ୍ଫୋରଣ ସହିତ ସଂଘଟିତ ହେବ । ଏହା ଫଳରେ ଧୂମକେତୁଟି ଆଖିମିଛୁଳାକେ ଅନ୍ତର୍ନିହିତ ହେବ । ତୁମେ ମହାଶୂନ୍ୟଯାନ ଧୂମକେତୁର ଲାଞ୍ଜଠାରେ ପହଞ୍ଚିବାର ଠିକ୍ ପାଞ୍ଚମିନିଟ୍ ପୂର୍ବରୁ ଏହି ବିସ୍ଫୋରଣ ଘଟିଯାଇ ତୁମ ରାସ୍ତା

ପରିଷ୍କାର ହୋଇଯାଇଥିବ । ଏହି ବିସ୍ଫୋରଣ ସମୟରେ ଏଥିରୁ କେତେକ ଅଂଶ ପୃଥିବୀ, ଶୁକ୍ର, ମଙ୍ଗଳ ଓ ଶନି ଗ୍ରହକୁ ଆଘାତ କରି ସେ ସବୁଥିରେ ବିରାଟ ଧ୍ୱଂସଲୀଳା ଘଟାଇବାର ସମ୍ଭାବନା ଅଛି । ସୌଭାଗ୍ୟବଶତଃ ଏହା ଚନ୍ଦ୍ରକୁ ଆଘାତ କରୁନି । ତୁମେ ନିର୍ଭୟରେ ତୁମ ପଥରେ ଅଗ୍ରସର ହୁଅ । ପ୍ରତିଧୂମକେତୁଟି ବିସ୍ଫୋରିତ ହେଲେ କି ଭୀଷଣାକାର ଧାରଣ କରିବ, ତୁମେ ଖୁବ୍ ନିକଟରେ ଥାଇ ତାହା ଭଲଭାବରେ ଲକ୍ଷ୍ୟ କରିପାରିବ ।

—କିନ୍ତୁ ଆଖି ସାମନାରେ ଏତେ ବଡ ବିପଦ ଥାଉଁ ଥାଉଁ ଆମେ ଏହାର ନିକଟକୁ ଯିବାକୁ କିମିତି ସାହାସ କରିବୁ ? ଯଦି ଧୂମକେତୁର ବିସ୍ଫୋରଣ କୌଣସି କାରଣ ଯୋଗୁଁ ସାମାନ୍ୟ ବିଳମ୍ବ ହୋଇଯାଏ, ତେବେ ଆମ ବିସ୍ଫୋରଣ ହିଁ ସାର ହେବ ।

—ତୁମେ ଏମିତି ଡରିଲେ କଣ ଚଳିବ କେବଳ ପ୍ରାପ୍ତ ? ଆମେ ପରି ଏଠି ଗଣନାକରି ପ୍ରତିଧୂମକେତୁ ସହ ସଂଘର୍ଷ ଘଟାଇବା ପାଇଁ ଆସୁଥିବା ଉଲ୍‌କାଟିକୁ ଲକ୍ଷ୍ୟ କରି ବସିଛୁ । ଉଲ୍‌କାଟି ଯେଉଁ ବେଗରେ ଧାବମାନ ହେଉଛି, ସଂଘର୍ଷ ଆଉ ବେଶି ଡେରି ନାହିଁ । ତୁମେ ପ୍ରତିଧୂମକେତୁଠାରେ ପହଞ୍ଚିବା ପୂର୍ବରୁ ଉଲ୍‌କାଟି ଏହା ସହିତ ସଂଘର୍ଷ ଲଗାଇ ଏହାର ଧ୍ୱଂସ ଘଟାଇସାରିଥିବ ।

—କିନ୍ତୁ ଯେତେ କହିଲେ ବି···

—ଆଚ୍ଛା, ଯଦି ତୁମର ଏତେ ଭୟ ହେଉଛି ତେବେ ତୁମେ ପୃଥିବୀକୁ ଫେରିବାକୁ ଚେଷ୍ଟା କର । ଧୂମକେତୁଟି ବିସ୍ଫୋରିତ ହୋଇ ପଥମୁକ୍ତ ହେଲେ ଚନ୍ଦ୍ରଲୋକ ଅଭିମୁଖେ ଆସିବ । କିନ୍ତୁ ବର୍ତ୍ତମାନ ତୁମେ ତୁମ ଯାନଟିକୁ ନିରାପଦରେ ପୃଥିବୀକୁ ଫେରାଇ ନେଇ ପାରିବ ତ ?

—ମୋଟେ ନୁହେଁ, ହୋଇଥିଲେ ଆମେ କେତବେଳୁ··

—ତାହା ଯଦି କରିଥାନ୍ତେ ନା, ତେବେ ଭୀରୁ ବୋଲି ଚନ୍ଦ୍ରଲୋକରେ କମ୍ କୁଖ୍ୟାତି ଅର୍ଜନ କରି ନ ଥାନ୍ତ । ମହାଶୂନ୍ୟ ଭିତରେ ଯେତେବେଳେ ଯା'ଆସ କରୁଛ, ଏତେ ଭୟ କଲେ କଣ ଚଳିବ ? ତୁମେ ମୋ କଥା ମାନି ଆଗେଇଆସ । ତୁମର କିଛି କ୍ଷତି ହେବ ନାହିଁ । ତୁମେ ପ୍ରତିଧୂମକେତୁଠାରେ ପହଞ୍ଚିଲା ବେଳକୁ ତାହା ଆଉ ସେଠି ନ ଥିବ । ହଁ ଦେଖ ତୁମେ ଏହାର ଖୁବ୍ ନିକଟ୍‌ରେ ଥିବାବେଳେ ଏହାର ବିସ୍ଫୋରଣ ଘଟିବ । ସେହି ବିସ୍ଫୋରଣକୁ ଯେମିତି ଲକ୍ଷ୍ୟ କରିବାକୁ ନ ଭୁଲ । ଚନ୍ଦ୍ରପୃଷ୍ଠରୁ ମଧ୍ୟ ସେହି ବିସ୍ଫୋରଣକୁ ଖୁବ୍ ସାବଧାନତାର ସହିତ ଲକ୍ଷ୍ୟ କରାଯାଉଛି । ···ହଁ, ଆଉ କଣ କିଛି ଜାଣିବାକୁ ଅଛି, ନା ଏତିକିରେ ଚଳିବ ? ତାହେଲେ ·· ମୁଁ ବନ୍ଦ କଲି ।

କହୁଁ କହୁଁ ପରଦାରେ ଆଲୋକ ଦପ୍‌କରି ଲିଭିଗଲା ।

କେବଳପ୍ରାପ୍ତ ସ୍ତ୍ରୀଙ୍କୁ ଲକ୍ଷ୍ୟ କରି ପଚାରିଲେ—ଶୁଣିଲ ତ ସବୁକଥା ଶାଙ୍ଗରିନା ! ବର୍ତ୍ତମାନ ଆମେ କଣ କରିବା ବୋଲି ଭାବୁଛ ?

—ଆମ ହାତରେ ଆଉ ତ କିଛି କରିବାର ନାହିଁ । ଆମକୁ ଆଗେଇଯିବାକୁ ପଡ଼ିବ ।

ସେମାନେ ଯେତେବେଳେ ନିର୍ଭର ପ୍ରତିଶ୍ରୁତି ଦେଉଛନ୍ତି, ଆମର ଆଗେଇଯିବା ଉଚିତ ।

—ନିର୍ଭର ପ୍ରତିଶ୍ରୁତି ସିନା ଶୁଣିଲେ; କିନ୍ତୁ କଣ ମନ ମାନୁଛି ଏ ପ୍ରତିଶ୍ରୁତିରେ ?

—ଏ ପରିସ୍ଥିତିରେ ଆଉ କଣ କରିଯାଇ ପାରିବ, ମୋ ମୁଣ୍ଡରେ କିଛି ପଶୁନି । ମୋ'ଠାରେ ଏହା ଏକ ବଡ ସମସ୍ୟା ହୋଇ ଠିଆହୋଇଛି ।

—ତୁମେ ଯାହା ଠିକ୍ ଭାବୁଛ ତାହାହିଁ କର କେବଳପ୍ରାସ୍ତ ! ମୋ ମତକୁ ଅପେକ୍ଷା କରନି । ମୋ ମୁଣ୍ଡ କଣ ହୋଇଯାଉଛି; ମୁଁ କିଛି ଭାବିପାରୁନି ।—କହୁଁ କହୁଁ ଶାଙ୍ଗରିନା ବସିଥିବା ଚେୟାର ଉପରେ ଢ଼ଳିପଡ଼ିଲେ । ସଙ୍ଗେ ସଙ୍ଗେ ତାଙ୍କର ଚେତା ବୁଡ଼ିଗଲା ।

ଶାଙ୍ଗରିନାଙ୍କର କ'ଣହେଲା ଜାଣିବାପାଇଁ ତାଙ୍କଠାକୁ ଦୌଡ଼ିଆସିଲି । ତାଙ୍କୁ ଅଚେତ ଅବସ୍ଥାରେ ଦେଖି କଣ କରିବି ଭାବିପାରିଲି ନାହିଁ, ଅସହାୟ ହୋଇ କେବଳପ୍ରାସ୍ତଙ୍କ ଆଡ଼େ ଅନାଇଲି । ତାଙ୍କ ନିର୍ଦ୍ଦେଶକ୍ରମେ ଶାଙ୍ଗରିନାଙ୍କୁ ଟେକିନେଇ ବିଛଣାରେ ଶୁଆଇଦେଲି । ଶାଙ୍ଗରିନାଙ୍କ ଚେତା ଫେରାଇ ଆଣିବା ପାଇଁ ଚେଷ୍ଟା ନ କରିବାକୁ କେବଳପ୍ରାସ୍ତ ମୋତେ ନିର୍ଦ୍ଦେଶ ଦେଲେ । ଶାଙ୍ଗରିନାକୁ ତାଙ୍କ ବିଛଣାରେ ଶୁଆଇଦେଇ ନିର୍ବୋଧଙ୍କ ପରି ତାଙ୍କ ପାଖରେ ବସିରହିଲି । କଣ ଯେ ବିପଦ, କଣ ଯେ ହେବାକୁ ଯାଉଛି ସ୍ପଷ୍ଟଭାବେ କିଛି ବୁଝି ପାରୁ ନଥାଏ । ମୁଁ ବୁଝିପାରିବି ନାହିଁ ବୋଲି ସେମାନେ ମଧ୍ୟ ମୋ ସହିତ କିଛି ଆଲୋଚନା ବା ପରାମର୍ଶ କରିବାକୁ ଇଚ୍ଛା କରି ନଥିଲେ ।

କେବଳପ୍ରାସ୍ତ ବଡ଼ ଉଦ୍‌ବେଗର ସହିତ ଇଞ୍ଜିନ୍‌ରୁମ୍‌ରେ ବସିଥାନ୍ତି । ତାଙ୍କ ସାମନାରେ କାଚ ପରଦା ଉପରେ ଏକ ବିରାଟ ଧୂମକେତୁର ପ୍ରତିବିମ୍ବ । କ୍ରମେ କ୍ରମେ ଧୂମକେତୁଟି ପାଖେଇ ଆସିଲାଭଳି ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା । କେବଳପ୍ରାସ୍ତଙ୍କ ଉଦ୍‌ବେଗର ପରିମାଣ ବେଳକୁବେଳ ବଢ଼ିବାକୁ ଲାଗିଥାଏ । ସେ ବାକ୍‌ଶକ୍ତି ହରାଇ ପୂରାପୂରି ମୂକ ହୋଇ ବସିରହିଥାନ୍ତି ସେ ପରଦାକୁ ଅନାଇ । କପାଳ ଉପରେ ଟୋପା ଟୋପା ଝାଳ । ନିଃଶ୍ୱାସ-ପ୍ରଶ୍ୱାସର ପ୍ରଖରତା ସ୍ପଷ୍ଟଭାବରେ ସୂଚାଇ ଦେଉଥାଏ ତାଙ୍କ ମନଭିତରେ ଭୟ ଓ ଉଦ୍‌ବେଗର ପରିମାଣ । ସେ ଏକଲୟରେ ପରଦାକୁ ଅନାଇ ବସିଥାନ୍ତି; ବାରମ୍ବାର ଇଞ୍ଜିନ୍ ରୁମ୍‌ର ସମସ୍ତ ନିର୍ଦ୍ଦେଶକ ଘଣ୍ଟାକୁ ଅନାଉଥାନ୍ତି ।

କିଛି ସମୟ ପରେ ସେ ପରଦାକୁ ଅନାଉ ଅନାଉ ଝରକାକୁ ଅନାଇଦେଲେ । ଦେଖିଲେ ମହାଶୂନ୍ୟ ଭିତରେ ଏକ ବିରାଟ ଧୂମକେତୁ ଲମ୍ବ ହୋଇ ଶୋଇରହିଛି । ତାର ଗୋଟାସାରା ଦେହ ଉଜ୍ଜ୍ୱଳ ଆଲୋକରେ ଗ୍ରାସ ହୋଇଛି । ତାହା ଦେଖି କେବଳପ୍ରାସ୍ତଙ୍କ ହାଲକ ଶୁଖିଗଲା । ସେ ଏହା ଦେଖି ଏତେ ଭୟଭୀତ ହୋଇପଡ଼ିଲେ ଯେ ଆଉ ଝରକା ଦେଇ ଚାହିଁବାକୁ ସାହସ କଲେନି । ସେ ଇଞ୍ଜିନରୁମ୍‌ର ଟେବୁଲ ଉପରେ ମୁଣ୍ଡଦେଇ କଣ ଭାବିବାକୁ ଲାଗିଲେ । କଣ ହେଲା ଭାବି ମୁଁ ଝରକାଦେଇ ବାହାରକୁ ଚାହିଁଦେଲି । ଯାହା ଦେଖିଲି, ସେଥିରେ ମୋ ହାଲକ ମଧ୍ୟ ଶୁଖିଗଲା; ରକ୍ତ ପାଣି ହେଲାଭଳି ବୋଧହେଲା । ମହାଶୂନ୍ୟର ଘନ ଅନ୍ଧକାର ଭିତରେ ଦୀପ୍ତିମୟ କଣ ଏକ ବିରାଟ ଜନ୍ତୁ ଶୋଇଛି ଆମ

ରାସ୍ତାକୁ ଅବରୋଧ କରି । ବାମ ଡାହାଣ, ଉପର ତଳ, ସବୁଆଡ଼କୁ ବ୍ୟାପିଯାଇଛି । ଯେଉଁଆଡ଼କୁ ଅନାଇଲାବେଳକୁ ଏହାର ଶେଷ ଦିଶିବାକୁ ନାହିଁ । ମନେହେଉଥାଏ, ସେହି ଜ୍ବଳନ ଦୀପ୍ତିମୟ ପିଣ୍ଡଟି ଆଉ ବେଶି ଦୂର ନୁହେଁ । ଆମ ଯାନଟି ସେହି ଦୀପ୍ତିମୟ ପଦାର୍ଥଟି ଆଡ଼େ ଭୀମବେଗରେ ଦୌଡ଼ୁଥାଏ । ଦେଖିଲେ ମନେହେବ ଏହା ଯେମିତି ସେଇ ଦୀର୍ଘକାୟ ପିଣ୍ଡଟି ସହିତ ବାଧା ପାଇବାକୁ ଧାଉଁଛି ।

କିଛି ସମୟ ପରେ କେବଳପ୍ରାୟ ଟେବୁଲ ଉପରୁ ମୁଣ୍ଡ ଉଠାଇଲେ; କିନ୍ତୁ ଝରକା ବାହାରେ ଯାହା ଦେଖିଲେ ସେଥିରେ ତାଙ୍କ ଦେହ ଶୀତେଇ ଉଠିଲା । ସେ ଭୟରେ ଥରିବାକୁ ଲାଗିଲେ । ମୁଁ କିଛି ବୁଝିପାରୁ ନଥିଲେହେଁ ତାଙ୍କ ଥରିବା ଦେଖି ମୋ ଦେହ ମଧ୍ୟ ଥରିବାକୁ ଆରମ୍ଭ କଲା । ସଂଘର୍ଷର ସମ୍ଭାବନା ଏତେ ଜଳଜଳ ହୋଇ ଦିଶୁଥାଏ, ଯେ କେହି ଲୋକ ଏହାକୁ ଦେଖିଲେ ତାର ଜୀବନର ଆଶା ଛାଡ଼ିଦେଇଥାନ୍ତା । କେବଳପ୍ରାୟ ଝରକା ଦେଇ ମହାଶୂନ୍ୟକୁ ଅନାଇ ରହିଥାନ୍ତି ଓ ଥରକୁଥର ଘଡ଼ିକୁ ଅନାଇ କଣ ଭାବୁଥାନ୍ତି । ସେହି ଉଜ୍ଜ୍ଵଳ ପିଣ୍ଡଟି ନିକଟରେ ପହଞ୍ଚିବାକୁ ପ୍ରାୟ ସାତ ମିନିଟ୍ ବାକି ।

କେବଳପ୍ରାୟ ବଡ଼ ଅନିଚ୍ଛାସତ୍ତ୍ୱେ କଣ ଏକ ଯନ୍ତ୍ରକୁ ଚଳାଇଦେଲେ, ମୁଁ କିଛି ଜାଣି-ପାରିଲି ନାହିଁ ।

ମୁଁ ଏକଲୟରେ ସେହି ଝରକାଦେଇ ଉଜ୍ଜ୍ଵଳ ଦୀପ୍ତିମୟ ପିଣ୍ଡଟି ଆଡ଼େ ଅନାଇ ରହିଥାଏ । ମନେହେଉଥାଏ, ଏହି ଉଜ୍ଜ୍ଵଳ ଜ୍ଵଳନ୍ତ ପିଣ୍ଡ ଭିତରକୁ ଆମ ଯାନଟି ପଶିଯାଉଛି—ଏକ ବିରାଟ ଦାନବ ଯେମିତି ପାଟି ମେଲା କରି ବସିଛି ଏବଂ ଆମେ ଯାନସହ ତା' ପାଟି ଭିତରକୁ ପଶିଯାଉଛୁ ।

କେବଳପ୍ରାୟ ଧୂମକେତୁଟିକୁ ଲକ୍ଷ୍ୟ କରୁ କରୁ ସେହି ଟେବୁଲ ଉପରେ ଅଚେତ ହୋଇ ଢଳିପଡ଼ିଲେ । ତାଙ୍କର କଅଣ ହେଲା ଜାଣିବା ପାଇଁ ତାଙ୍କ ନିକଟକୁ ଦୌଡ଼ିଗଲି । ଦେଖିଲି ସେ ବି ଚେତାଶୂନ୍ୟ । ଏସବୁ ଦେଖି ମୋର ସାରା ଦେହ କମ୍ପିବାକୁ ଲାଗିଲା । ଭୟରେ ମ୍ରିୟମାଣ ହୋଇ ମୁଁ ଝରକା ଆଡ଼େ ନିଃସହାୟ ହୋଇ ଅନାଇ ରହିଥାଏ । ହଠାତ୍ ଶତସୂର୍ଯ୍ୟର ଦୀପ୍ତି ନେଇ ମହାଶୂନ୍ୟଟା ଜଳିଉଠିଲା । ସେଥି ସଙ୍ଗେ ସଙ୍ଗେ ଆମ କୋଠରୀ ମଧ୍ୟ ଝଲସି ଉଠିଲା ଦିନ ଭଳି । ଏକ ବିରାଟ ଶବ୍ଦର କମ୍ପନ ଖେଳିଗଲା ସାରା କକ୍ଷଟିରେ । ମନେହେଲା, ଯେମିତି ଖୁବ୍ ଦୂରରେ ଏକ ଭୀଷଣ ଶବ୍ଦ ହେଲା । ହଠାତ୍ ଏ କଅଣ ହେଲା ବୁଝିପାରିଲି ନାହିଁ । ସେହି ଦୀପ୍ତିମୟ ଝଲକକୁ ଅନାଇ ମୋ ଆଖି କିଛି ସମୟ ପାଇଁ ଅନ୍ଧ ପାଲଟିଗଲା । ସେହି ଝଲକ ପରେ ମୁଁ ହଠାତ୍ କକ୍ଷର କିଛି ଦେଖିପାରିଲି ନାହିଁ । କିଛି ସମୟପରେ ଆଖି ମେଲି ଯାହା ଦେଖିଲି, ମୁଁ ନିଜ ଆଖିକୁ ମଧ୍ୟ ବିଶ୍ୱାସ କରିପାରିଲି ନାହିଁ ।

ଏ କଣ ! ମହାଶୂନ୍ୟ ବେଶ୍ ପରିଷ୍କାର ! ସେହି ଜ୍ଵଳନ୍ତ ପିଣ୍ଡଟି ଗଲା କୁଆଡ଼େ ? ମହାଶୂନ୍ୟର ପଥଟି ବେଶ୍ ପରିଷ୍କାର ହୋଇଯାଇଛି । ଚନ୍ଦ୍ରମଣ୍ଡଳ ବେଶ୍ ସ୍ପଷ୍ଟ ଓ ବଡ଼

ଦିଶିବାକୁ ଆରମ୍ଭ କଲାଣି । ଦୀପ୍ତିମୟ ପଦାର୍ଥଟିର ଏ ହଠାତ୍ ଅପସାରଣରେ ମୁଁ କଅଣ ବୁଝିଲି କେଜାଣି, ମୋ ମନ ଖୁସି ହୋଇଗଲା ।

ଆନନ୍ଦରେ ଦୌଡ଼ିଯାଇ କେବଲପ୍ରାପ୍ତଙ୍କୁ ଉଠାଇବା ପାଇଁ ଚେଷ୍ଟା କଲି । ଦେଖିଲି, ସେତେବେଳେ ବି ସେ ଚେତାଶୂନ୍ୟ । କିଛି ପାଣି ନେଇ ତାଙ୍କ ମୁହଁରେ ସିଞ୍ଚିଦେବାରୁ ସେ ଭୟବିହ୍ୱଳ ହୋଇ ଉଠିପଡ଼ିଲେ । ଥର ଥର ଗଳାରେ କଣ ପଚାରିଲେ ଏକ ଅସ୍ପଷ୍ଟ ଭାଷାରେ । ତାଙ୍କ ଅସ୍ପଷ୍ଟ ଭାଷାରେ ମୋତେ ଜଣାପଡ଼ିଲା, ସେ କହୁଥାଆନ୍ତି—ଆଁ—ଆଁ—ଧ୍ୱଂସ—ଧ୍ୱଂସ ! !

କିଛି ସମୟ ପରେ ସେ ଯେତେବେଳେ ପୂର୍ବପୂରି ଚେତା ପାଇଲେ ମୋତେ ଅନାଇ ପଚାରିଲେ—ସେହି ଧୂମକେତୁ କଅଣ ସେମିତି ଅଛି ଉଜ୍ଜ୍ୱଳାବନ୍ତି ?

ମୁଁ ହସି ହସି କହିଲି—ନା, ସେ ଧୂମକେତୁ ଆଉ ନାହିଁ ।

—ଏଁ, ନାହିଁ ? ଆମେ କଅଣ ରକ୍ଷାପାଇଗଲେ ତା ହେଲେ ? ଆମର ତ କାହିଁ କିଛି ହେଲାନି ?

ମୁଁ କହିଲି—ନା, ଧୂମକେତୁଟି ଧ୍ୱଂସ ପାଇଯାଇଛି !

—ଏଁ, ଧ୍ୱଂସ ପାଇଯାଇଛି ! — ଏହା କହି ସେ ଧାଇଁଲେ ଝରକା ନିକଟକୁ । ଝରକାଦେଇ କହିଲେ ଆଉ ଏଥର ଚିନ୍ତା ନାହିଁ । ଆମେ ବେଶ୍ ନିରାପଦରେ ଏଣିକି ଚନ୍ଦ୍ରଲୋକରେ ପହଞ୍ଚିବା । ଚନ୍ଦ୍ରମଣ୍ଡଳ କେମିତି ପରିଷ୍କାର ଆଉ ସ୍ପଷ୍ଟ ଦିଶିଲାଣି ଦେଖୁନାହଁ ? ହଠାତ୍ ଚମକିପଡ଼ି ପୁଣି କହିଲେ—ଆରେ, ଶାଙ୍ଗରିନା ଯେ ଏପର୍ଯ୍ୟନ୍ତ ଚେତନାହିନ ହୋଇ ପଡ଼ିରହିଛନ୍ତି । ଚାଲ ଚାଲ, ତାଙ୍କୁ ଯାଇ ଉଠାଇବା ।

ଏହା କହି କେବଲପ୍ରାପ୍ତ ଶାଙ୍ଗରିନାଙ୍କର ଶେଯ ଆଡ଼କୁ ଦଉଡ଼ିଲେ । ବେଶ୍ ଶାନ୍ତ ଓ ନିର୍ଲିପ୍ତ ବଦନରେ ଶାଙ୍ଗରିନା ପଡ଼ିରହିଛନ୍ତି ଶୁଭ୍ର ଶଯ୍ୟା ଉପରେ । ଯେ କେହି ଦେଖିଲେ କହିବ ବେଶ୍ ଶାନ୍ତିରେ ସେ ନିଦ୍ରାଯାଇଛନ୍ତି ।

ଗୋଟିଏ ପାତ୍ରରେ କିଛି ଜଳ ନେଇ ଶାଙ୍ଗରିନାଙ୍କ ମୁହଁ ଉପରେ ଛିଞ୍ଚିଦେଲେ କେବଲପ୍ରାପ୍ତ । ଶାଙ୍ଗରିନା ଗାଢ ନିଦ୍ରାରୁ ଉଠିଲା ଭଳି ଉଠି ଅସ୍ପଷ୍ଟ ସ୍ୱରରେ କଣ କହିଲେ । କେବଲପ୍ରାପ୍ତ କଣ ବୁଝିଲେ କେଜାଣି, କହିଲେ— ନା ନା ଶାଙ୍ଗରିନା ! ଆମର କିଛି ହୋଇନି । ଧୂମକେତୁଟି ମନକୁମନ ଧ୍ୱଂସ ପାଇଯାଇଛି । ହେଇ, ଉଠି ଦେଖ ଚନ୍ଦ୍ରଲୋକକୁ ଯିବା ରାସ୍ତା କେମିତି ପରିଷ୍କୃତ ହୋଇଯାଇଛି । ସେ ବିଶାଳକାୟ ଧୂମକେତୁଟି ଆଉ ଆମ ପଥରୋଧ କରୁନାହିଁ । ଏଥର ଆଉ ଭୟ ନାହିଁ, ଶାଙ୍ଗରିନା ! ଆମେ ଆଉ ଅଳ୍ପ ସମୟ ପରେ ଚନ୍ଦ୍ରଲୋକରେ ପହଞ୍ଚିବା ।

ଏଁ, ଧୂମକେତୁଟି ନାହିଁ ?—ଧୂମକେତୁ ଅନ୍ତର୍ହିତ ହୋଇଥିବା ଶୁଣି ଚକିତ ପଡ଼ିଲେ ଶାଙ୍ଗରିନା ଓ ଶେଯ ଛାଡ଼ି ଦୌଡ଼ିଲେ ଝରକା ପାଖକୁ । ସାମୟିକ ଦୁର୍ବଳତାରୁ ଗୋଡ ତାଙ୍କର ବେଶ୍ ଟଳମଳ ହେଉଥାଏ । କାଳେ ସେ କେଉଁଠି ପଡ଼ିଯିବେ ସେଥିପାଇଁ

କେବଳପ୍ରାୟୁ ତାଙ୍କ ପଛେ ପଛେ ଗ୍ଲଲେ ଝରକା ଆଡ଼କୁ ।

ଝରକା ଉପରେ ହାତ ରଖି ଆଶ୍ୱସ୍ତିରେ ନିଶ୍ୱାସ ଛାଡ଼ି ଶାଙ୍ଗରିନା କହିଲେ—ଓଃ କେତେ ବଡ଼ ବିପଦରୁ ଆମେ ରକ୍ଷା ପାଇଗଲେ ସତେ ! ଧୂମକେତୁଟି ଯଦି ବିସ୍ଫୋରିତ ହୋଇ ନଥାନ୍ତା, ଆମେ କେତେବେଳୁ ·· ସେ ଆଉ କହିପାରିଲେ ନାହିଁ । କେବଳପ୍ରାୟୁଙ୍କୁ କୁଣ୍ଢେଇ ପକାଇ ତାଙ୍କ ଛାତି ଉପରେ ମୁଣ୍ଡରଖି କଣ ଗୁଣୁଗୁଣୁ ହୋଇ କହିବାକୁ ଲଗିଲେ । କେବଳପ୍ରାୟୁ ତାଙ୍କୁ ସାନ୍ତ୍ୱନା ଦେବା ପାଇଁ କହିଲେ—ଆମେ ଏତେ ଭୟଭୀତ ହେବା ଉଚିତ ନଥିଲା, ଶାଙ୍ଗରିନା ! ଚନ୍ଦ୍ରଲୋକରେ ଯଦି ଆମର ଏଇ ଅନୁଭୂତି ପ୍ରଚ୍ଚରିତ ହୋଇଯାଏ, ତେବେ ସେଠାରେ ସମସ୍ତେ ହସିବେ । ଏହା କହି ସେ ସାଙ୍ଗରିନାଙ୍କ କପାଳ ଉପରେ ଆଙ୍କିଦେଲେ ଏକ ଚୁମ୍ବନ । ଶାଙ୍ଗରିନା ଟିକିଏ ଲଜ୍ଜିତ ହୋଇ ତାଙ୍କ ବାହୁବନ୍ଧନରୁ ମୁକୁଳି ଆସି କୃତ୍ରିମ ରାଗ ଫୁଟାଇ କହିଲେ—ତୁମକୁ ଆଉ ବେଳକାଳ ଜଣାପଡ଼ୁନାହିଁ ? ଉତ୍କଳାବଣ୍ଟି ପରି ସେଠି ଠିଆହୋଇଛନ୍ତି; ସେ କଣ ଭାବିବେ କୁହ ତ ? ସ୍ଥାନ-କାଳ ବିଚାର ନକରି ଯେଉଁଠି ପାରି ସେଠି ଏମିତ କରିବସିଲେ ତୁମେ ଆଉ ମୁହଁ ଟେକି ଗ୍ଲଲିବା କୁ ଦେବି ନାହିଁ, ଦେଖୁଛୁ ।

## ନଅ

ଚନ୍ଦ୍ରମଣ୍ଡଳରେ ପହଞ୍ଚିବା ବେଳ ପାଖେଇ ଆସିଲା । କେବଳପ୍ରାୟୁ ଆମଠାରୁ ବିଦାୟ ନେଇ ଇଞ୍ଜିନ୍‌ରୁମ୍‌କୁ ଗ୍ଲଲଗଲେ । କିଛି ସମୟ ପରେ ଲାଉଡ଼ସ୍ପିକରରେ ଇଞ୍ଜିନ୍‌ରୁମ୍‌ରୁ ତାଙ୍କ ସ୍ୱର ଶୁଭିଲା—ଏଥର ଆମେ ଚନ୍ଦ୍ରମଣ୍ଡଳରେ ପହଞ୍ଚିବା ବେଳ ପାଖେଇ ଆସିଲା ଶାଙ୍ଗରିନା ! ଆସ ଏଠିକି, ଦେଖିବ ଚନ୍ଦ୍ରମଣ୍ଡଳ କ ପରିଷ୍କାର ଦିଶୁଛି ଦୂରବୀକ୍ଷଣରେ । ଆଉ ମାତ୍ର ତେତିଶ ମିନିଟ୍ ପରେ ଆମ ମହାଶୂନ୍ୟଯାନଟି ଅବତରଣ କରିବ ଚନ୍ଦ୍ରପୃଷ୍ଠରେ ।

କେବଳପ୍ରାୟୁଙ୍କ ଡ଼ାକରେ ଶାଙ୍ଗରିନା ଇଞ୍ଜିନ୍‌ରୁମ୍‌କୁ ଗଲେ—ତାଙ୍କ ପଛେ ପଛେ ମୁଁ ବି 'ଇଞ୍ଜିନ୍‌ରୁମ୍‌ରେ ଥିବା ଦୂରବୀକ୍ଷଣଯନ୍ତ୍ରରେ ଚନ୍ଦ୍ରମଣ୍ଡଳକୁ ଅନାଇ ମୁଁ ଯାହା ଦେଖିଲି, ସ୍ତବ୍ଧ ନ ହୋଇ ରହିପାରିଲି ନାହିଁ । ପୃଥିବୀପୃଷ୍ଠକୁ ପୂର୍ଣ୍ଣିମୀ ରାତିରେ ଗୋଲ୍ ଥାଳିଟି ଭଳି ଯେଉଁ ଚନ୍ଦ୍ର ଦିଶେ, ଠାଏ ଠାଏ ତା ଭିତରେ ଯେଉଁ ଅସ୍ପଷ୍ଟ କଳଙ୍କ ଚନ୍ଦ୍ରର ସୌନ୍ଦର୍ଯ୍ୟ ବୃଦ୍ଧି କରେ, ସେହିସବୁ ଅସ୍ପଷ୍ଟ ଦାଗକୁ ଗହ୍ୱରପୂର୍ଣ୍ଣ ବିରାଟ ପାହାଡ଼ ଭାବରେ ଦେଖି ବିସ୍ମିତ ହୋଇଗଲି । ଖାଲି ପାହାଡ଼ ନୁହେଁ—ସମୁଦ୍ର ନଦନଦୀ ସବୁ କିଛିରେ ଚନ୍ଦ୍ରପୃଷ୍ଠ ପରିପୂର୍ଣ୍ଣ । ଦୂରରୁ ଦେଖିଲେ ଯେ କେହି ଲୋକ ଭ୍ରମରେ ଏହାକୁ ପୃଥିବୀ ବୋଲି ଭାବିବ । ଠାଏ ଠାଏ ଦୂରବୀକ୍ଷଣ ଯନ୍ତ୍ରରେ ଘରଦ୍ୱାର, ଜନବସତି ଆଦି ଦେଖି ମୁଁ ଆହୁରି ବିସ୍ମିତ ହେଲି ।

ବେଳେବେଳେ ମୁଁ ଭ୍ରମରେ ଭାବିପକାଉଥାଏ, ଆମେ ସତେ ଆଉ ପୃଥିବୀକୁ ଫେରିଆସିଲୁ କି? ପୃଥିବୀ ଛାଡ଼ିଲାବେଳେ ମହାଶୂନ୍ୟରୁ ମୁଁ ଦୂରେଇଯାଉଥିବା ପୃଥିବୀକୁ ଯେମିତି ଦେଖିଥିଲି, ଚନ୍ଦ୍ରପୃଷ୍ଠ ମୋତେ ସେମିତି ଲାଗୁଥାଏ ।

—ଏଥର ଆମ ଯାତ୍ରା ଶେଷ ହେଲା, ଉତ୍କଳାଚନ୍ଦ୍ରି : —ମୋ ସହିତ ଦୂରବୀକ୍ଷଣଯନ୍ତ୍ରକୁ ଲକ୍ଷ୍ୟ କରୁ କରୁ ଶାଙ୍ଗରନା କହିଲେ, ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହେବ ତୁମର ଓ ତୁମେ ଚନ୍ଦ୍ରଲୋକର ନାଗରିକ ଭାବରେ ନୂତନ ଜୀବନ ଆରମ୍ଭ କରିବ ।

ଶାଙ୍ଗରନା ମୋ ସହିତ କଥାବାର୍ତ୍ତା ହେବା ଭିତରେ ହଠାତ୍ ଇଞ୍ଜିନ୍ ରୁମ୍‌ରୁ ବେତାରଫୋନ ବାଜିଉଠିଲା । କେବଲପ୍ରାୟ ଫୋନ ଧରିଲେ ।

—ହିଁ, ହିଁ···ମୁଁ କେବଲପ୍ରାୟ । ହିଁ, କଣ ଅବସ୍ଥା ?

ସେ କଣ ଶୁଣିଲେ କେଜାଣି ପୁଣି କହିବାକୁ ଲାଗିଲେ—ହିଁ ହିଁ···ହିଁ ହିଁ । ଏତେ ସମୟ ? ସଙ୍ଗେ ସଙ୍ଗେ ହେବନି ?···

—ଏଁ, କଣ କହୁଛନ୍ତି ଆପଣ, ଆହୁରି ଘଣ୍ଟାଏ ? ହିଁ, ହିଁ ? କିନ୍ତୁ···

—ତା ହେଲେ···ନା, ନା । ଆଉ କଣ କିଛି ଉପାୟ ନାହିଁ ? ହିଁ ହିଁ ଚେଷ୍ଟାକର, ମୁଁ ଫୋନ ଧରିଛି ।

କିଛି ସମୟ ପର୍ଯ୍ୟନ୍ତ ଫୋନକୁ ଉତ୍କଣ୍ଠାର ସହିତ ଧରିବା ପରେ ପୁଣି ଆରପାଖରୁ ଭାସିଆସିଲା ପୂର୍ବ ସ୍ୱର । ସେ କହିଲେ —ହୋଇପାରିବନି ? ତାହାହେଲେ ବଡ଼ ଅସୁବିଧାରେ ପଡ଼ିଲୁ ଆମେ । ଅନ୍ୟ କେଉଁଠି କଣ···

ବଡ଼ ଦୁଃଖର ସହିତ ଫୋନ ଥୋଇଦେଇ ଶାଙ୍ଗରନାକୁ କହିଲେ—ଏ ପୁଣି ଆଉ ଏକ ଅସୁବିଧା ଶାଙ୍ଗରନା ! ଚନ୍ଦ୍ରଲୋକର ନ'ଟିଯାକ ମହାଶୂନ୍ୟ-ଘାଟି ଏତେ କାର୍ଯ୍ୟବ୍ୟସ୍ତ ଯେ ଆମ ମହାକାଶଯାନ ସିଧାସଳଖ ଯାଇ ଓହ୍ଲାଇବାର ସୁବିଧା ନାହିଁ । ସେମାନେ କହୁଛନ୍ତି, ଆମକୁ ଅଧଘଣ୍ଟାଏ ପର୍ଯ୍ୟନ୍ତ ଚନ୍ଦ୍ର ଗ୍ରହପାଖରେ ଘୂରିବୁଲିବାକୁ ପଡ଼ିବ । ଅଧଘଣ୍ଟାଏ ପରେ ସାତ ନମ୍ବର ଘାଟିରେ ଆମର ଓହ୍ଲାଇବାର ଏକ କ୍ଷୀଣ ସମ୍ଭାବନା ରହିଛି ।

ଉତ୍କଣ୍ଠାର ସହିତ ପଚାରିଲେ ଶାଙ୍ଗରନା—ଦୁଇନମ୍ବର ଘାଟିରେ କଣ ହେବନି ? ଆମ ଘରକୁ ଯେ ପାଖ । ତା'ହେଲେ କଣ ତୁମେ କହୁଚ ଆମେ ନ ଓହ୍ଲାଇ ଚନ୍ଦ୍ର ଗ୍ରହପାଖରେ ଘୂରିବୁଲିବା ?

—ହିଁ, ଆଉ ଉପାୟ କଣ ଅଛି ? ସେମାନେ ଅନୁମତି ନ ଦେବା ପର୍ଯ୍ୟନ୍ତ ଆମେ ଓହ୍ଲାଇବା କେମିତି ?

—କଣ ନ'ଟାଯାକ ମହାଶୂନ୍ୟଘାଟିରେ ଏତେ ଭିଡ଼ ?

—ହିଁ, ନହେବ କାହିଁକି ? ତୁମେ ତ ଜାଣିଛ ପ୍ରଥମ ଘାଟିଟି ମଙ୍ଗଳ ଗ୍ରହ ସହିତ ସଂଯୁକ୍ତ । ମଙ୍ଗଳ ଗ୍ରହରୁ ଜଳ ଓ ବାୟୁ ଆସୁଥିବାରୁ ସେ ଘାଟିଟି ସହଜରେ ଆମ ବ୍ୟବହାର ପାଇଁ ମିଳିପାରିବ ନାହିଁ । ଦ୍ୱିତୀୟ ଓ ତୃତୀୟ ଘାଟି ଗ୍ରହାଣୁପୁଞ୍ଜ ସହିତ ସଂଯୁକ୍ତ । ସବୁବେଳେ

ତ ଆମର ଯିବା-ଆସିବା ଚାଲିଛି ଗ୍ରହାଣୁପୁଞ୍ଜକୁ । ଚତୁର୍ଥ ଓ ପଞ୍ଚମ ଘାଣ୍ଟିରୁ ବୃହସ୍ପତିର ଚନ୍ଦ୍ର ସହିତ ଆମ ଉପଗ୍ରହରୁ ଯିବା-ଆସିବା ଲାଗିରହିଛି । ସପ୍ତମ, ଅଷ୍ଟମ ଶନିର ବଳୟ ଓ ଚନ୍ଦ୍ର ସହିତ ସଂପୃକ୍ତ । ନବମ ଘାଣ୍ଟିଟି ଯାହା ପୃଥିବୀ ସହିତ ସଂପୃକ୍ତ ଥିଲା—ତାହା ଉଠାଇ ଦିଆଯାଇଛି ଓ ଶୁକ୍ର ଗ୍ରହକୁ ଯାଉଥିବା ମହାଶୂନ୍ୟଯାନଗୁଡ଼ିକ ପାଇଁ ଏହି ଘାଣ୍ଟିକୁ ଛାଡ଼ି-ଦିଆଯାଇଛି । ଗତକାଲିଠାରୁ ଏହି ପରିବର୍ତ୍ତନ କରାଯାଇଥିବାରୁ ଆମର ଓହ୍ଲାଇବାରେ ବର୍ତ୍ତମାନ ଏ ଅସୁବିଧା । ଆମ ଉପଗ୍ରହର ଲୋକେ ବର୍ତ୍ତମାନ ମହାଶୂନ୍ୟରେ ଆମ ପାଇଁ ନୂତନ ବାସସ୍ଥାନ ଖୋଜିବାରେ ବ୍ୟସ୍ତ; ତେଣୁ ବାରମ୍ବାର ଯିବା-ଆସିବା ଲାଗିଛି ଏହି ସବୁ ଗ୍ରହ-ଉପଗ୍ରହ ଭିତରେ । ପୁଣି ଆମ ଗ୍ରହାଣୁପୁଞ୍ଜ କଥା ତ ତୁମେ ଜାଣ । ସେ ସବୁ ସ୍ଥାନରୁ ମଧ୍ୟ ଆମର ମହାଶୂନ୍ୟ ଅଭିଯାନ ଚାଲିଛି ବିଭିନ୍ନ ନକ୍ଷତ୍ରମଣ୍ଡଳକୁ ଆମ ବାସୋପଯୋଗୀ ଗ୍ରହ-ଉପଗ୍ରହ ଖୋଜିବା ଉଦ୍ଦେଶ୍ୟରେ । କେବଳ ସପ୍ତମ ମହାଶୂନ୍ୟ ଘାଣ୍ଟିରେ ଭିଡ଼ ଅପେକ୍ଷାକୃତ ଟିକିଏ କମ୍ । ତେଣୁ କିଛି ସମୟ ପରେ ଏହି ଘାଣ୍ଟିରେ ଓହ୍ଲାଇବାକୁ ଆମକୁ ସୁବିଧାରେ ମିଳିବାର ଆଶା । ଆମେ ସଂକେତ ନ ପାଇଲା ପର୍ଯ୍ୟନ୍ତ ଏହି ଚନ୍ଦ୍ର ଚାରିପାଖରେ ଘୂରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

—ଏହା ବି ଗୋଟାଏ ଦିଗରୁ ଭଲ କେବଳପ୍ରାୟ ! ହତାଶାର ଏକ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ ଶାଙ୍ଗରିନା—ଉତ୍କଳାବର୍ତ୍ତି ଏହି ପରିକ୍ରମା ଭିତରେ ଚନ୍ଦ୍ରଲୋକର ବିଭିନ୍ନ ଅଂଶ ସହିତ ଏହି ମହାଶୂନ୍ୟରେ ଥାଇ ବେଶ୍ ପରିଚିତ ହୋଇ ପାରିବେ । ଚନ୍ଦ୍ରଲୋକରେ କେଉଁଠି କଣ ଅଛି ଆମେ ଏଠାରୁ ତାଙ୍କୁ ସେସବୁ ଦେଖାଇ ଦେଇ ପରିଚିତ କରାଇ ଦେଇ ପାରିବା ।

—ମନ୍ଦ ପ୍ରସ୍ତାବ ନୁହେଁ ଶାଙ୍ଗରିବା ! ଉତ୍କଳାବର୍ତ୍ତିଙ୍କର ଆମ ଦେଶ ସହିତ ପରିଚିତ ହେବାପାଇଁ ଏହା ଏକ ଅପୂର୍ବ ସୁଯୋଗ ।

× × ×

—ଚନ୍ଦ୍ରମଣ୍ଡଳ ପୃଥିବୀର ଏକ ଉପଗ୍ରହ ଭାବରେ ପୃଥିବୀ ଚାରିପାଖରେ କେମିତି ଘୂରିବୁଲୁଛି, ସେ କଥା ମୁଁ ତମକୁ ଆଗରୁ କହିସାରିଛି ଉତ୍କଳାବର୍ତ୍ତି ! ବଡ଼ ଉତ୍ସାହର ସହିତ ମୋତେ ବୁଝାଇଚାଲିଥାନ୍ତି ଶାଙ୍ଗରିନା—ଚନ୍ଦ୍ର ପୃଥିବୀର ଏକ ଉପଗ୍ରହ ହେଲେହେଁ ଏଠାକାର ଲୋକସଂଖ୍ୟା କିଛି କମ୍ ନୁହେଁ । ଚନ୍ଦ୍ରରେ ମଣିଷ ସୃଷ୍ଟି ପୃଥିବୀ ଅପେକ୍ଷା ଆଗରୁ ହୋଇଥିବାରୁ ଜୀବର ବିବର୍ତ୍ତନ ଭଳି ସଭ୍ୟତାର ବିବର୍ତ୍ତନ ଯୋଗୁ ଚନ୍ଦ୍ରର ଲୋକେ ଶିକ୍ଷା-ସଭ୍ୟତାରେ ପୃଥିବୀର ଅଗ୍ରଗାମୀ । ପୃଥିବୀର ଲୋକମାନେ ଏପର୍ଯ୍ୟନ୍ତ ବିଜ୍ଞାନ କଣ ଓ ବିଜ୍ଞାନଶିକ୍ଷାର ଗୁରୁତ୍ୱ ସମ୍ପର୍କରେ କିଛି ଜାଣିନାହାନ୍ତି । କିନ୍ତୁ ଆମର ଏଠି ଦେଖିବ, ସାଧାରଣ ଲୋକ ମଧ୍ୟ ବିଜ୍ଞାନରେ କେମିତି ଉଚ୍ଚଶିକ୍ଷିତ । ଚନ୍ଦ୍ର ଆକାରରେ ପୃଥିବୀ ଅପେକ୍ଷା ବେଶ୍ ଛୋଟ ହୋଇଥିବାରୁ ଗୋଟିଏ ଗୋଟିଏ ସ୍ଥାନରେ ବହୁତଗୁଡ଼ିଏ ଲୋକ ଖୁନ୍ଦାଖୁନ୍ଦି ହୋଇ ରହିଛନ୍ତି; ଅଥଚ ଏଡ଼େ ବଡ଼ ପୃଥିବୀରେ ଖାଲି ଜାଗା ବେଶ୍ ପଡ଼ିରହିଛି; ରହିବା

ପାଇଁ ଲୋକ ନାହାନ୍ତି । ଆମେ ଯାହା ଅନୁମାନ କରୁଛୁ, ପୃଥିବୀର ଲୋକସଂଖ୍ୟା ବର୍ତ୍ତମାନ ପନ୍ଦର କୋଡ଼ିଏ ଲକ୍ଷରୁ ବେଶି ନୁହେଁ । କିନ୍ତୁ ଆମର ଏଠାର ଲୋକସଂଖ୍ୟା କେତେ ଜାଣିଛ—କୋଡ଼ିଏ କୋଟି ପାଖାପାଖି ।

—ପୃଥିବୀରେ ଯେମିତି ନଦୀ, ସମୁଦ୍ର, ପର୍ବତ, ମରୁଭୂମି ଆଦି ରହିଛି, ଚନ୍ଦ୍ରଲୋକରେ ଠିକ୍ ସେମିତି ସବୁ ରହିଛି ! ଚନ୍ଦ୍ରଲୋକରେ ମୋଟାମୋଟି ଆଠଗୋଟି ଦେଶ, ସାତ ଗୋଟି ସମୁଦ୍ର ଓ ସାମାନ୍ୟ କେଇଗୋଟି ଉପସାଗର ରହିଛି । କିନ୍ତୁ ଦୁଃଖର କଥା, ଆମେ ବର୍ତ୍ତମାନ ଯେଉଁଗୁଡ଼ିକୁ ସାଗର କି ଉପସାଗର ବୋଲି ନାମ ଦେଇଛୁ, ସେଗୁଡ଼ିକ କେଉଁ ଦିନରୁ ସେହି ନାମର ଯଥାର୍ଥତା ହରାଇବସିଲେଣି । ତା ଅର୍ଥ, ଆମ ସାଗର ଓ ଉପସାଗରଗୁଡ଼ିକ ବର୍ତ୍ତମାନ ଜଳଶୂନ୍ୟ ହୋଇ କେବଳ ଗହ୍ୱର ଭାବରେ ପଡ଼ିରହିଛି । ଦେଖିବ ଉତ୍କଳାବର୍ତ୍ତି ! ଦୂରବୀକ୍ଷଣରେ ସେହିସବୁ ସମୁଦ୍ର ଓ ଉପସମୁଦ୍ରର ଦୁର୍ଦ୍ଦଶା ? ମାଇଲ ମାଇଲ ଗଭୀର, ଶହ ଶହ ମାଇଲ୍ ପ୍ରଶସ୍ତ ଏହି ସାଗର ଓ ଉପସାଗରଗୁଡ଼ିକ ଦେଖିଲେ ଦୁଃଖ ଆସେ । ସବୁଗୁଡ଼ିକ ଶୂନ୍ୟ, କେଉଁଠି ଟୋପାଏ ପାଣି ନାହିଁ ।

ତାହା ନହୋଇଥିଲେ—ଏକ ଦୀର୍ଘ ନିଃଶ୍ୱାସ ଛାଡ଼ି ଶାଙ୍ଗରନା କହିଲେ—ପାଣି ପାଇଁ ଆମେ ଆଜି ପୃଥିବୀର ଦ୍ୱାରସ୍ଥ ହୋଇ ନ ଥାଆନ୍ତୁ । ଏହି ଜଳର ଅଭାବ ଆଜି ଆମ ସଭ୍ୟତାର ଭବିଷ୍ୟତମୂଳରେ କୁଠାରାଘାତ କରୁଛି । ଚନ୍ଦ୍ରମଣ୍ଡଳରୁ ଯଦି କେବେ ଏହାର ସଭ୍ୟତା ଓ ଜନସମାଜ ନିଶ୍ଚିହ୍ନ ହୁଏ, ତେବେ ଏହା ଜଳ ଓ ବାୟୁର ଅଭାବ ପାଇଁ ହେବ । ଆଜିକାଲି ଚନ୍ଦ୍ରବାସୀ ଜଳବ୍ୟବହାରରେ ଯେମିତି ସାବଧାନତା ଅବଲମ୍ବନ କରୁଛନ୍ତି, ସେହିଭଳି ସାବଧାନତା ମୂଳରୁ ଅବଲମ୍ବନ କରିଥିଲେ ହୁଏତ ଆଜି ଏତେ ଜଳକଷ୍ଟ ଭୋଗୁ ନଥାନ୍ତେ ।

ଦୂରବୀକ୍ଷଣ ଯନ୍ତ୍ରରେ ଦେଖ୍ ଦେଖ୍ ଶାଙ୍ଗରନା କହିଲେ—ହେଇ ଦେଖ ଉତ୍କଳାବର୍ତ୍ତି ! ଚନ୍ଦ୍ରଲୋକର ବୃହତ୍ତମ ସାଗର 'ତାରାପେଟ୍' ହଜାର ହଜାର ବର୍ଗମାଇଲ ବ୍ୟାପିରହିଛି; କିନ୍ତୁ କେଉଁଠି ଟୋପାଏ ବି ଜଳ ନାହିଁ । ମୁଁ ଦେଖିବା ପାଇଁ ଦୂରବୀକ୍ଷଣ ଛାଡ଼ିଦେଇ ଘୁଞ୍ଚିଗଲେ ଶାଙ୍ଗରନା ।

ମୁଁ ଦୂରବୀକ୍ଷଣରେ ଆଖି ଲଗାଇ ଯାହା ଦେଖିଲି, ସ୍ତବ୍ଧ ନହୋଇ ରହିପାରିଲି ନାହିଁ । କି ବିରାଟ ଗହ୍ୱର ! ଗହ୍ୱର ଏତେ ଗଭୀର ଯେ ତାର ତଳ ପର୍ଯ୍ୟନ୍ତ ସୂର୍ଯ୍ୟକିରଣ ସ୍ପର୍ଶ କରିପାରୁନାହିଁ । କି ଘନ ଅନ୍ଧକାର ଦିଶୁଛି ସତେ ! ବାସ୍ତବିକ୍ ଜଳ ନାହିଁ ବୋଲି କେହି ପିନା ସ୍ୱାକୁ ପଗ୍ଭରୁନାହାନ୍ତି, ନଚେତ୍ ସେସବୁ ଜଳପୂର୍ଣ୍ଣ ଥିଲେ ଚନ୍ଦ୍ରଲୋକର ଅଧିବାସୀଙ୍କର କି ଉପକାର କରୁ ନଥାନ୍ତା ସତେ !

ମୁଁ ଏମିତ ଦେଖିଗ୍ଭଲିଛି; ଶାଙ୍ଗରନା କହିଲେ—ସେହି ସାଗରକୁ ଲାଗି ଦେଖୁଛ କାରିକୋଭ ଉପସାଗର । ତା ବାଁ ପଟକୁ ଦେଖ କାରାନେଭ ଉପସାଗର···ସବୁ ଶୁଖିଲାଣି । କେଉଁଠି ଟୋପାଏ ବି ପାଣି ନାହିଁ । ତୁମେ ଚନ୍ଦ୍ରମଣ୍ଡଳସାରା ବୁଲିଆସ; ଦେଖିବ, ଆମ

ସାଗର ଉପସାଗରର ଏଇମିତ ଦୁର୍ଦ୍ଦଶା ।

—ଚନ୍ଦ୍ରଲୋକର ପର୍ବତଶ୍ରେଣୀ ମଧ୍ୟ ବିରାଟ । ଆଗ୍ନେୟଗିରି ମଧ୍ୟ ଅପର୍ଯ୍ୟାପ୍ତ । ସେଥି-ଭିତରେ ଜୀବନ୍ତ ଆଗ୍ନେୟଗିରି ପ୍ରାୟ ନାହିଁ । ଜଳାଭାବରୁ ସେଠାରେ ମେଘ ସୃଷ୍ଟି ହେଉ-ନାହିଁ । ଆକାଶରେ କେଉଁଠି ମେଘଟାଏ ଭାସିବାର ଦେଖିବନି; ତେଣୁ ଆକାଶ ଭାରି ନିର୍ମଳ । ବୃଷ୍ଟି ଅଭାବରୁ ବେଳେବେଳେ ଧୂଳିଝଡ଼ ଚନ୍ଦ୍ରଲୋକର ଆକାଶକୁ ଘୋଡ଼ାଇ ରଖିଥାଏ; ଦେଖିଲେ ଯେ କେହି ଲୋକ ଭାବିବ ସତେ ଯେମିତି ଚନ୍ଦ୍ରମଣ୍ଡଳରେ ବୃଷ୍ଟି ହେବା ଉପରେ । ଧୂଳିଝଡ଼ରୁ କି କେବେ ବୃଷ୍ଟି ହୋଇପାରେ ?

—ଏ ଯିନା ହେଲା ଜଳର ଅବସ୍ଥା;କିନ୍ତୁ ବାୟୁର ଅବସ୍ଥା ତାଠାରୁ ଆହୁରି ଶୋଚନୀୟ । ଚନ୍ଦ୍ରଲୋକର ବାୟୁମଣ୍ଡଳରୁ ବାୟୁ ଧୀରେ ଧୀରେ ଅପସରିଯାଉଛି ମହାଶୂନ୍ୟ ଭିତରକୁ । ତେଣୁ ତୁମେ ଦେଖିବ ଚନ୍ଦ୍ରଲୋକରେ ବାୟୁର ଚାପ ଢ଼େର୍ କମ୍ । ନିଶ୍ୱାସପ୍ରଶ୍ୱାସ ନେବାରେ ତୁମକୁ ପ୍ରଥମେ ପ୍ରଥମେ ଖୁବ୍ ଅସୁବିଧା ଲାଗିବ । କିନ୍ତୁ ତୁମେ ଧୀରେ ଧୀରେ ଅଭ୍ୟସ୍ତ ହୋଇଯିବ ସେଥି ସହିତ; ତେଣୁ ଆଉ ଅସୁବିଧା ଲାଗିବ ନାହିଁ । ଆମର ଏହି ବାୟୁ ଅଭାବ ମେଣ୍ଟାଇବା ପାଇଁ ତୁମମାନଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିଥିଲା ।

ଦେଖ ଦେଖ ଉତ୍କଳାବର୍ତ୍ତି ! ଦୂରବୀକ୍ଷଣରେ ଲକ୍ଷ୍ୟ କରୁ କରୁ ଶାର୍ଙ୍ଗରନା କହି ଉଠିଲେ—ହେଇ ଦେଖ ଏହି ସହରଟିକୁ । ଏହି ସହରଟି ହେଉଛି ଚନ୍ଦ୍ରଲୋକର ରାଜଧାନୀ ଓ ବୃହତ୍ତମ ସହର । ହଜାର ହଜାର କୋଠାବାଡ଼ିରେ ସହରଟି ଭରିଯାଇଛି; କିନ୍ତୁ ଜାଣିଛ ଏହି ସହରର ଉପରଭାଗରେ ଯେତେ ଘରଦ୍ୱାର ଅଛି, ତାଠାରୁ ବହୁ ଅଧିକ ରହିଛି ଭୂମିତଳେ । ଭୂମିତଳର ସହର ଭୂମି ଉପର ସହରଠାରୁ ଢ଼େର୍ ବଡ । ରାଜଧାନୀର ମୁଖ୍ୟ ପ୍ରାସାଦ, ଅଫିସଘରଗୁଡ଼ିକ ଭୂମିତଳ ସହରଗୁଡ଼ିକରେ ରହିଛି । ଭୂମି ଉପର ଅଂଶରେ ମାତ୍ର ରହିଛି କେତୋଟି କଳକାରଖାନା, ବ୍ୟବସାୟ-ବାଣିଜ୍ୟ କେନ୍ଦ୍ର, ପାର୍କ ଉଦ୍ୟାନ । ଜାଣିଛ ଉତ୍କଳାବର୍ତ୍ତି ! ଚନ୍ଦ୍ରମଣ୍ଡଳର ରାଜଧାନୀର ନାମ କଣ ? ଆମ ରାଜଧାନୀର ନାମ ପୀୟୂଷଧାର । ଏହି ନାମର ତୁମର କିଛି ଅର୍ଥ ଅଛି; କିନ୍ତୁ ଆମ ପାଇଁ ଏହା ଏକ ନାମ ମାତ୍ର ।

—ତାହେଲେ ତୁମେ ଯେଉଁ ଭାଷା କହୁଛ, ସେ ଭାଷା କଣ ତୁମ ଚନ୍ଦ୍ରଲୋକର ଭାଷା ନୁହେଁ ?—ଆଶ୍ଚର୍ଯ୍ୟ ହୋଇ ମୁଁ ପଚାରିଲି ।

ଏପର୍ଯ୍ୟନ୍ତ ଚୁପ୍‌ହୋଇ ଆମ କଥାବାର୍ତ୍ତା ଶୁଣୁଥିଲେ କେବଳପ୍ରାପ୍ତ । ଏଥର ସେ କହିଉଠିଲେ—ସତେ ତ, ଆମେ ଏପର୍ଯ୍ୟନ୍ତ ତୁମକୁ ଆମ ଭାଷା କଥା କହିନୁ । ଆମେ ଯେଉଁ ଭାଷା କହୁଛୁ, ତା କଣ ଭାବୁଛ ଆମ ନିଜର ଭାଷା ? ତୁମ ଗ୍ରହକୁ ଯିବୁ ବୋଲି ଆମେ ତୁମର ଭାଷା ପରା ଶିଖିଥିଲୁ ।

ତୁମେ ଆମ ଭାଷା ଶିଖିଛ ? କେମିତି ଶିଖିଲ ?—ମୁଁ ପଚାରିଲି ।

—ସେ ଏକ ବିରାଟ ଇତିହାସ ଉତ୍କଳାବର୍ତ୍ତି ! ପୃଥିବୀ ସହ ସମ୍ପର୍କ ସ୍ଥାପନ କରିବାକୁ ହେଲେ ପୃଥିବୀର ଭାଷା ଶିଖିବା ନିହାତି ଦରକାର; ତେଣୁ ଆମେ ପୃଥିବୀକୁ ବିଶେଷତଃ ତୁମ

ଅଞ୍ଚଳକୁ ବହୁବାର ଗୁପ୍ତଚର ପଠାଇବାକୁ ବାଧ ହେଲୁ । ସେହିମାନଙ୍କ ସାହାଯ୍ୟରେ ତୁମର ଭାଷା ଶିକ୍ଷା କରି ଆମେମାନେ ସେହି ଭାଷା କହୁଚୁ । ତୁମ ଭାଷା ଶିକ୍ଷା କରୁଥିବା ଲୋକ ଆମ ଗ୍ରହରେ ଅନେକ ଅଛନ୍ତି; ଯେଉଁମାନଙ୍କ ସହିତ କଥାବାର୍ତ୍ତା କଲେ ତୁମେ ଜାଣି ପାରିବ ନାହିଁ ଯେ ସେମାନେ ତୁମ ପୃଥିବୀର ଲୋକ ନୁହଁନ୍ତି । କିନ୍ତୁ ଆମ ଦେଶର ସାଧାରଣ ଲୋକଙ୍କ ଭାଷା ଏହାଠାରୁ ଢେର୍ ଅଲଗା । ତୁମକୁ ଆମ ଗ୍ରହରେ ରହିବା ପାଇଁ ହେଲେ ଆମ ଭାଷା ଶିକ୍ଷା କରିବାକୁ ପଡ଼ିବ ।

—ତାହାହେଲେ ତ ମୋତେ ବହୁତ କଷ୍ଟ ସ୍ୱୀକାର କରିବାକୁ ହେବ କେବଳପ୍ରାପ୍ତ ! ଚନ୍ଦ୍ରଲୋକରେ ମୋ ପକ୍ଷରେ ଚଳିବା ଯେତେ ସୁବିଧାଜନକ ହେବ ବୋଲି ଭାବୁଥିଲି, ବର୍ତ୍ତମାନ ଦେଖୁଛି ପରିସ୍ଥିତି ଭିନ୍ନ ପ୍ରକାରର ହେବ ।

ଶାଙ୍ଗରିନା କହିଲେ—ଆମ ଭାଷା ଶିଖିବାପାଇଁ ତୁମେ ଚିନ୍ତା କରନା ଉତ୍କଳାବର୍ତ୍ତି ! ତୁମେ ଯେମିତି ଶୀଘ୍ର ଓ ସୁବିଧାରେ ଭାଷା ଶିକ୍ଷା କରି ପାରିବ ସେ ଦାୟିତ୍ୱ ଆମର । ଚନ୍ଦ୍ରଲୋକରେ ପହଞ୍ଚିବାର ଅଳ୍ପ କେଇଦିନ ଭିତରେ ଆମେ ତୁମକୁ ଆମ ଭାଷା ଶିଖାଇ ଦେଇ ପାରିବୁ । ତା'ଛଡ଼ା ତୁମର ଶିକ୍ଷା ବିଶେଷତଃ ବିଜ୍ଞାନ ଶିକ୍ଷାର ଦାୟିତ୍ୱ ଯେତେବେଳେ ଆମେ ପୂରାପୂରି ନେଇଛୁ, ତୁମର ସେଥିରେ ଚିନ୍ତା କରିବାର କିଛି ନାହିଁ ।

ଆମ ଭିତରେ, ଏମିତି କଥାବାର୍ତ୍ତା ଚାଲିଛି, ହଠାତ୍ ଇଞ୍ଜିନ୍‌ରୁମ୍‌ର ବେତାରଫୋନ୍ ବାଜି ଉଠିଲା । କେବଳପ୍ରାପ୍ତ ଦୌଡ଼ିଯାଇ ଫୋନ୍ ଧରି କହିଲେ—ହିଁ, ହିଁ, ମୁଁ କହୁଛି, କଣ ଅନୁମତି ମିଳିଗଲା ? ଆମେ ଚନ୍ଦ୍ର ପାଖରେ ଏତେ ସମୟ ବୁଲି ବୁଲି ପ୍ରାଣାନ୍ତକ ହୋଇଗଲୁଣି— ଅଶେଷ ଧନ୍ୟବାଦ ଆପଣଙ୍କୁ— ହିଁ, ହିଁ, କେତେ ନମ୍ବର ମହାଶୂନ୍ୟ ଘାଟୀରେ ?

ବେତାରଫୋନ୍‌ରେ କଣ ଶୁଣି କହିଲେ—ସାତ ନମ୍ବର ମହାଶୂନ୍ୟଘାଟୀରେ ? ହଉ —ବେଶ୍ କିଛି ଅସୁବିଧା ହେବନି । ଆମେ ମଧ୍ୟ ଅବତରଣ ପାଇଁ ପ୍ରସ୍ତୁତ ହୋଇସାରିଲୁଣି । ଓହ୍ଲାଇବା ପାଇଁ ଆବଶ୍ୟକୀୟ ଖବର ପାଇଗଲେ ଖୁସି ହେବୁ । ତାହା ଶିଘ୍ର ପଠାଇବା ପାଇଁ ଟିକିଏ ଚେଷ୍ଟା କରନ୍ତୁ । ଆପଣଙ୍କ ବିବରଣୀ ପାଇଲେ ହିଁ ଆମେ ଓହ୍ଲାଇବୁ ।

କେବଳପ୍ରାପ୍ତ ଅତ୍ୟନ୍ତ ଖୁସି ହୋଇ କହିଲେ—ଦେଖ ଶାଙ୍ଗ୍ ! ସବୁ ତ ଶୁଣିଲ । ଏଥର ଆମର ଓହ୍ଲାଇବା ଠିକ୍ ହୋଇଗଲା । ଆମକୁ ଓହ୍ଲାଇବାକୁ ପଡ଼ିବ ସାତ ନମ୍ବର ମହାଶୂନ୍ୟଘାଟୀରେ । ଦେଖ, ଓହ୍ଲାଇଲା ବେଳକୁ ଯେଉଁସବୁ ସାବଧାନତା ଅବଲମ୍ବନ କରିବା ଦରକାର, ତୁମେ ସବୁ ତ ଜାଣିଛ । ଦେଖିବ ଉତ୍କଳାବର୍ତ୍ତି ସେହି ଅନୁସାରେ ଯେମିତି ସାବଧାନତା ଅବଲମ୍ବନ କରନ୍ତି ।

କେବଳପ୍ରାପ୍ତଙ୍କ ଏହି ତାଗିଦାର ପରମୁହୂର୍ତ୍ତିରେ ଆମ ମହାଶୂନ୍ୟଯାନ ତଳକୁ ଓହ୍ଲାଇବା ଉପକ୍ରମ କଲା । ଆମ ମହାଶୂନ୍ୟଯାନର ବିରାଟ ଗତିବେଗ କମାଇବା ପାଇଁ ଇଞ୍ଜିନ୍‌ରୁମ୍‌ର ବହୁ ଯନ୍ତ୍ର ଏକାସାଙ୍ଗରେ ଚାଲିବାକୁ ଆରମ୍ଭ କଲା । ସେହି ଯନ୍ତ୍ରଗୁଡ଼ିକର ଘୋର ଘର୍ଘର

ଶବ୍ଦରେ ଆମ କକ୍ଷ ପ୍ରକମ୍ପିତ ହେଲାଭଳି ବୋଧ ହେଲା ।

ଏହି ସବୁ ଯନ୍ତ୍ରର ଚାଳନା ଯୋଗୁଁ ବେଗ ଘଣ୍ଟାକୁ ଶହେ କୋଡ଼ିଏ ହଜାର ମାଇଲରୁ ଚାରି ହଜାର ତିରିଶ ମାଇଲକୁ ଖସିଆସିଲା । ଏହା ସେହି ବେଗରେ ଧୀରେ ଧୀରେ ଖସିବାକୁ ଆରମ୍ଭ କଲା ଚନ୍ଦ୍ର ପୃଷ୍ଠରେ । ଓହ୍ଲାଇଲାବେଳେ ଅପୂର୍ବ ଅନୁଭୂତି । ମନେ ହେଉଥାଏ, ଆମେ ଯେମିତି ପୃଥିବୀପୃଷ୍ଠକୁ ଖସିଆସୁଛୁ । ତେବେ ଚତୁର୍ଦ୍ଦିଗରେ ବଡ଼ ବଡ଼ ସହର, ପ୍ରାସାଦ, କଳ-କାରଖାନା ଜଳଶୂନ୍ୟ ସାଗର ଆଦି ସୂଚାଇ ଦେଉଥାଏ ଯେ ଏହା ପୃଥିବୀପୃଷ୍ଠ ନୁହେଁ ।

ଆମ ଯାନ ଧୀରେ ଧୀରେ ଚନ୍ଦ୍ର ପୃଷ୍ଠରେ ଅବତରଣ କଲା । ଯାନଟି ଭୂମିରେ ରହିବାକ୍ଷଣି ଯାନର ଦ୍ୱାରଟି ମନକୁମନ ଖୋଲିବାକୁ ଆରମ୍ଭ କଲା ! ମହାଶୂନ୍ୟଯାନର ଦୁଆରମୁହଁରେ ବହୁତ ଲୋକଙ୍କର ସମାଗମ ଯୋଗୁଁ କୋଳାହଳ ଶୁଣାଗଲା । ଶାଙ୍ଗଶନା ଯାନର ଦ୍ୱାର ପାଖକୁ ଚାଲିଗଲେ । ତାଙ୍କ ପଛେ ପଛେ କେବଳପ୍ରାପ୍ତ,ସମସ୍ତଙ୍କ ପଛରେ ମୁଁ । ଦୁଆରମୁହଁରେ ଏତେଗୁଡ଼ାଏ ଲୋକଙ୍କୁ ଦେଖି ମୁଁ କିଛି ବୁଝିପାରିଲି ନାହିଁ । ପୁଣି ହାତରେ ଏମାନେ କେତେ ପ୍ରକାର ଯନ୍ତ୍ରପାତି ଧରିଛନ୍ତି । ସେମାନଙ୍କୁ ଦ୍ୱାର ବାହାରେ ଏକତ୍ରିତ ହେବାର ଦେଖି କେବଳପ୍ରାପ୍ତ ସେମାନଙ୍କ ନିକଟକୁ ଯାଇ ଚନ୍ଦ୍ରଲୋକର ଭାଷାରେ କଣ କହିଲେ । ତାପରେ ଦେଖିଲି, ଲୋକଗୁଡ଼ିକ ଦୁଆରମୁହଁରୁ ଘୁଞ୍ଚିଯାଇ କିଛି ଦୂରରେ ଠିଆହେଲେ ଓ କେବଳପ୍ରାପ୍ତ ଯାନରୁ ଓହ୍ଲାଇବାକୁ ଆରମ୍ଭ କଲେ । ତାଙ୍କ ପଛରେ ଶାଙ୍ଗଶନା, ସବା ପଛରେ ମୁଁ ।

ମୁଁ ଯାନରୁ ଯେମିତି ଓହ୍ଲାଇବାକୁ ଆରମ୍ଭ କରିଛି ନାନାପ୍ରକାର ଆଲୋକରେ ମହାଶୂନ୍ୟ ଘାଟୀଟି ଝଟକି ଉଠିଲା । ମନେହେଲା ସତେ ଯେମିତି ଶତ ନିଃଶବ୍ଦ ବିଦ୍ୟୁତ୍‌ର ଚମକ ମହାଶୂନ୍ୟଘାଟୀରେ ଖେଳାଇହୋଇଯାଇଛି । ମୁଁ ବୁଝି ପାରୁନଥାଏ ଏମାନେ କିଏ, କାହିଁକି ଏଠାକୁ ଆସିଛନ୍ତି । ମୁଁ ଶାଙ୍ଗଶନାଙ୍କ ପଛରେ ଓହ୍ଲାଉଥାଏ । ଶାଙ୍ଗଶନା କହିଲେ—ଏମାନେ କିଏ ଜାଣିଛ ଉତ୍କଳାବର୍ତ୍ତି ? ଏମାନେ ଏଠି କାହିଁକି ଭିଡ଼ ଜମାଇଛନ୍ତି କହିପାରିବ ?

ଶାଙ୍ଗଶନାଙ୍କ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ନ ଥିଲା । ସେ କହିଲେ—ପୃଥିବୀର ଲୋକ ପ୍ରଥମ କରି ଚନ୍ଦ୍ରମଣ୍ଡଳରେ ଅବତରଣ କରୁଛି । ଏହି ବାର୍ତ୍ତା ସାରା ଉପଗ୍ରହରେ ପ୍ରଚାରିତ ହୋଇଯାଇଥିବାରୁ ଏମାନେ ତୁମ ସହିତ ସାକ୍ଷାତ୍ କରିବା ପାଇଁ ଆସିଛନ୍ତି ଉତ୍କଳାବର୍ତ୍ତି ! ଆଜି ସାରା ଚନ୍ଦ୍ରଲୋକରେ ଲୋକେ ତୁମକୁ ଦେଖିବେ ଏମାନଙ୍କ ସାହାଯ୍ୟରେ । ଶହ ଶହ ଖବରକାଗଜ, ରେଡ଼ିଓ ଟେଲିଭିଜନକୁ ଏମାନେ ତୁମ ଆଗମନ ବିବରଣୀ ଯୋଗାଇବେ ପୃଥିବୀର ଲୋକଙ୍କୁ ଆମ ଉପଗ୍ରହର ଲୋକେ ଦେଖି କମ୍ ଆନନ୍ଦ ପାଇବେ ନାହିଁ ଉତ୍କଳାବର୍ତ୍ତି ! ଦେଖ, କିଛି ଭାବିବନି ତୁମେ । ପୃଥିବୀ ସମ୍ପର୍କରେ ଏମାନେ କେତେଗୁଡ଼ିଏ ପ୍ରଶ୍ନ ତୁମକୁ ନିଶ୍ଚୟ ପଚାରିବେ । ମୁଁ ଆଶା କରୁଛି, ତୁମେ ସେଗୁଡ଼ିକର ଯଥାର୍ଥ ଉତ୍ତର ଦେବାକୁ କୁଣ୍ଠାବୋଧ କରିବ ନାହିଁ । କାରଣ ତୁମର ଏହି ସହଯୋଗ ପୃଥିବୀର ଲୋକଙ୍କୁ ଆମ ଉପଗ୍ରହର ଲୋକଙ୍କ ସହିତ ସୌହାର୍ଦ୍ଦ୍ୟ ବନ୍ଧନରେ ବାନ୍ଧିପାରିବନି

ମୁଁ ତୁମ ପଛରେ ଅଛୁ, ଦରକାର ପଡ଼ିଲେ ତୁମକୁ ସାହାଯ୍ୟ କରିବ ।

ଶାଙ୍ଗରନାଙ୍କ ପଛେ ପଛେ ମୁଁ ମହାଶୂନ୍ୟଯାନରୁ ଓହ୍ଲାଇପଡ଼ିଲି । କିନ୍ତୁ ଚନ୍ଦ୍ରପୃଷ୍ଠରେ ଗୋଡ଼ ଦେଲାକ୍ଷଣି ମୋତେ ଅସ୍ୱସ୍ତି ଲାଗିଲା । ମୋର ଶ୍ୱାସ ରୁଦ୍ଧ ହୋଇଗଲା ଭଳି ବୋଧହେଲା । ମନେହେଉଥାଏ ନିଃଶ୍ୱାସ ଟାଣିନେବାକୁ ଯେତେ ଇଚ୍ଛା କରୁଥିଲେ ହେଁ ନିଃଶ୍ୱାସରେ ନେବାକୁ ଯେମିତି ଯଥେଷ୍ଟ ବାୟୁ ନାହିଁ । ମୋତେ ଲାଗୁଥାଏ, ଯେମିତି ମୋ ନିଃଶ୍ୱାସ ବନ୍ଦ ହୋଇଯାଉଛି । ମୁଁ ଯେତିକ ନିଃଶ୍ୱାସ ନେଲେ ଆଶ୍ୱସ୍ତି ହେବ, ତା'ଠାରୁ କମ୍ ହେଉଥିବାରୁ ମୋତେ ବଡ଼ ଅସ୍ୱସ୍ତି ଲାଗୁଥାଏ । ହଠାତ୍ ମୋର ଏପରି କଣ ହେଲା ଭାବିପାରିଲି ନାହିଁ । ଚାଲିବାକୁ ଇଚ୍ଛା ହେଉ ନଥାଏ ମୋଟେ । ବହୁତ କଷ୍ଟରେ ଲମ୍ବା ନିଶ୍ୱାସ ଟାଣି ଭିତରକୁ ବାୟୁ ନେବାକୁ ଚେଷ୍ଟା କରୁଥାଏ । ମୋ ଆଗେ ଆଗେ ଶାଙ୍ଗରନା ଚାଲିଥାନ୍ତି; କିନ୍ତୁ ତାଙ୍କର କିଛି ହେଉ ନଥାଏ । ସେ ବେଶ୍ ଆରାମରେ ଚାଲିଥାନ୍ତି । ଅଦୂରରେ ମୋତେ ଅଭ୍ୟର୍ଥନା କରିବାପାଇଁ ଯେଉଁ ବନ୍ଦୋବସ୍ତ ହୋଇଥାଏ, ସେଠାକୁ ଆମେ ଚାଲିଥାଉଁ । କେବଳପ୍ରାପ୍ତ ଆମଠାରୁ ଢ଼େର୍ ଆଗରେ । ପାଖକୁପାଖ ଆଗପଛ ହୋଇ ଶାଙ୍ଗରନା ଓ ମୁଁ । ମୋର ଏମିତି ଅବସ୍ଥା ହେବ, ଶାଙ୍ଗରନା କିଛି କଳ୍ପନା କରିନଥିଲେ । କାରଣ ସେ ତ ଚନ୍ଦ୍ରର ଲୋକ, ଏହାର ବାୟୁମଣ୍ଡଳ ଭିତରେ ଜନ୍ମ; ତେଣୁ ତାଙ୍କୁ କିଛି ଅସୁବିଧା ଲାଗିବ କାହିଁକି ? କିନ୍ତୁ ମୁଁ ତ ଆସୁଛି ପୃଥିବୀରୁ । ପୃଥିବୀର ଅପେକ୍ଷାକୃତ ଅଧିକ ଘନ ବାୟୁମଣ୍ଡଳ ସହିତ ମୁଁ ଅଭ୍ୟସ୍ତ, ତେଣୁ ଚନ୍ଦ୍ରଲୋକର ଲଘୁଚାପର ବାୟୁମଣ୍ଡଳରେ ଅସୁସ୍ଥ ହୋଇପଡ଼ିବା ସ୍ୱାଭାବିକ ।

ମୁଁ କିଛିଦୂର ଯିବା ପରେ ଆଉ ଯାଇପାରିଲି ନାହିଁ; ଧଇଁସଇଁ ହେବାକୁ ଆରମ୍ଭ କଲି । ହଠାତ୍ ବହୁଦୂରରୁ ଦୌଡ଼ିଆସିଲେ ଲୋକ ଯେମିତି ଧଇଁସଇଁ ହୁଏ, ମୋର ସେପରି ଅବସ୍ଥା ଦେଖି ଶାଙ୍ଗରନା ନିଜର ଭୁଲ ବୁଝିପାରିଲେ । ଆଗରେ ଯାଉଥିବା କେବଳପ୍ରାପ୍ତଙ୍କୁ ଡାକି ଲଘୁବାୟୁ-ଚାପଜନିତ ମୋର ଅସୁବିଧା ତାଙ୍କୁ ଜଣାଇଦେଲେ ।

ଶାଙ୍ଗରନାଙ୍କ ଡାକରେ କେବଳପ୍ରାପ୍ତ ପଛକୁ ଫେରିଆସି ଦୌଡ଼ିଲେ ମହାଶୂନ୍ୟଯାନ ଭିତରକୁ । ପରମୁହୂର୍ତ୍ତରେ ବାହାରିଆସିଲେ ହାତରେ ମୁଖାଭଳି ଏକ ଯନ୍ତ୍ର ଧରି । ସେହି ଯନ୍ତ୍ରଟିକୁ ମୋ ମୁହଁରେ ପିନ୍ଧାଇ ଦେଉଁ ଦେଉଁ କହିଲେ—ମୁଁ ବଡ଼ ଦୁଃଖିତ ଉତ୍କଳାବର୍ତ୍ତୀ ! ମୋର ଏଭଳି ଅନ୍ୟମନସ୍କତା ଯୋଗୁଁ ତୁମେ ଏତେ କଷ୍ଟ ପାଇଲ । ତୁମର ଏ ଅସୁବିଧା ହେବ ଜାଣି ଯାନ ଭିତରୁ ବାହାରିଲାବେଳେ ଏ ବନ୍ଦୋବସ୍ତ କରିବାର ଥିଲା; ମାତ୍ର ସେ କଥା ମୋର ମୋଟେ ଖିଆଲ ନାହିଁ । ଏଥିପାଇଁ ମୁଁ ବଡ଼ ଦୁଃଖିତ ।

କେବଳପ୍ରାପ୍ତ ମୋ ମୁହଁ ଉପରେ ସେହି ଯନ୍ତ୍ରଟି ପିନ୍ଧାଇ ଦେଉଁ ଦେଉଁ କହିଲେ— ଏଥର ତୁମର ଆଉ କିଛି ଅସୁବିଧା ହେବନାହିଁ । ପୃଥିବୀରେ ତୁମେ ଯେମିତି ଚଳପ୍ରଚଳ ହୁଅ, ଏଠାରେ ବି ସେମିତି ହୋଇପାରିବ । ବାୟୁଚାପର ପାର୍ଥକ୍ୟ ପାଇଁ ଆଉ ତୁମକୁ କଷ୍ଟ ପାଇବାକୁ ପଡ଼ିବ ନାହିଁ । ଏ ଯନ୍ତ୍ର ବି ବେଶି ସମୟ ବ୍ୟବହାର କରିବାକୁ ପଡ଼ିବ ନାହିଁ

ତୁମକୁ । ଆଉ ପ୍ରାୟ ପନ୍ଦର କୋଡ଼ିଏ ମିନଟ୍ ଭିତରେ ତୁମ ଫୁସ୍‌ଫୁସ୍ ମନକୁ ମନ ଚନ୍ଦ୍ରର ଲଘୁଗୁରୁ ବୈଶିଷ୍ଟ ବାୟୁମଣ୍ଡଳ ସହିତ ଅଭ୍ୟସ୍ତ ହୋଇଯିବ । ସେତେବେଳେ ଏ ଯନ୍ତ୍ର ଆଉ କିଛି ଦରକାରରେ ଆସିବ ନାହିଁ ।

ସେହି ଯନ୍ତ୍ରଟିକୁ ପିନ୍ଧିସାରିଲା ପରେ ବେଶ୍ ଭଲଲାଗିଲା । ନିଃଶ୍ୱାସ ପ୍ରଶ୍ୱାସ ନେବାରେ ମୋର ଆଉ କିଛି ଅସୁବିଧା ହେଲା ନାହିଁ । ପୃଥିବୀରେ ଯେମିତି ନିଃଶ୍ୱାସ ପ୍ରଶ୍ୱାସ ନେଉଥିଲି, ଠିକ୍ ସେମିତି ନେଇପାରିଲି ।

ମୋତେ ଅଭ୍ୟର୍ଥନା ଜଣାଇବାପାଇଁ ଅଦୂରରେ ଏକ ସଭାର ଆୟୋଜନ ହୋଇଥାଏ । କେବଳପ୍ରାଣ୍ଟୁ, ଶାଙ୍ଗରିନା ଓ ମୁଁ—ଆମେ ସେହି ସଭାଆଡ଼କୁ ଆଗଉଥାଉଁ । ଆମ ଆଗରେ ପଛରେ ବହୁତଗୁଡ଼ିଏ ବାର୍ତ୍ତା-ସଂଗ୍ରାହକ ଆମ ସହିତ ଚାଲିଥାନ୍ତି । ଚାଲିବାବେଳେ ଏକ ବିଚିତ୍ର ଅନୁଭୂତି ମୁଁ ଲକ୍ଷ୍ୟ କଲି । ମୁଁ ଚାଲୁଥାଏ ସତ; କିନ୍ତୁ ମୋତେ ଜଣାପଡ଼ୁଥାଏ ଯେମିତି ମୋର ଗୋଡ଼ ଚନ୍ଦ୍ରପୃଷ୍ଠରେ ଲାଗୁନାହିଁ । ଗୋଟିଏ ପାହୁଣ୍ଡ ଚାଲିବା ପାଇଁ ଶାଙ୍ଗରିନା କିମ୍ବା କେବଳପ୍ରାଣ୍ଟୁଙ୍କୁ ଯେତିକି ସମୟ ଓ ବଳ ଖର୍ଚ୍ଚ କରିବାକୁ ପଡ଼ୁଥାଏ, ମୋତେ ତା'ଠାରୁ କମ୍ ଖର୍ଚ୍ଚ କରିବାଭଳି ବୋଧହେଉଥାଏ । ଜଣାପଡ଼ୁଥାଏ ଯେମିତି ମୁଁ ଅତି ହାଲୁକା; ମୋତେ ଚାଲିବାକୁ କିଛି କଷ୍ଟ ସହିବାକୁ ହେଉନାହିଁ । ବଡ଼ ବିଚିତ୍ର—ମୁଁ ପୃଥିବୀରେ ଯେମିତି ଚାଲେ ଠିକ୍ ସେମିତି ସାଧାରଣ ଗତିରେ ଏଠି ଚାଲିଲେ ମଧ୍ୟ ମୁଁ ସବୁବେଳେ କେବଳପ୍ରାଣ୍ଟୁ ଓ ଶାଙ୍ଗରିନାଙ୍କ ଆଗରେ । ନହେବ ବା କାହିଁକି ? ସେମାନେ ପାହୁଣ୍ଡେ ପକାଇଲା ବେଳକୁ ମୋର ତିନି ପାହୁଣ୍ଡ ପଡ଼ିଗଲାଣି । ଏ କଣ ହେଉଛି ମୁଁ ଜାଣିପାରୁ ନଥାଏ । ଏହାର କାରଣ ପଚାରିବାକୁ ଭାରି ମନ ହେଉଥାଏ; କିନ୍ତୁ ସୁବିଧା ପାଉଛି କେଉଁଠୁ ? ଆମକୁ ଘେରି ଅନେକ ଲୋକ ଚାଲିଛନ୍ତି । ଏ କଥା ପଚାରିଲେ କାଳେ କଣ କେହି ଭାବିବ ? ତେଣୁ ମୁଁ ଚୁପ୍ ରହିବାକୁ ବାଧ୍ୟହେଲି ।

ସମ୍ବର୍ଦ୍ଧନା ସଭାରେ ଆମକୁ ବେଶି ସମୟ ଅଟକିବାକୁ ପଡ଼ିଲା ନାହିଁ । ଖବର-ସଂଗ୍ରାହକମାନେ ମୋତେ ଯେତେ ଯାହା ପଚାରିଲେ, ସେ ସବୁର ଉତ୍ତର ମୋ ତରଫରୁ ଦେଇଦେଲେ ଶାଙ୍ଗରିନା । ମହାଶୂନ୍ୟରେ ମୋର ଅଭିଜ୍ଞତା ସମ୍ପର୍କରେ ଜାଣିବା ପାଇଁ ସେମାନେ ଯେତେ ଆଗ୍ରହୀ ନଥିଲେ, ପୃଥିବୀର ଅବସ୍ଥା ଜାଣିବାପାଇଁ ସେମାନେ ତା'ଠାରୁ ଢେର୍ ବେଶି ଆଗ୍ରହୀ । ପୃଥିବୀରୁ ମୁଁ ଯେମିତି ଭାବରେ ପଳାଇଆସିଛି, ସେଥିରେ ପୃଥିବୀବାସୀଙ୍କ ପକ୍ଷରୁ ମୁଁ ଯେତିକି ସୌହାର୍ଦ୍ଦ୍ୟ ବହନ କରି ଆଣିଥିବି, ତାହା ପ୍ରକାଶ କରିବାପାଇଁ ଇଚ୍ଛା କଲି ନାହିଁ ।

ସମ୍ବର୍ଦ୍ଧନା ସଭା ପରେ ବାହାରିଛୁ କେବଳପ୍ରାଣ୍ଟୁଙ୍କ ଗୃହାଭିମୁଖେ, ସେତେବେଳେ ଜଣେ ପତ୍ରବାହକ ଖଣ୍ଡିଏ ପତ୍ର ଆଣିଦେଲା କେବଳପ୍ରାଣ୍ଟୁଙ୍କ ହାତରେ । ଚିଠିଟି ଆସିଛି ଚନ୍ଦ୍ରଲୋକର ରାଷ୍ଟ୍ରପତିଙ୍କଠାରୁ । ସେହି ପତ୍ରରେ ସେ ମୋତେ ଅନୁରୋଧ କରିଥିଲେ ତାଙ୍କ ବାସଭବନକୁ ଯିବାକୁ । ପତ୍ର ପାଇ ଆମେ ଆଉ କେବଳପ୍ରାଣ୍ଟୁଙ୍କ ବାସଭବନକୁ ଯିବୁ କଣ ?

ଚାଲିଲୁ ରାଷ୍ଟ୍ରପତିଙ୍କ ବାସଭବନକୁ ।

ମହାଶୂନ୍ୟଘାଟୀରୁ ବାହାରିପଡ଼ିଲା ବେଳକୁ ବାହାରେ ଏକ ବିରାଟ ସହର । ବଡ ବିଚିତ୍ର ଏ ସହର ! ସେମିତି ବେଶି ଲୋକବାକ ଥିଲା ଭଳି ଜଣାପଡୁନାହିଁ । ସହର ଭିତରେ ଏତେ ରାସ୍ତା ଅଛି; କିନ୍ତୁ ଯାନବାହନ ନାହିଁ । ତାହା ଦେଖି ମୋର ମନେପଡ଼ିଗଲା ଆମ ମହେଞ୍ଜୋଦାରୋ ସହର କଥା । ଆମ ସହରଟି ରଥ ଗାଡ଼ି ଆଦି କେତେ ଯାନ, ଘୋଡା ହାତୀ ଆଦି କେତେ ବାହାନରେ ଭରପୂର; କିନ୍ତୁ ଏଠି ସେ ସବୁ କିଛି ନାହିଁ ।

ମହାଶୂନ୍ୟଘାଟୀରୁ ବାହାରିଲା ବେଳକୁ କେବଳପ୍ରାପ୍ତଙ୍କୁ ପଚାରିଲି ଆମର ଗନ୍ତବ୍ୟ ମାର୍ଗ ବର୍ତ୍ତମାନ କୁଆଡେ ?

ସେ ହସି ହସି ଉତ୍ତର ଦେଲେ—କାହିଁକି ? ଆମେ ପରା ବର୍ତ୍ତମାନ ରାଷ୍ଟ୍ରପତିଙ୍କ ବାସ-ଭବନକୁ ଯିବା ?

—ଏଠୁ କେତେ ଦୂର ହେବ ?

—ନା' ବେଶି ବାଟ ନୁହେଁ; ମାତ୍ର ଦେଢଶ' ମାଇଲ ।

—ଏଁ, ଦେଢଶ ମାଇଲ ? ଯିବା କେମିତି ? ଯାନବାହନ ତ କିଛି ଦେଖାଯାଉ-ନାହିଁ ?

—ଓଃ ଏଇଥିପାଇଁ ପରା ପଚାରୁଛ କେଉଁଠିକି ଯିବା କଥା ! ଏ ତୁମର ମହେଞ୍ଜୋଦାରୋ ନୁହେଁ, ଉତ୍କଳାବର୍ତ୍ତି ! ଏ ହେଉଛି ଚନ୍ଦ୍ରର ଏକ ସହର । ଏଠାକାର ଯାନବାହାନ ତୁମ ସହରର ଯାନବାହନଠାରୁ ଅଲଗା । ତୁମ ସହର ଭଳି ବାହନ ଏଠି ନାହିଁ; ଅଛି କେବଳ ଯାନ । ଚନ୍ଦ୍ରଲୋକରେ ଯିବାଆସିବା କରିବାପାଇଁ ଯାନଗୁଡ଼ିଏ ହିଁ ରହିଛି; କିନ୍ତୁ ସେଗୁଡ଼ିକ ଭୂମିପୃଷ୍ଠରେ ନୁହେଁ ଭୂଗର୍ଭରେ । ଆମର ସମସ୍ତ ଯାନ ଭୂତଳେ ଯିବା ଆସିବା କରେ । ସେସବୁ ଦେଖିଲେ ତୁମେ ଆଶ୍ଚର୍ଯ୍ୟ ହୋଇଯିବ ଓ ଯେଉଁ ବେଗରେ ଯାଏ, ଶୁଣିଲେ ତୁମ କଳ୍ପନା ବି ହାର ମାନିଯିବ । ଆମର ବଡ ବଡ ସହର ଓ ନଗରନଗରୀମାନଙ୍କରେ ପ୍ରତି ପଚାଶ ଗଜ ଦୂରରେ ଗୋଟିଏ ଗୋଟିଏ କୋଠରୀ ରହିଛି । ହେଇ ଆଗରେ ଦେଖୁନା ସେଇ ଯେଉଁ କୋଠରି, ସେଇ ହେଉଛି ଗୋଟିଏ ଷ୍ଟେସନ । ଆମକୁ ସେଠାକୁ ଯିବାକୁ ପଡ଼ିବ ସେଇଠାରେ ଭୂମିତଳେ ଯାନ ସବୁ ଥୁଆହୋଇଛି । ସେଥିରୁ ଗୋଟିଏ ଯାନରେ ବସିଲେ ସେ ଆମକୁ ଆଖିପିଛୁଳାକେ ଚନ୍ଦ୍ରର ଗୋଟିଏ ପାଖରୁ ଅପର ପାଖକୁ ନେଇଯିବ ।

କେବଳପ୍ରାପ୍ତ ଏହା କହୁଁ କହୁଁ ଆମେ ଆସି ସେଇ କୋଠରି ନିକଟରେ ପହଞ୍ଚିଲୁ । କୋଠରି ଭିତରୁ ଏକ ଯନ୍ତ୍ର ଭୂମିତଳକୁ ଯାଇଛି । ସେଇ ଯନ୍ତ୍ରରେ ବସି ଭୂମିତଳକୁ ଗଲୁ । ଭୂମିତଳ ଅନ୍ଧାର ହେବ କଣ, ଭୂପୃଷ୍ଠର ଦିନଠାରୁ ଆହୁରି ଉଜ୍ଜଳ ! ଶହ ଶହ ଆଲୋକ-ମାଳାରେ ଭୂମିତଳ ରାସ୍ତା ଆଲୋକିତ । ଯେଉଁ ଆଡକୁ ଅନାଇଲାବେଳକୁ ଛୋଟ ଛୋଟ ଯାନସବୁ ଥୁଆହୋଇଛି ।

ସେହି ସବୁ ଯାନ ଆଡକୁ ହାତ ଦେଖାଇ ସାଙ୍ଗଶନା କହିଲେ—ଏହା ହେଉଛି ଚନ୍ଦ୍ରଲୋକର ଯାନ, ଉତ୍କଳାବର୍ତ୍ତି ! ଏହି ଯାନ ହିଁ ବର୍ତ୍ତମାନଆମକୁ ଘେନିଯିବ ଦେଢ଼ଶ ମାଇଲ, ରାଷ୍ଟ୍ରପତିଙ୍କ ବାସଭବନକୁ । କିନ୍ତୁ ଏହି ଯାନକୁ ଚଳାଇବା ପାଇଁ ଚାଳକର ଦରକାର ନାହିଁ । ଏହା ମନକୁମନ ଚାଳିବ । ସେହି ଯେଉଁ ଯନ୍ତ୍ରଟି ଥୁଆ ହୋଇଛି ତା ନିକଟକୁ ଯାଇ ରାଷ୍ଟ୍ରପତିଙ୍କ ପୂରା ଠିକଣା ଲେଖିଦେଲେ ହିଁ ଆମକୁ ଖଣ୍ଡିଏ ଟିକେଟ ମିଳିଯିବ । ଏହି ଟିକଟରେ ରାଷ୍ଟ୍ରପତିଙ୍କ ପୂରା ଠିକଣା ତଳକୁ କେତେଗୁଡ଼ିଏ ସାଙ୍କେତିକ ଚିହ୍ନ ଦେଖିବାକୁ ପାଇବ ।

ଶାଙ୍ଗଶନା ମୋତେ ଏମିତି ବୁଝାଉଥିଲାବେଳେ, କେବଳପ୍ରାୟ କହିଲେ—"ତୁମେ ଏଠି ଅପେକ୍ଷା କର ଶାଙ୍ଗଶନା ! ମୁଁ ଟିକଟଟାଏ ଘେନି ଆସେ ।" ଏହା କହି ଚାଲିଗଲେ କେବଳପ୍ରାୟ ।

ମୁଁ ଯନ୍ତ୍ରଟି ଆଡକୁ ଅନାଇ ଠିଆ ହୋଇ ରହିଲି । କେବଳପ୍ରାୟ ସେ ଯନ୍ତ୍ର ପାଖରେ କଣ କଲେ କେଜାଣି, ସଙ୍ଗେ ସଙ୍ଗେ ଗୋଟିଏ ଟିକେଟ ଧରି ଫେରିଆସିଲେ ।

ତାଙ୍କ ହାତରେ ଟିକେଟ ଦେଖି ପଚାରିଲି—ଏ ଟିକଟ ପାଇଁ କଣ କିଛି ଅର୍ଥ ଦେବାକୁ ପଡ଼େ ନାହିଁ ?

ହସିଲେ ଶାଙ୍ଗଶନା; ତାଙ୍କ ସହ କେବଳପ୍ରାୟ ବି— ଆମ ଦେଶରେ ଯିବାଆସିବା କରିବା ପାଇଁ ଅର୍ଥର ପ୍ରୟୋଜନ ନାହିଁ, ଉତ୍କଳାବର୍ତ୍ତି ! ଯାହାର ଯେଉଁଠିକି ଇଚ୍ଛା; ସେ ସ୍ୱଚ୍ଛନ୍ଦରେ ବିନା ବ୍ୟୟରେ ଯାଇପାରିବ । ଏହି ଯେଉଁ ଟିକଟ ଖଣ୍ଡିକ ମୋ ହାତରେ ଦେଖୁଛ ସେ ହେଲା ଆମ ଚାଳକ । ଏହି ଟିକଟ ଖଣ୍ଡିକ ଯାନ ଚଳାଇ ଆମକୁ ଦେଢଶହି ମାଇଲ ଦୂରସ୍ଥ ରାଷ୍ଟ୍ରପତିଙ୍କ ବାସଭବନଠାରେ ପହଞ୍ଚାଇ ଦେଇପାରିବ । ଆମେ ଯାନ ଚଳାଇବା ଦରକାର ନାହିଁ ।

କହୁଁ କହୁ କେବଳପ୍ରାୟ, ଶାଙ୍ଗଶନା ଓ ମୁଁ ଗୋଟିଏ ଚାରିଜଣିଆ ଯାନଠାରେ ପହଞ୍ଚିଗଲୁ । ଯାନ ଭିତରଟି ଅତି ଆରାମଦାୟକ । ଆମେ ସେଥିରେ ବସିଲା ଉତ୍ତାରୁ ଟିକଟଟିକୁ ଇଞ୍ଜିନ୍ ଭିତରେ ପୂରାଇ ଇଞ୍ଜିନ୍‌ଟିକୁ ଚଳାଇଦେଲେ କେବଳପ୍ରାୟ । ଇଞ୍ଜିନ୍‌ଟି କିଛି ସମୟ କମ୍ପିବା ପରେ ସୁଇଚ୍‌ଟିଏ ଟିପିଦେଲାକ୍ଷଣି ଯାନର ଦୁଆର ମନକୁମନ ବନ୍ଦ ହୋଇଗଲା ଓ ଏହା ଭୀମବେଗରେ ଆଗେଇ ଚାଲିଲା ଗନ୍ତବ୍ୟ ମାର୍ଗରେ ।

ଶାଙ୍ଗଶନାକୁ ପଚାରିଲି—ରାଷ୍ଟ୍ରପତିଙ୍କ ଭବନରେ ପହଞ୍ଚିବାକୁ ଆମକୁ କେତେ ସମୟ ଲାଗିବ ?

ଶାଙ୍ଗଶନା କହିବେ—ତିନି ମିନିଟରୁ ଅଧିକ ସମୟ ଲାଗିବ ନାହିଁ । ଏହି ଯାନଟି ମନକୁମନ ଭୂଗର୍ଭସ୍ଥ ଅସଂଖ୍ୟ ରାସ୍ତା ଭିତରେ ନିଜ ରାସ୍ତା ବାଛି ନେଇ ଦେଢଶ' ମାଇଲ ଦୂରରେ ଥିବା ରାଷ୍ଟ୍ରପତିଙ୍କ ଭବନରେ ପହଞ୍ଚାଇ ଦେବାପାଇଁ ତିନିମିନିଟରୁ ଅଧିକ ସମୟ ନେବ ନାହିଁ । କେଉଁ ସହର ପରେ କେଉଁ ସହର, କେଉଁ ରାସ୍ତାପରେ କେଉଁ ରାସ୍ତା— ସେସବୁ ଠିକ୍ କରିବା ପୂରା ଦାୟିତ୍ୱ ସେଇ ଟିକଟ ଖଣ୍ଡିକର ।

ପଚାରିଲି—ଚନ୍ଦ୍ରଲୋକରେ କ'ଣ ଆଉ କିଛି ଯାନ ନାହିଁ ? ଏହି କଣ ହେଲା ଏକମାତ୍ର ଯାନ ?

କେବଳପ୍ରାପ୍ତ ସାମାନ୍ୟ ହସି କହିଲେ—ବହୁ ବର୍ଷ ତଳେ ଆମ ଦେଶରେ ବିଭିନ୍ନ ପ୍ରକାର ଯାନ ଥିଲା । ସେତେବେଳେ ଏହି ଯାନ ଉଦ୍ଭାବିତ ହୋଇ ନଥିଲା; କିନ୍ତୁ ହେବାଠାରୁ ଦକ୍ଷତାରେ ଏହି ଯାନ ଅନ୍ୟ ସମସ୍ତ ଯାନକୁ ଏମିତଭାବରେ ଟପିଯାଇଛି, ଯାହା ଫଳରେ ସେସବୁର ଆଦୌ ଆଦର ରହିଲା ନାହିଁ ଓ ଏହା ଆମର ଏକମାତ୍ର ଯାନରୂପେ ବ୍ୟବହୃତ ହେଉଛି ।

ବଡ଼ କୌତୂହଳୀ ହୋଇ ପଚାରିଲି କେବଳପ୍ରାପ୍ତଙ୍କୁ—ଏହି ଯାନର ବେଗ କେତେ ? ଆମେ ଏଇ ସମୟ ଭିତରେ କେତେ ବାଟ ଆସିଲେଣି ?

ଶାଙ୍ଗରନା ଘଡ଼ିକୁ ଅନେଇ କହିଲେ—ବେଶୀ ନୁହେଁ, ଆମେ ଏଇ ଅଧ ମିନିଟ୍‌କ ଭିତରେ ପ୍ରାୟ ପଚଶ ମାଇଲରୁ ଅଧିକ ବାଟ ଆଗେଇ ଆସିଲେଣି ।

ମନେ ମନେ ଭାବୁଥାଏ, ଏତିକ ବାଟ ଯିବାରେ ଆମ ଦେଶରେ ଅନ୍ୟୂନ ଦୁଇ ତିନି ଘଣ୍ଟାରୁ କମ୍ ଲାଗି ନଥାନ୍ତା ।

କଥାପ୍ରସଙ୍ଗରେ ଶାଙ୍ଗରନା କହିଲେ—ଚନ୍ଦ୍ରଲୋକର ଅଧିକାଂଶ ଲୋକଙ୍କର ଏହି ହେଲା ଏକମାତ୍ର ଯାନ । ଏହି ଯାନ କେବଳ ଭୂମିତଳେ ହିଁ ଯିବାଆସିବା କରେ । କି ଧନୀ କି ନିର୍ଦ୍ଧନ, କି କୁଲି କି ମାଲିକ ଏହି ଗୋଟାଏ ପ୍ରକାର ଯାନରେ ହିଁ ଯିବାଆସିବା କରନ୍ତି । ଯିବାଆସିବା ମାଗଣା । ଏହି ଯାନଗୁଡ଼ିକ କାହାର ନିଜସ୍ୱ ନୁହେଁ । ଏଗୁଡ଼ିକ ରାଷ୍ଟ୍ରୀୟ ସରକାରଙ୍କର । ଯାହାର ଯେଉଁଠିକି ଇଚ୍ଛା, ସେ ମନଇଚ୍ଛା ଯାଇପାରିବ । ଯିବାଆସିବା ବାବଦରେ ଯେଉଁ ଟିକସ ଲୋକଙ୍କଠୁ ଆଦାୟ ହୁଏ, ସେହି ଟିକସ ଏଗୁଡ଼ିକର ବ୍ୟୟ ବହନ କରେ ।

ଆମେ ଏମିତି କଥାବାର୍ତ୍ତା ହେଉଛୁ ହଠାତ୍ ଏକ ଘଣ୍ଟି ବାଜିଉଠିଲା । ଶାଙ୍ଗରନା କହିଲେ—ଆମେ ଏଥର ପହଞ୍ଚିଗଲେ ରାଷ୍ଟ୍ରପତିଙ୍କ ବାସଭବନ ନିକଟରେ । ଆମେ ବର୍ତ୍ତମାନ ଏହିଠାରେ ଓହ୍ଲାଇ ରାଷ୍ଟ୍ରପତିଙ୍କ ବାସଭବନ ଅଭିମୁଖେ ଯିବା ।

ଯାନରୁ ଓହ୍ଲାଇ ଆମେ ଆଗେଇଚାଲିଲୁ । କିଛିଦୂର ଯିବା ପରେ ମୁଁ କେବଳପ୍ରାପ୍ତଙ୍କୁ ଲକ୍ଷ୍ୟ କରି ପଚାରିଲି—ଆମେ କଣ ଭୂମି ଉପରକୁ ଉଠିବା ନାହିଁ ଏଥର ? ରାଷ୍ଟ୍ରପତିଙ୍କ ବାସଭବନକୁ ଯିବା ପରା ? ଭୂଇଁ ତଳେ ତଳେ ଆଉ କେତେ ବାଟ ଯିବାକୁ ପଡ଼ିବ ?

-ଓଃ ! ତୁମେ ଜାଣିନ ଉତ୍କଳାବର୍ତ୍ତି ! ରାଷ୍ଟ୍ରପତିଙ୍କ ବାସଭବନ ଭୂମି ଉପରେ ନୁହେଁ; ଏହା ହେଉଛି ଭୂମିତଳେ । ପୃଥିବୀରୁ ଆସିଲାବେଳେ ଚନ୍ଦ୍ରପୃଷ୍ଠରେ ଓହ୍ଲାଇ ନ ପାରି ଆମେ ଯେତେବେଳେ ଚନ୍ଦ୍ର ଗ୍ରହପାଖରେ ପରିକ୍ରମା କରୁଥିଲେ, ତୁମର ମନେ ଅଛି ନା, ମୁଁ ତୁମକୁ କହିଥିଲି ଚନ୍ଦ୍ରଲୋକର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଗୃହ ଓ ଅଫିସ ଆଦି ଭୂମିତଳେ ।

ଆମେ ଏମିତି କଥାବାର୍ତ୍ତା ହୋଇ ଚାଲିଛୁ, ହଠାତ୍ ଏକ ପ୍ରକାଣ୍ଡ ଉଦ୍ୟାନ ଦେଖାଗଲା ।

ବଡ଼ ବଚନ୍ଦ ଏ ଉଦ୍ୟାନ ! ନାନାପ୍ରକାର ପତ୍ରପୁଷ୍ପରେ ଉଦ୍ୟାନଟି ପୂରିଯାଇଛି । କେତେ ରଙ୍ଗର ଫଳଫୁଲରେ ସ୍ଥାନଟି ହସିଉଠୁଛି । ଉଦ୍ୟାନ ଉପରେ ନୀଳ ଆକାଶ, ଆକାଶରେ ସୂର୍ଯ୍ୟ କିରଣ ବିତରଣରେ ବ୍ୟସ୍ତ । ଉଦ୍ୟାନରୁ ବହିଆସୁଥିବା ସୁଗନ୍ଧ ସମୀରଣରେ ମୋ ମନ ଉଲସି ଉଠିଲା ।

ବଡ଼ ଆଶ୍ଚର୍ଯ୍ୟ ହୋଇ ପଚାରିଲି କେବଳପ୍ରାପ୍ତଙ୍କୁ ଆମେ ଭୂମି ତଳେ ତଳେ ଆସୁଥିଲେ ନା ? ହଠାତ୍ ଆମେ ଭୂମି ଉପରକୁ ଚାଲିଆସିଲେ କେମିତି ଯେ ?

ଶାଙ୍ଗରନା ହସି ହସି କହିଲେ—ଆମେ ଭୂମି ଉପରକୁ ଆସିଗଲେଣି ବୋଲି ତୁମକୁ କିଏ କହିଲା ?

—କାହିଁକି, ଯେଉଁ ଫଳପୁଷ୍ପପତ୍ରଶୋଭିତ ଉଦ୍ୟାନ, ନୀଳ ରଙ୍ଗର ଆକାଶ କଣ ସାକ୍ଷ୍ୟ ନୁହେଁ ଯେ ଆମେ ବର୍ତ୍ତମାନ ଭୂମି ଉପରେ ?

କିନ୍ତୁ ସେଇଠି ତୁମର ଭୁଲ ଉତ୍କଳାବର୍ତ୍ତ ! —କେବଳପ୍ରାପ୍ତ କହିଲେ, ତୁମ ସମ୍ମୁଖରେ ଏହି ଉଦ୍ୟାନ ପ୍ରକୃତ ଉଦ୍ୟାନ ହେଲେହେଁ ଯେଉଁ ଆକାଶ ଦେଖୁଛ ତାହା କୃତ୍ରିମ ଆକାଶ । ଭୂମିତଳେ ଅନ୍ଧକାର ଭିତରେ ଏ ଉଦ୍ୟାନ ସୃଷ୍ଟି କରାଯାଇ ଉଦ୍ୟାନ ଉପରସ୍ଥ ଛାତକୁ ଏମିତି ଏକ ନୀଳ ଆଲୋକର ଆଭାରେ ରଞ୍ଜିତ କରାଯାଇଛି, ଯେ କେହି ଲୋକ ଏହାକୁ ଦେଖି ଭ୍ରମ କରିବ ଏହା ପ୍ରାକୃତିକ ଆକାଶ । ଯେଉଁ କାରଣରୁ ପୃଥିବୀର ଆକାଶ କି ଚନ୍ଦ୍ରର ଆକାଶ ନୀଳ ଦେଖାଯାଏ, ଠିକ୍ ସେହି କାରଣରୁ ଏଠାରେ କୃତ୍ରିମ ଉପାୟରେ କାର୍ଯ୍ୟକାରୀ କରାଇ ଭୂମିତଳର ଛାତକୁ ନୀଳ ଆକାଶର ରୂପ ଦିଆଯାଇଛି । ଆଉ ସେ ଯେଉଁ ସୂର୍ଯ୍ୟ ଦେଖୁଛ, ତାହା ହେଉଛି ଭୂମି ଉପରସ୍ଥ ସୂର୍ଯ୍ୟର ଏକ ପ୍ରତିବିମ୍ବ ମାତ୍ର । ତୁମେ ବିଶ୍ୱାସ କର ଉତ୍କଳାବର୍ତ୍ତ ! ଆମେ ଏବେ ବି ସେହି ଭୂମିତଳେ । ତେବେ ଏତିକି ଆଶ୍ୱାସନାର କଥା ଯେ ଆମେ ବର୍ତ୍ତମାନ ରାଷ୍ଟ୍ରପତିଙ୍କ ଉଦ୍ୟାନ ଭିତରେ ।

ଉଦ୍ୟାନ ଭିତରେ କିଛି ଦୂର ଗଲାପରେ ରାଷ୍ଟ୍ରପତିଙ୍କ ବାସଭବନ ପଡ଼ିଲା । ଘରପାଖରେ ବିରାଟ ଉଦ୍ୟାନ । ଉଦ୍ୟାନ ଭିତରେ ବିରାଟ ପ୍ରାସାଦ । ସେଠାକାର ପ୍ରାକୃତିକ ଶୋଭା ଏଡ଼େ ସୁନ୍ଦର ଯେ ସେଠାରେ କେହି ଜଣେ ଲୋକ ଠିଆହେଲେ କେବେ ଉପଲବ୍ଧି କରିବ ନାହିଁ, ସେ ଭୂମିତଳେ ଠିଆହୋଇଛି । ସେ ନିଶ୍ଚୟ ଭାବିବ, ସେ ଠିଆହୋଇଛି ଭୂମି ଉପରେ ମୁକ୍ତ ଆକାଶତଳେ । ପ୍ରାସାଦର କାରୁକାର୍ଯ୍ୟ ଓ ବିଶାଳତା ଦେଖି ସ୍ତବ୍ଧ ହୋଇପଡ଼ିଲି । ଆମେ ଭବନର ସଦର ଦରଜା ଦେଇ ଭିତରକୁ ପଶିଛୁ କି ନାହିଁ, କେତେଗୁଡ଼ିଏ ପ୍ରହରୀ ଆମ ପାଖକୁ ଦୌଡ଼ି ଆସିଲେ । ଆମକୁ କୌଣସି ପ୍ରଶ୍ନ ନ ପଚାରି ସଙ୍ଗେ ସଙ୍ଗେ ପାଛୋଟି ନେଲେ ରାଷ୍ଟ୍ରପତିଙ୍କ ଅଭ୍ୟର୍ଥନା କକ୍ଷକୁ । । ମନେହେଲା ସତେ ଯେମିତି ଏମାନେ ଆମକୁ ପାଛୋଟି ନେବା ପାଇଁ ରହିଁରହିଥିଲେ ।

ଅଭ୍ୟର୍ଥନା କକ୍ଷର ସାଜସଜ୍ଜା ମଧ୍ୟ ବର୍ଣ୍ଣନାତୀତ । ଏସବୁ ଦେଖି ମୋତେ ସ୍ୱପ୍ନ-ରାଜ୍ୟରେ ବିଚରଣ କଲା ଭଳି ଲାଗୁଥାଏ । ଆମ ପାଇଁ ନିର୍ଦ୍ଦିଷ୍ଟ ଥିବା ଆସନରେ ବସି ଆମେ ରାଷ୍ଟ୍ରପତିଙ୍କ

ଅପେକ୍ଷାରେ ରହିଲୁ । କିନ୍ତୁ ମୁଁ ଯାହା ସବୁ ଦେଖୁଥାଏ, ସେଥିରେ ପୂରାପୂରି ବିସ୍ମିତ ଓ ସ୍ତବ୍ଧ ହୋଇଯାଇଥାଏ । ମୁଁ କିଏ, କେଉଁଠୁ ଆସିଛୁ, କେଉଁଠାକୁ ଆସିଛୁ, ଏଠିକି ଆସିବାର ଉଦ୍ଦେଶ୍ୟ କଣ—ଏସବୁର ଉତ୍ତର ମୋ ପକ୍ଷରେ ଖୋଜି ପାଇବା ସେତେବେଳେ ଦୁରୂହ ହୋଇପଡ଼ିଥିଲା ।

ହଠାତ୍ ଅତର୍କିତ ଭାବରେ ପଶିଆସିଲେ ରାଷ୍ଟ୍ରପତି । ତାଙ୍କୁ ଦେଖି କେବଲପ୍ରାସ୍ତୁ ଓ ଶାଙ୍ଗରିନା ଉଠି ଅଭିବାଦନ ଜଣାଇଲେ ଓ ମୁଁ ମଧ୍ୟ ମୋର ଅଭିବାଦନ ଜଣାଇଲି ।

—ତାହେଲେ ତୁମେମାନେ ଆସିଗଲ କେବଲପ୍ରାସ୍ତୁ, ଶାଙ୍ଗରିନା ! ମୋ ଆଡ଼କୁ ଅନାଇ ସେ କହିଲେ—ଏ ବୋଧହୁଏ ହେଉଛନ୍ତି ଉତ୍କଳାବର୍ତ୍ତି । ଚନ୍ଦ୍ରଲୋକକୁ ଆସିବା ପାଇଁ ତୁମେ ଯାହାଙ୍କ ଲାଗି ଅନୁମତି ମାଗିଥିଲ ?

କେବଲପ୍ରାସ୍ତୁ ଓ ଶାଙ୍ଗରିନା ମସ୍ତକ ସଞ୍ଚାଳନ ଦ୍ୱାରା ରାଷ୍ଟ୍ରପତିଙ୍କ ଅନୁମାନ ଠିକ୍ ବୋଲି ଜଣାଇଦେଲେ ।

—ହେଉ, ତାହାହେଲେ ବସ । ବେଶ୍ ଭଲରେ ଭଲରେ ଆସିଥିବ ବୋଧେ । କିଛି ଅସୁବିଧା ହୋଇନାହିଁ ତ ବାଟରେ ?

ରାଷ୍ଟ୍ରପତି ନିଜେ ବସୁ ବସୁ ମୋ ଆଡ଼କୁ ଅନାଇ କହିଲେ—ଦେଖ ଉତ୍କଳାବର୍ତ୍ତି ! ତୁମ ପ୍ରତି ତଥା ପୃଥିବୀବାସୀଙ୍କ ପ୍ରତି ଆମେମାନେ ଚିରକୃତଜ୍ଞ । ପୃଥିବୀବାସୀ ଆମକୁ ଯେଉଁଭଳି ଭାବରେ ସାହାଯ୍ୟ କରିଛନ୍ତି, ଏମିତି ସାହାଯ୍ୟ ବିଶ୍ୱରେ ବିରଳ । ଆଜି ଆମେମାନେ ବଞ୍ଚିରହିଛୁ କେବଳ ତୁମମାନଙ୍କ ଯୋଗୁଁ । ସେଥିପାଇଁ ଚନ୍ଦ୍ରଲୋକର କୋଡ଼ିଏ କୋଟି ଅଧିବାସୀ ତୁମମାନଙ୍କଠାରେ ଚିରକୃତଜ୍ଞ । ପୃଥିବୀରୁ ଜଳ ଓ ବାୟୁ ଆଣିବାରେ ତୁମେ ଆମ ରାଷ୍ଟ୍ରଦୂତଙ୍କ ବନ୍ଧୁ ଭାବରେ ଯାହା ଉପକାର କରିଛ, ଆମେ ତାହା କେବେ ଭୁଲି ପାରିବୁ ନାହିଁ । ଆମର ସେହି କୃତଜ୍ଞତା ଜଣାଇବା ପାଇଁ ଆଜି ଆମେ ତୁମକୁ ଚନ୍ଦ୍ରଲୋକର ନାଗରିକ ଭାବେ ସମସ୍ତ ସୁବିଧା ଓ ସୁଯୋଗ ଦେବାକୁ ପ୍ରସ୍ତୁତ । ଆମେ ଜାଣିଛୁ, ପୃଥିବୀର ଲୋକେ ଅଶିକ୍ଷା, ଅଜ୍ଞତା ଓ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ କଷ୍ଟରେ କାଳାତିପାତ କରୁଛନ୍ତି । କିନ୍ତୁ ଆମେ ତୁମକୁ ସେଥିରୁ ଉଦ୍ଧାର କରି ଶିକ୍ଷା, ସଭ୍ୟତା, ସୁସ୍ଥ ବାତାବରଣର ସୁଯୋଗ ଦେଇ ଚନ୍ଦ୍ରଲୋକର ଏକ ନାଗରିକ ଭାବରେ ଗଢ଼ିବାକୁ ପ୍ରସ୍ତୁତ । ମୋର ଆଶା, ତୁମର ଏଠା ରହଣି ବେଶ୍ ଆନନ୍ଦଦାୟକ ହେବ ।

ତାପରେ ସେ ଆମ ତିନିଜଣଯାକଙ୍କୁ ଲକ୍ଷ୍ୟ କରି କହିଲେ—ହଁ, ତୁମେମାନେ ବର୍ତ୍ତମାନ ଆସି ପହଞ୍ଚିଛ; ବଡ଼ କ୍ଲାନ୍ତ ହୋଇପଡ଼ିଥିବ ନିଶ୍ଚୟ । ମୁଁ ଆଉ ତୁମର ସମୟ ନଷ୍ଟ କରିବାକୁ ଚାହୁଁନି । ତୁମେମାନେ ବର୍ତ୍ତମାନ ଯାଇ ବିଶ୍ରାମ ନିଅ ।

ଆମେ ଉଠିବାକୁ ଉଦ୍ୟତ ହେଉଛୁ, ରାଷ୍ଟ୍ରପତି ମୋତେ ପୁଣି କହିଲେ—ହଁ, ଉତ୍କଳାବର୍ତ୍ତି, ଭୁଲିଗଲି କହିବାକୁ । ତୁମେ ବର୍ତ୍ତମାନ ଚନ୍ଦ୍ରଲୋକର ସମ୍ମାନାସ୍ପଦ ଅତିଥି । ତୁମେ ରହିବା ପାଇଁ ଆମ ଅତିଥି ଭବନରେ ସବୁ ବନ୍ଦୋବସ୍ତ ହୋଇସାରିଛି । ବୋଧହୁଏ

ସେଠି ରହିବାରେ କିଛି ଅସୁବିଧା ହେବନାହିଁ ତୁମର ।

ରାଷ୍ଟ୍ରପତିଙ୍କ କଥା ଶୁଣି କେବଳପ୍ରାସ୍ତ ବିମୀତଭାବେ କହିଲେ—ଆପଣ ଜାଣନ୍ତି ଉତ୍କଳାବନ୍ତି ଏଠାରେ ପୂରାପୂରି ନୂଆ । ସେ ଏଠାକାର କାହାରି ସହିତ ପରିଚିତ ନୁହଁନ୍ତି ।, ଅତିଥିଭବନରେ ରହିଲେ ତାଙ୍କ ଚଳାଚଳରେ ଅସୁବିଧା ଯେ ନ ହେବ, ତାହା କହିହେବ ନାହିଁ । ତା'ଛଡ଼ା ଏଠାକାର ଭାଷା ସହିତ ସେ ପରିଚିତ ନୁହଁନ୍ତି । ତେଣୁ ଆମେ ଠିକ୍ କରିଛୁ, ସେ କିଛିଦିନ ଆମର ଅତିଥି ହୋଇ ଆମ ଘରେ ଅବସ୍ଥାନ କରିବେ । ଆମ ଭାଷା, ଦେଶ ଓ ଲୋକଙ୍କ ସହିତ ପରିଚିତ ହୋଇସାରିଲେ ଅନ୍ୟତ୍ର···

ରାଷ୍ଟ୍ରପତି ଆନନ୍ଦିତ ହୋଇ କହିଲେ—ବେଶ୍ ଭଲ ପ୍ରସ୍ତାବ କରିଛ, କେବଳପ୍ରାସ୍ତ ! ମୋର ସେଥିରେ ଆପତ୍ତି ନାହିଁ । ପୁଣି ମୋ ଆଡ଼କୁ ଅନାଇ ସେ କହିଲେ—ତେବେ ମନେରଖ, ତୁମର ଯଦି କେତେବେଳେ କିଛି ଅସୁବିଧା ହୁଏ ସଙ୍ଗେ ସଙ୍ଗେ ମୋତେ ଦେଖା-କରିବାକୁ ଯେମିତି ନ ଭୁଲ । ତୁମେ ସାରା ଚନ୍ଦ୍ରଲୋକର ଅତିଥି । ତୁମପ୍ରତି ଧ୍ୟାନ ଦେବା ପାଇଁ ଆମେ ସମସ୍ତେ ସଜାଗ ।

ରାଷ୍ଟ୍ରପତିଙ୍କୁ ଉପଯୁକ୍ତ ଅଭିବାଦନ ଜଣାଇ ତାଙ୍କଠାରୁ ବିଦାୟ ନେଲୁ । ରାଷ୍ଟ୍ରପତି-ଭବନରୁ ବାହାରି ଆମେ ଚାଲିଲୁ ଶାଙ୍ଗରିନାଙ୍କ ଘର ଅଭିମୁଖେ । ଶାଙ୍ଗରିନା କଥାପ୍ରସଙ୍ଗରେ କହିଲେ—ରାଷ୍ଟ୍ରପତି-ଭବନଠାରୁ ତାଙ୍କ ଘର ବେଶି ଦୂର ନୁହେଁ; ମୋଟେ ଅଢ଼େଇଶ ମାଇଲ ଓ ସେଠାରେ ପହଞ୍ଚିବାକୁ ପାଞ୍ଚମିନିଟ୍‌ରୁ ବେଶି ସମୟ ଲାଗିବ ନାହିଁ ।

ଆମେ ଯେମିତି ଯାନରେ ଆସିଥିଲୁ ଠିକ୍ ସେମିତି ଏକ ଯାନରେ ବସି ବାହାରିଲୁ ଶାଙ୍ଗରିନାଙ୍କ ଘର ଅଭିମୁଖେ ।

## ଦଶ

—ରିନା ! ···ଦେଖିଲୁଣି ଆମ ଘରକୁ ଆଜି ଅତିଥି ହୋଇ କିଏ ଆସିଛନ୍ତି ? ମନେ ଅଛି ନା ତୋର, ତେର୍ ଦିନ ତଳେ ତୁ ଦିନେ କହୁଥିଲୁ ପୃଥିବୀ ବିଷୟରେ ସ୍ୱପ୍ନ ଦେଖିଥିଲୁ ବୋଲି । ସ୍ୱପ୍ନରେ ତୁ ପୃଥିବୀକୁ ଯାଇଥିଲୁ ଓ ସେଠି କେତେ କଣ ଦେଖି ଚନ୍ଦ୍ରଲୋକକୁ ଫେରିଆସିଥିଲୁ । ପୃଥିବୀର ପ୍ରତ୍ୟେକ ଜିନିଷ ତୋତେ ସ୍ୱପ୍ନରେ ମୁଗ୍‌ଧ କରିଥିଲା । ଏମିତି କେତେ କ'ଣ ସେଦିନ ତୁ ଗପୁ ନ ଥିଲୁ ମୋ ଆଗେ ? ଆଜି ସେହି ପୃଥିବୀରୁ ଆମେ ନେଇଆସିଛୁ ଗୋଟିଏ ବିଚିତ୍ର ଜିନିଷ । ଆସିଲୁ ଏଆଡ଼େ, ଦେଖିଲୁ ସ୍ୱାକ୍ଷି, ଏ କିଏ ?—ଘରଭିତରକୁ ପଶୁପଶୁ ଶାଙ୍ଗରିନା ପାଟିକରି ଡାକିଲେ ତାଙ୍କ ସାନଭଉଣୀ ଶାଙ୍ଗରିନାକୁ ।

ଅପା, ଯାଉଛି—କହି ଆମ ଆଡ଼କୁ ଦଉଡ଼ିଆସୁଥିଲା ଯୁବତୀ ଶାଙ୍ଗରିନା; କିନ୍ତୁ ମୋତେ

ଦେଖି ସେ ଦପ୍‌କନା ଠିଆହୋଇଗଲା । ବୋଧହୁଏ ସେ ଆଶା କରିନଥିଲା ତା ଭାଇ ଓ ଅପାଙ୍କ ମେଳରେ ଏମିତି ଏକ ଅପରିଚିତ ଲୋକକୁ ଦେଖିବାକୁ ପାଇବ ।

ଶାଙ୍ଖରିନା ଚୁପ୍‌ହେବା ଦେଖି ଶାଙ୍ଗରିନା କହିଲେ—କଣ, ଚୁପ୍ ହୋଇ ଠିଆ-ହୋଇଗଲୁ ଯେ ? ପୃଥିବୀ ଗ୍ରହର ଲୋକଙ୍କୁ ଦେଖି ତୁ କଣ ସ୍ୱାଗତ ଜଣାଉନୁ ? ତୋର ପରା ସବୁବେଳେ ଝୁଙ୍କ ମୋ ସହିତ ପୃଥିବୀକୁ ଯିବାପାଇଁ ? ସେଥର ମୋ ସହିତ ପୃଥିବୀକୁ ଯିବାପାଇଁ ଜିଦ୍ ଧରି ଅନୁମତିପତ୍ର ଆଣିବାପାଇଁ ଆମ ରାଷ୍ଟ୍ରପତିଙ୍କ ପର୍ଯ୍ୟନ୍ତ ଚାଲିଯାଇଥିଲୁ । ଆମେ ତୋତେ ପୃଥିବୀକୁ ନେଇ ନ ପାରିବାରୁ, ପୃଥିବୀକୁ ଆଜି ତୋ ପାଖକୁ ନେଇଆସିଛୁ । ଏଥିରେ ତ ତୁ ଆନନ୍ଦରେ ଅଧୀର ହୋଇ ଉଠିବାକଥା ! ଏମିତି ଚୁପ୍ ହୋଇ ଠିଆହୋଇ ରହିଲୁ କାହିଁକି ?

ମନେହେଲା ଶାଙ୍ଖରିନା ଲଜ୍ଜାଶୀଳା । ବୋଧହୁଏ ଯୁବତୀ ମାନେ ହିଁ ଏ ଗୁଣର ଅଧିକାରିଣୀ; ସେ ଚନ୍ଦ୍ରଲୋକର ହୁଅନ୍ତୁ ବା ପୃଥିବୀର ହୁଅନ୍ତୁ । ଶାଙ୍ଗରିନା କହିଲେ—ଏଠିକି ଆ ରିନା ! ଏହି ନବାଗତ ହେଉଛନ୍ତି ଆମର ବନ୍ଧୁ ପୃଥିବୀର ଅଧିବାସୀ ଉତ୍କଳାବର୍ତ୍ତି । ପୃଥିବୀରେ ଆମର ବହୁତ ଉପକାର କରିଛନ୍ତି ଓ ଆମର ଅତିଥି ଭାବରେ ଚନ୍ଦ୍ରଲୋକକୁ ଆସିଛନ୍ତି । ତାପରେ ମୋ ଆଡ଼କୁ ଅନାଇ ଶାଙ୍ଗରିନା କହିଲେ—ଉତ୍କଳାବର୍ତ୍ତି ! ଏ ହେଉଛି ମୋ ସାନଭଉଣୀ, ଶାଙ୍ଖରିନା । ଆମେ ମାତ୍ର ଦୁଇଭଉଣୀ । ସେ ବର୍ତ୍ତମାନ ବିଶ୍ୱବିଦ୍ୟାଳୟର ଛାତ୍ରୀ ।

—ଆଉ କାହିଁକି ବିଳମ୍ବ, ଭଦ୍ରେ ? ଏଥର ତୁମ ଅପାଙ୍କୁ ଅଭ୍ୟର୍ଥନା କରି ଘରକୁ ନିଅ । ଅଢ଼େଇ ଲକ୍ଷ ମାଇଲ ଦୂରରୁ ଆସି ଆମେ ଏଠି ପହଞ୍ଚିଛୁ । ଆମର କିଛି ଚର୍ଚ୍ଚା କରିବ ନା ନାହିଁ ? କହୁଁ କହୁଁ କେବଳପ୍ରାୟ ବସିପଡ଼ିଲେ ବୈଠକଖାନାର ଏକ ଚେୟାର ଉପରେ । ମୋତେ ବସିବାପାଇଁ ଇଙ୍ଗିତ ଦେଇ ଶାଙ୍ଗରିନାକୁ କହିଲେ— ଦେଖ ଶାଙ୍ଗ୍ ! ତୁମେ ପଛେ ଯାହା ଭାବ, ଆମେ ଏଠାରେ ବସୁଛୁ । ତୁମେ ଦି'ଭଉଣୀ ଆମ ଖାଇବା ପିଇବା ଚର୍ଚ୍ଚା ନକଲା ପର୍ଯ୍ୟନ୍ତ ଆମ ଗୋଡ଼ ଏଠୁ ଉଠୁନି ।

ଭଉଣୀକୁ ନେଇ ଶାଙ୍ଗରିନା ଘର ଭିତରକୁ ଚାଲିଗଲେ । କିଛି ସମୟ ପରେ ଶାଙ୍ଖରିନାଙ୍କ ହାତରେ ଆମ ପାଇଁ କିଛି ଜଳଖିଆ ପଠାଇଦେଇ ସେ ନିଜେ ଉଷ୍ଣ ଉତ୍ତେଜକ ପାନୀୟ ଧରି ଆମ ଆଖକୁ ଆସିଲେ । ସେତେବେଳକୁ ଶାଙ୍ଖରିନା ଆମ ଦୁଇଜଣଙ୍କ ଆଗରେ ଜଳଖିଆ ଥୋଇଦେଇ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲାଣି । ଶାଙ୍ଗରିନା କୋଠରି ଭିତରକୁ ଆସୁ ଆସୁ କହିଲେ—ରିନାକୁ ଏଠାକୁ ପଠାଇଦେଲି ତୁମମାନଙ୍କ ଚର୍ଚ୍ଚା କରିବା ପାଇଁ; ଦେଖୁଛି ସେ ପୁଣି ତ କୁଆଡ଼େ ଚାଲିଗଲାଣି ? ଏହା କହି ସେ ଟେବୁଲ ଉପରେ ପାନୀୟ ଥୋଇ ଘରୁ ବାହାରିଯାଉଥିଲେ, ସେତିକବେଳେ ଶାଙ୍ଗରିନାଙ୍କ ମା' ଓ ବାପା ଘର ଭିତରକୁ ପଶିଆସିଲେ ।

—ଆରେ ପାଗଳା, ତୁ କେତେବେଳୁ ଆସିଲୁଣି ? ଆଜି ପୃଥିବୀରୁ ଫେରିବୁ ବୋଲି

ରନା କହୁଥିଲି । ଏହି ବୋଧହୁଏ ଶେଷ ଥର । ପୃଥିବୀକୁ ଯିବା ଆଉ ଦରକାର ପଡ଼ିବ ନାହିଁ ବୋଧହୁଏ ?—ଶାଙ୍ଗରନାଙ୍କ ବାପା ପଚାରିଲେ ଘର ଭିତରକୁ ପଶି ଆସୁଁ ଆସୁଁ ।

—ହଁ, ବାପା ! ଆମର ଆଉ ଯିବା ଦରକାର ପଡ଼ିବ ନାହିଁ । ଆମେ ଏଥର ଯେତେ ଜଳ ଓ ବାୟୁ ପୃଥିବୀରୁ ଘେନିଆସିଛୁ, ତାହା ଆମର ସହସ୍ରାଧିକ ବର୍ଷରୁ କମ୍ ଯିବ ନାହିଁ । ଆମେ ତ ଆଉ କିଛି ବର୍ଷ ପରେ ଚନ୍ଦ୍ରଲୋକ ଛାଡ଼ି ଅନ୍ୟ ଗ୍ରହକୁ ଚାଲିଯିବାପାଇଁ ଚେଷ୍ଟା କରୁଛୁ; ତେଣୁ ପୃଥିବୀରୁ ଆଉ ଜଳ ଓ ବାୟୁ ଆଣିବା ଆବଶ୍ୟକ ହେବନାହିଁ ।

ହଁ, ବାପା !—ମୋ ଆଡ଼କୁ ଦେଖାଇ ଶାଙ୍ଗରନା ତାଙ୍କ ବାପାଙ୍କୁ କହିଲେ—ତୁମେ ଏହାଙ୍କୁ ଚିହ୍ନିନା । ଏ ହେଉଛନ୍ତି ଉଜ୍ଜଳାବନ୍ତି, ପୃଥିବୀର ଲୋକ । ଆମ ଉପଗ୍ରହର ଅତିଥି ଭାବରେ ସେ ଏଠାକୁ ଆସିଛନ୍ତି । ପୃଥିବୀରୁ ଆମେ ଯେଉଁ ଜଳ ଓ ବାୟୁ ଆଣିଲୁ ସେଥିରେ ଯାଙ୍କ ସାହାଯ୍ୟ ଅତୁଳନୀୟ । ପୃଥିବୀରେ ଏ ଆମର ପ୍ରଧାନ ସାହାଯ୍ୟକାରୀ ଥିଲେ, ବାପା ! ଆମ ନିମନ୍ତ୍ରଣକ୍ରମେ ସେ ଚନ୍ଦ୍ରଲୋକ ଭ୍ରମଣରେ ଆସିଛନ୍ତି । ଉଜ୍ଜଳାବନ୍ତିଙ୍କୁ ଚନ୍ଦ୍ରଲୋକର ମହାମାନ୍ୟ ରାଷ୍ଟ୍ରପତି ଅତିଥିଭାବରେ ଆମ ଅତିଥି-ଭବନରେ ରଖିବାପାଇଁ ଇଚ୍ଛୁକ; କିନ୍ତୁ ସେ ଏହି ଅଜଣା ରାଜ୍ୟରେ ଏକୁଟିଆ ଚଳିପାରିବେ ନାହିଁ ବୋଲି ଆମେ ତାଙ୍କ ଆମର ଅତିଥି ଭାବରେ ଘରକୁ ନେଇଆସିଛୁ ।

ବୃଦ୍ଧ ଅତ୍ୟନ୍ତ ଖୁସି ହୋଇ କହିଲେ—ବାଃ ! ପୃଥିବୀର ଲୋକଙ୍କୁ ସଶରୀରେ ଦେଖି ଆମେ ନିଜକୁ କେଡ଼େ ଭାଗ୍ୟବାନ୍ ନ ମଣୁଛୁ ? କେତେ ଭାଗ୍ୟ ସତେ ଆମମାନଙ୍କର ? କାହିଁ ପୃଥିବୀ, କାହିଁ ଚନ୍ଦ୍ର ? ସେଠାର ଲୋକ ଆମ ଘରେ ପଦାର୍ପଣ କଲେ, କେଡ଼େ ସୌଭାଗ୍ୟ ଆମର ! କେତେ ବର୍ଷତଳେ ଆମ ଦେଶରେ ଯେତେବେଳେ ଶିକ୍ଷା-ସଭ୍ୟତା ଆଜିକାଲିକା ଭଳି ଆଗେଇ ନଥିଲା, ଲୋକେ ନିହାତି ଅଜ୍ଞ ଥିଲେ ଓ ଅତ୍ୟଧିକ ଈଶ୍ୱରବିଶ୍ୱାସ କରୁଥିଲେ, ପୃଥିବୀ ସମ୍ବନ୍ଧରେ ଆମ ଲୋକଙ୍କ ଧାରଣା କଣ ଥିଲା, ଜାଣିଛୁ ମା' ?

ଶାଙ୍ଗରନା ମୁଣ୍ଡ ହଲାଇ ନିଜ ଅଜ୍ଞତା ଜଣାଇଲେ । କେବଳଦ୍ରାୟୁଙ୍କ ଆଡ଼କୁ ଅନାଇଁ ବୃଦ୍ଧ ପଚାରିଲେ —ତୁମେ ଜାଣିଛ ବାପ ?

ସେ ବି ନିଜ ଅକ୍ଷମତା ଜଣାଇବାକୁ ବାଧ୍ୟ ହେଲେ ।

ବୃଦ୍ଧ ଆରମ୍ଭ କଲେ—ଆମ ଦେଶର ସେ କାଳର ଲୋକଙ୍କ ଧାରଣା ଥିଲା ଯେ ପୃଥିବୀରେ ଦେବତାମାନେ ବାସକରନ୍ତି । ଆମ ଉପଗ୍ରହର ଲୋକମାନେ ମରିଗଲେ ସେମାନଙ୍କ ଆତ୍ମା ପୃଥିବୀକୁ ଯାଏ । ଯଦି କେହି ଜୀବନରେ ପୁଣ୍ୟ କରିଥାଏ, ତେବେ ସେ ପୃଥିବୀରେ ଖୁବ୍ ଆନନ୍ଦରେ ରହେ;ଯଦି କେହି ଜୀବନରେ ପାପ କରିଥାଏ,ତେବେ ସେଠାରେ ନର୍କରେ ପଡ଼ି ଦଣ୍ଡିତ ହୁଏ । ଯେଉଁମାନେ ଖୁବ୍ ପୁଣ୍ୟ କରିଥାନ୍ତି, ସେମାନେ ମୃତ୍ୟୁପରେ ଅମର ହୋଇ ପୃଥିବୀରେ ବସବାସ କରନ୍ତି; ଆଉ ନରଦେହ ବହି ଚନ୍ଦ୍ରଲୋକକୁ ଫେରି ଆସନ୍ତି ନାହିଁ । ସାରା ଜଗତର ସ୍ରଷ୍ଟା ଭଗବାନ ପୃଥିବୀରେ ଅବସ୍ଥାନ କରନ୍ତି ଓ ତାଙ୍କରି ଆଦେଶରେ ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ପ୍ରକୃତି ସବୁ କିଛି ପରିଚାଳିତ ହୁଅନ୍ତି । ଖାଲି ସେତିକି

ନୁହେଁ, ଆଉ ଗୋଟିଏ ଅଜବ ବିଶ୍ୱାସ ଆମ ଲୋକଙ୍କର ଥିଲା । ତୁମେମାନେ ଶୁଣିଲେ ହୁଏତ ହସିବ । ସେମାନେ ବିଶ୍ୱାସ କରୁଥିଲେ— ଆମର ଯିଏ ଚନ୍ଦ୍ର, ପୃଥିବୀର ସିଏ ସୂର୍ଯ୍ୟ; ପୃଥିବୀର ଯିଏ ଚନ୍ଦ୍ର, ଆମର ସିଏ ସୂର୍ଯ୍ୟ । ପୃଥିବୀ ସମ୍ବନ୍ଧରେ ଏମିତି କେତେ ବିଚିତ୍ର ବିଶ୍ୱାସ ଯେ ଲୋକଙ୍କର ଥିଲା, ତାର କଳନା ନାହିଁ । କିନ୍ତୁ ଆମ ଦେଶରେ ଯେତେବେଳେ ଶିକ୍ଷାର ପ୍ରସାର ହେଲା, ବିଜ୍ଞାନର ଉନ୍ନତି ଘଟିଲା, ବିଜ୍ଞାନବଳରେ ଆମେ ଜାଣିପାରିଲେ ପୃଥିବୀ କଣ, ସେଠି କିଏ ଅବସ୍ଥାନ କରନ୍ତି ? ପୃଥିବୀ ସମ୍ପର୍କରେ ପୂର୍ବଧାରଣା ଆଉ କାହାରି ମନରେ ରହିଲା ନାହିଁ । ଆଜିକାଲି ସମସ୍ତେ ଜାଣିଲେଣି ଯେ ପୃଥିବୀ ଗୋଟିଏ ଗ୍ରହ । ଆମର ଏହି ଚନ୍ଦ୍ର ସୃଷ୍ଟି ହୋଇଛି ପୃଥିବୀରୁ ଓ ପୃଥିବୀ ଚାରିପାଖରେ ଚନ୍ଦ୍ର ଘୂରୁଥିବାରୁ ଏହା ପୃଥିବୀର ଏକ ଉପଗ୍ରହ । ଆମ ଲୋକେ ଏବେ ବେଶ୍ ଜାଣିପାରିଲେଣି ଯେ ଚନ୍ଦ୍ରଲୋକର ଆକାଶରେ ପୃଥିବୀ ହେଉଛି ଚନ୍ଦ୍ର; ପୃଥିବୀର ଆକାଶରେ ଚନ୍ଦ୍ର ହେଉଛି ଆମର ଏହି ଉପଗ୍ରହ । ପୃଥିବୀରେ ମଧ୍ୟ ଆମ ଭଳି ମଣିଷ ଅଛନ୍ତି ବୋଲି ଆମ ଲୋକେ ବୁଝିଲେଣି । ଗତ ଅଳ୍ପ କେଇ ବର୍ଷତଳେ ଆମେ ଜାଣିଲୁ ଯେ ପୃଥିବୀରେ ଯେଉଁ ଲୋକମାନେ ଅଛନ୍ତି, ସେମାନେ ଠିକ୍ ଆମଭଳି । ପୃଥିବୀରେ ଦେବତା ଭଗବାନ ଥିବା ଭୁଲ ବିଶ୍ୱାସ କେଉଁଦିନରୁ ଦୂର ହୋଇଗଲାଣି । ଭଗବାନ ଓ ଦେବତାଙ୍କ ଅସ୍ତିତ୍ୱ କଥା ଆମ ଚନ୍ଦ୍ରଲୋକରେ ତ କେହି ସ୍ୱୀକାର କରୁନାହାଁନ୍ତି; ସେମାନେ ପୃଥିବୀରେ ଥିବା କଥା କିଏ କାହିଁକି ବା ଆଉ ମନକୁ ଆଣିବ ?

କେବଳପ୍ରାପ୍ତିଙ୍କୁ ଲକ୍ଷ୍ୟ କରି ସେ କହିଲେ—ତୁମେ ଏସବୁ କଥା ଜାଣିନା କେବଳପ୍ରାପ୍ତି ! କାରଣ ତୁମେ ଆମ ଦେଶର ପୁରାତନ ଶାସ୍ତ୍ର କେବେ ଲେଉଟାଇ ନାହଁ । ଲେଉଟାଇଥିଲେ ହୁଏତ୍ ତୁମେ ଜାଣିଥାନ୍ତ ଆମର ସେ କାଳର ଲୋକମାନଙ୍କର ଇଶ୍ୱର, ଦେବତା ଆଦି ନାନା ରକମର ବିଶ୍ୱାସ କଥା ।

ମୁଁ ଅବଶ୍ୟ ବିଶେଷ ଭାବେ ଜାଣିନାହିଁ—କେବଳପ୍ରାପ୍ତି କହିଲେ—ତେବେ କେତେକଙ୍କଠାରୁ ଶୁଣିଛି ଯେ ଆମ ଦେଶର ଲୋକେ ବହୁ ପୂର୍ବକାଳରେ ଇଶ୍ୱର ବୋଲି କଣ ଗୋଟାଏ ଅଛି, ଏହା ବିଶ୍ୱାସ କରୁଥିଲେ । ମୁଁ ବୁଝିପାରିଲିନି ପୁଣି ସେ ଇଶ୍ୱର କି ଜିନିଷ । ସେ ଇଶ୍ୱର ପୁଣି ଏତେ ଶକ୍ତିଶାଳୀ ଯେ ତାଙ୍କର ନିର୍ଦ୍ଦେଶରେ ପ୍ରକୃତି, ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଗ୍ରହ-ନକ୍ଷତ୍ର ଆଦି ସୃଷ୍ଟି ଓ ଆଉଯାଉ ହୁଅନ୍ତି ।

ଆମ ଦେଶର ଲୋକଗୁଡ଼ାକ ସତେ କେତେ ବୋକା ଥିଲେ ସେ ଯୁଗରେ—ଶାଙ୍ଗଣନା ନିଜକୁ ସମ୍ଭାଳି ନପାରି କହିପକାଇଲେ—ବୁଦ୍ଧିବୃତ୍ତି ବୋଲି ସେମାନଙ୍କର କିଛି ଗୋଟାଏ ନଥିଲା । ବୋଧହୁଏ ତା ନ ହୋଇଥିଲେ ଏମିତି ଗୋଟାଏ ଅଜବ ଗାଲୁକଥା ସେମାନେ ବିଶ୍ୱାସ କରିଥାନ୍ତେ କେମିତି ? ଯାହାହେଉ ଭଲ ହୋଇଛି—ଆଜିକାଲି ସେ ଗାଲୁଗପ ଆଉ ନାହିଁ । ଭଗବାନ ଈଶ୍ୱର, ଦେବତା ଭଳି ଶବ୍ଦଗୁଡ଼ାକ କେବଳ ଆମ ଅଭିଧାନରେ ରହିଯାଇଛି ।

ଏହି ସମୟରେ କୋଠରିଭିତରକୁ ପଶିଆସିଲି ଶାଙ୍ଗରିନା । ଭଉଣୀକୁ ଦେଖି ଶାଙ୍ଗରିନା ପଚାରିଲେ—ରିନା ! ମୁଁ ତୋତେ ଗୋଟିଏ କଥା ପଚାରିବି; ତୁ ତାର ଉତ୍ତର ଦେଇ ପାରିବୁ ? ଶାଙ୍ଗରିନା ଅପାର ମୁହଁକୁ ବଲବଲ କରି ଅନାଇଁ ରହିଲା ।

ଶାଙ୍ଗରିନା ପଚାରିଲେ—କହିଲୁ ରିନା, ଭଗବାନ କାହାକୁ କହନ୍ତି ? ଭଗବାନ ଶବ୍ଦର ଅର୍ଥ ତୁ କଣ ଜାଣିଛୁ ? ତୁ ତ ଏତେ ପାଠ ପଢ଼ିଛୁ, ଭଗବାନ ଶବ୍ଦ କେଉଁଠି ବ୍ୟବହୃତ ହେବାର ଦେଖିଛୁ ତୁ କହ ତ ?

ଶାଙ୍ଗରିନା ଚମକିପଡ଼ି କହିଲା—ଭଗବାନ ! ସେ ପୁଣି କଣ ?

—ଆଚ୍ଛା, କହିଲୁ ଈଶ୍ୱର କଣ ?

—ଇଶ୍ୱର ? ତା ବି ଜାଣିନୁ ।

—ଆଚ୍ଛା, କହିଲୁ ଦେବତା କାହାକୁ କହନ୍ତି ?

'ଦେବତା ?' ଶାଙ୍ଗରିନା ଆହୁରି ବିସ୍ମିତ ହୋଇ କହିଲା—ଏସବୁ ବିଚିତ୍ର ଶବ୍ଦର ଅର୍ଥ ଯେ କଣ ମୁଁ ବୁଝିପାରୁନି । କେଉଁଠି ପଢ଼ିଥିଲି ଭଳି ଧାରଣା ବି ନାହିଁ । ପୃଥିବୀକୁ ଯାଇ ବୋଧହୁଏ ତୁ ଏସବୁ ଶବ୍ଦ ଶିଖି ଆସିଛୁ ।

ନାହିଁରେ ପାଗଳି !—ଶାଙ୍ଗରିନାଙ୍କ ପିତା କହିଲେ, ପୃଥିବୀକୁ ଯାଇ ସେସବୁ ଶବ୍ଦ ଶିଖି ଆସିବ କାହିଁକି ? ସେ ସବୁ ତ ଆମ ଦେଶର ଶବ୍ଦ । ସେ ଶବ୍ଦଗୁଡ଼ିକର ଅର୍ଥ ତତେ ଜଣାନାହିଁ ବୋଲି ତୁ ଭାବୁଛୁ ଆମ ଦେଶର ଶବ୍ଦ ନୁହେଁ ।

ବୃଦ୍ଧ ତାପରେ ମୋତେ ସମ୍ବୋଧନ କରି କହିଲେ—ଯା ହେଉ ବାପ, ଉତ୍କଳାବର୍ତ୍ତି ! ତୁମକୁ ଭେଟି ଆମେ ଭାରି ଖୁସି ହେଲୁ । ବୃଦ୍ଧ ହସି ହସି ବ୍ୟଙ୍ଗ କରି କହିଲେ—ଭଗବାନଙ୍କ ଦେଶର ଲୋକଙ୍କୁ ଭେଟିବା କମ୍ ସୌଭାଗ୍ୟର କଥା ନୁହେଁ । ହେଉ ବାପା, ବିଶ୍ରାମ କର, ମୁଁ ପରେ ପୁଣି ଆସିବି ।

## ଏଗାର

ଚନ୍ଦ୍ରଲୋକରେ ରହିବା ପ୍ରାୟ ଛ' ମାସରୁ ଊର୍ଦ୍ଧ୍ୱ ହୋଇଗଲାଣି । ଚନ୍ଦ୍ରଲୋକର ଭାଷା ଉପରେ ମୋର ବେଶ୍ ଦଖଲ ଆସିଗଲା । ପୃଥିବୀରେ ଥିଲାବେଳେ ମୁଁ ଥିଲି ନିପଟ ମୂର୍ଖ । ଶିକ୍ଷା କଣ ମୁଁ ଜାଣି ନ ଥିଲି । ମୂଲ ଲାଗି ଚଳିବା ଯା'ର କାମ, ତାକୁ ଶିକ୍ଷା ଦେବ ବା କିଏ ? କିନ୍ତୁ ଚନ୍ଦ୍ରଲୋକରେ ମୋ ଅବସ୍ଥାର ଯଥେଷ୍ଟ ପରିବର୍ତ୍ତନ ହୋଇଗଲା । ସେହି ସମୟ ଭିତରେ ମୁଁ ସେଠାରେ ଶିକ୍ଷା ଲାଭ କରି ନାନା କଥା ଜାଣିପାରିଲି । ମୋ ଶିକ୍ଷାର ଦାୟିତ୍ୱ ପ୍ରଥମେ ଶାଙ୍ଗରିନା ବହନ କରିଥିଲେ; କିନ୍ତୁ କିଛି ଦିନ ପରେ ମୋର ପ୍ରକୃତ ଶିକ୍ଷକ

ହେଲା ଶାଙ୍ଗଶ୍ରନା । ଶାଙ୍ଗଶ୍ରନା ଆଉ ଆଗଭଳି ମୋ ପାଖେ ଲଜ୍ଜାଶୀଳା ନୁହେଁ । ଯେତିକି ସମୟ ସେ ଅଧ୍ୟୟନ ପାଇଁ ବିଦ୍ୟାଳୟକୁ ଯାଏ, ସେତିକି ସମୟ ଛାଡ଼ିଦେଲେ ବାକି ସମୟତକ ସେ ମୋ ସହିତ କଟାଏ । ଭାଷା, ସାହିତ୍ୟ, ଗଣିତ, ବିଜ୍ଞାନଠାରୁ ଆରମ୍ଭ କରି ଚନ୍ଦ୍ରଲୋକର ଇତିହାସ, ଭୂଗୋଳ ପର୍ଯ୍ୟନ୍ତ ସବୁ କିଛି ବିଷୟରେ ଶିକ୍ଷା ସେ ମୋତେ ଦେଲା । ଏତେ ଅଳ୍ପଦିନ ଭିତରେ ଏତେଗୁଡ଼ାଏ ବିଷୟ ଆୟତ୍ତ କରିଥିବା ଦେଖି ମୋତେ ସେମାନଙ୍କ ବିଶ୍ୱବିଦ୍ୟାଳୟରେ ଶିକ୍ଷା ଦେବା ଲାଗି ଶାଙ୍ଗଶ୍ରନା ଠିକ୍ କଲେ ।

ବିଶ୍ୱବିଦ୍ୟାଳୟର ନିୟମ ଅନୁଯାୟୀ ବିନା ପରୀକ୍ଷାରେ ମୋତେ ଗ୍ରହଣ କରାଯିବ ନାହିଁ । ବୋଲି ଜଣାପଡ଼ିବାରୁ ମୋତେ ତିନିଜଣଯାକ ଦିନରାତି ପଢ଼ାଇବାକୁ ଲାଗିଲେ । କେବଳପ୍ରାପ୍ତ ବିଜ୍ଞାନ, ଶାଙ୍ଗଶ୍ରନା ଗଣିତ, ଶାଙ୍ଗଶ୍ରନା ସାହିତ୍ୟ ଓ ଅନ୍ୟାନ୍ୟ ବିଷୟ ମୋତେ ଶିକ୍ଷା ଦେବାକୁ ଲାଗିଲେ । ଯେଉଁ ଦିନ ପରୀକ୍ଷା ଦେଇ ପାଶ୍ କରି ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହେଲି, ଶାଙ୍ଗଶ୍ରନାଙ୍କ ଘରେ ସେ ଦିନ ଯେପରି ଆନନ୍ଦର ଢେଉ ଖେଳିଗଲା, ତାହା ଆଜି ପର୍ଯ୍ୟନ୍ତ ମୋ ସ୍ମୃତିପଟରୁ ଲିଭିନାହିଁ । ଶାଙ୍ଗଶ୍ରନାଙ୍କ ଘରଠାରୁ ବିଶ୍ୱବିଦ୍ୟାଳ ବେଶି ଦୂର ନୁହେଁ;ମାତ୍ର ସାତ ଆଠ ମାଇଲ ଦୂର । ଯିବାଆସିବା ପାଇଁ କିଛି ଅସୁବିଧା ହୁଏନାହିଁ । ସେହି ଭୂମିତଳ ଯାନ ଆଖିପିଛୁଳାକେ ଆମକୁ ନେଇ ପହଞ୍ଚାଇଦିଏ ବିଶ୍ୱବିଦ୍ୟାଳୟରେ । ଶାଙ୍ଗଶ୍ରନା ଓ ମୁଁ ସାଙ୍ଗ ହୋଇ ବିଶ୍ୱବିଦ୍ୟାଳୟକୁ ଯାଉ ଓ ଘରକୁ ଫେରୁ ।

ବିଶ୍ୱବିଦ୍ୟାଳୟରେ ପଢିବା ଭିତରେ ମୋର ଖ୍ୟାତି ଦିନକୁଦିନ ବଢିବାକୁ ଲାଗିଲା । ପୃଥିବୀର ଜଣେ ଲୋକ ଚନ୍ଦ୍ର ଲୋକରେ ଅଧ୍ୟୟନ କରୁଛି, ଏକଥା ଯିଏ ଶୁଣୁଥାଏ, ମୋତେ ଦେଖିବା ପାଇଁ ଦୌଡ଼ିଆସେ । ସାରା ଚନ୍ଦ୍ରଲୋକରେ ମୋ କଥା ପ୍ରଚାରିତ ହୋଇଯାଇଥାଏ । ଶାଙ୍ଗଶ୍ରନା ସଙ୍ଗରେ ବିଶ୍ୱବିଦ୍ୟାଳୟକୁ ଗଲାବେଳେ ମୋତେ କେତେ ଯୁବକ ଯୁବତୀ ଅନାନ୍ତି । ଗୁଣୁ-ଗୁଣୁହୋଇ କେତେକଣ କଥାବାର୍ତ୍ତା କରନ୍ତି । ଅନୁମାନ କରେ ସେମାନଙ୍କ ସମସ୍ତ କଥାବାର୍ତ୍ତା ମୋ'ର ସମ୍ପର୍କରେ । ଚନ୍ଦ୍ରଲୋକର କେତେ ଗଣ୍ୟମାନ୍ୟ ବ୍ୟକ୍ତି ମୋତେ ସାକ୍ଷାତ କରିବାକୁ ଆସି ପୃଥିବୀ ସମ୍ପର୍କରେ ସମ୍ବାଦ ସଂଗ୍ରହ କରନ୍ତି । ଦିନ କେଇଟା ଭିତରେ ମୋ ଖବର ଚନ୍ଦ୍ରଲୋକରେ ଏତେ ପ୍ରଚାରିତ ହୋଇଥାଏ ଯେ, ସେ ସମୟରେ କେହି ଯଦି କାହାକୁ ପଚାରେ—ଚନ୍ଦ୍ରଲୋକରେ ସବୁଠାରୁ ବେଶି ସୁପରିଚିତ ବ୍ୟକ୍ତି କିଏ, ସମସ୍ତେ ମୋ ନାଁ ଛଡ଼ା ଆଉ କାହା ନାଁ କହିବେ ନାହିଁ । ଖାଲି ସେତିକି ନୁହେଁ, ଆହୁରି ମଧ୍ୟ ପ୍ରଚାରିତ ହୋଇଥିଲା ଯେ ମୋର ଅକୃତ୍ରିମ ସହଯୋଗ ଯୋଗୁଁ ଚନ୍ଦ୍ରଲୋକର ଅଧିବାସୀମାନଙ୍କ ଜୀବନରକ୍ଷା ହୋଇଛି । ମୁଁ ଚନ୍ଦ୍ରଲୋକର ରାଷ୍ଟ୍ରଦୂତଙ୍କୁ ଯେପରି ଭାବରେ ମହେଞ୍ଜୋଦାରୋର ନଗରପାଳଙ୍କ ସହିତ ସାକ୍ଷାତ କରାଇ ପ୍ରଚୁର ଜଳ ଓ ବାୟୁ ଯୋଗାଣର ବ୍ୟବସ୍ଥା କରିଦେଇଥିଲି ତାହା ସମସ୍ତେ ଜାଣିସାରିଥାନ୍ତି । ମୋର ଏତେ ପ୍ରସିଦ୍ଧିରେ ମୁଁ ଯେତେ ଆନନ୍ଦିତ ହେଉ ନ ଥାଏ, ତା'ଠାରୁ ଅଧିକ ଆନନ୍ଦିତ ହେଉଥାଏ ଶ୍ରନା ।

X X X

ଚନ୍ଦ୍ରଲୋକର ସୁପ୍ରସିଦ୍ଧ ଗନବନ୍ କ୍ରେଟର୍...ପୂର୍ବାପୂର୍ ମୃତ ଅବସ୍ଥାରେ ପଡ଼ିରହିଛି । ଲୋକେ କହନ୍ତି, ଏହି ଆଗ୍ନେୟଗିରି ଏକସମୟରେ ଥିଲା ଅତି ଦୁର୍ଦ୍ଦାନ୍ତ । ବେଳେବେଳେ ଏଥିରୁ ଅଗ୍ନି ଉଦ୍‌ଗିରଣ ହୋଇ ଶହଶହ ଲୋକଙ୍କୁ ପୋଡ଼ିଜାଳି ପାଉଁଶ କରିପକାଉଥିଲା । ଏହି ଦୁର୍ଦ୍ଦାନ୍ତ ଆଗ୍ନେୟଗିରି କବଳରେ ପଡ଼ି କେତେ ଶତ ସହସ୍ର ଲୋକ ଯେ ଧ୍ୱଂସ ପାଇଯାଇଛନ୍ତି, ତାର ହିସାବ କେହି ରଖିନି । ଚନ୍ଦ୍ର ଲୋକରେ ଏହିଭଳି ଶତାଧିକ ଆଗ୍ନେୟଗିରି ଅଛି । ସୌଭାଗ୍ୟବଶତଃ ସବୁଗୁଡ଼ାକ ମୃତ । ସେଗୁଡ଼ାକ ଧ୍ୱଂସକାରୀ ଶକ୍ତି ପୂର୍ବାପୂର୍ ଲୋପ ପାଇଯାଇଛି । ଚନ୍ଦ୍ରଲୋକରେ ଆଜି ଗୋଟିଏ ସୁଦ୍ଧା ଆଗ୍ନେୟଗିରି ନାହିଁ; ଯେଉଁଥିରେ ଅଗ୍ନି ଉତ୍ପାତ ଦେଖାଯାଏ । ସେହି ସମୟର ଅତି ଦୁର୍ଦ୍ଦାନ୍ତ ଆଗ୍ନେୟଗିରି ଓ ତାର ମୁଖ ଆଜି ଗୃହପାଖର ଉର୍ବର ମୃତ୍ତିକା ଯୋଗୁଁ କୃଷି ଓ ଶସ୍ୟ ଉତ୍ପାଦନର ପ୍ରଧାନ କେନ୍ଦ୍ର ହୋଇପାରିଛି । ଏହି ଆଗ୍ନେୟଗିରି ମୁଖମାନଙ୍କରେ କେତେ କୃଷିକ୍ଷେତ୍ର, ଉଦ୍ୟାନ, ତପୋବନ, ଆମୋଦପ୍ରମୋଦ ସ୍ଥାନ ଯେ ସୃଷ୍ଟି କରାଯାଇଛି ତାର କଳନା ନାହିଁ । ଚନ୍ଦ୍ରଲୋକର ଏହିଭଳି ଶତାଧିକ କ୍ରେଟର୍ ଭିତରୁ ଗନବନ୍-କ୍ରେଟର୍ ସବୁଠାରୁ ବେଶି ରମଣୀୟ । ଶତ ଶତ ଦର୍ଶକ ପ୍ରତିଦିନ ଆସି ଏଠାରେ ଏକତ୍ରିତ ହୁଅନ୍ତି ଏହାର ରମଣୀୟତାକୁ ଉପଭୋଗ କରିବାପାଇଁ । ଏହି କ୍ରେଟର୍‌ର ଗୃହପାଖରେ ପାହାଡ଼, ପାହାଡ଼ ଉପରେ ସ୍ତର ସ୍ତର ହୋଇ ସୁନ୍ଦର ସୁନ୍ଦର ଉଦ୍ୟାନମାନ ସୃଷ୍ଟି କରାଯାଇଛି । ଏହି ଉଦ୍ୟାନ ଭିତର ଦେଇ ସୁପ୍ରଶସ୍ତ ପଥ ସର୍ପିଳ ଗତିରେ କ୍ରେଟର୍‌ର ସମତଳଶଯ୍ୟାରୁ ଚତୁଃପାର୍ଶ୍ୱସ୍ଥ ପାହାଡ଼ର ଶିଖରଦେଶ ପର୍ଯ୍ୟନ୍ତ ଲମ୍ବିଯାଇଛି ।

ଚନ୍ଦ୍ରଲୋକର ଏହି ରମଣୀୟ କ୍ରେଟର୍‌ରେ ଗୋଟିଏ ସନ୍ଧ୍ୟା କଟାଇବା ପାଇଁ ମୁଁ ଓ ରନା ସେଠାକୁ ଆସିଥାଉଁ ! ରନା ସେଠାକୁ ମୋ ସହିତ ବାହାରକୁ ଏକାକୀ ଆସିବା ଏଇ ପ୍ରଥମ । ରନା ଯୁବତୀ, ପୁଣି ରୂପସୀ । ତା ସହିତ ଏକାକୀ ଆସିଲେ ଚନ୍ଦ୍ରଲୋକରେ କାଳେ କିଏ ପସନ୍ଦ ନ କରିବ, ଏଥିପାଇଁ ମୁଁ ଆସିବାକୁ ପଛଉଥାଏ । କିନ୍ତୁ ରନାର ଜିଦ୍ ଓ ଶାଙ୍ଗରନାଙ୍କ ଅନୁମୋଦନ ମୋତେ ବାଧ କଲା ଏଠାକୁ ଆସିବାପାଇଁ । କିନ୍ତୁ ମୋତେ ବଡ଼ ସଙ୍କୋଚ ଲାଗୁଥାଏ । ଏକ ନିରୋଳା ସ୍ଥାନରେ ରୂପସୀ ଯୁବତୀ ସାଙ୍ଗଟିଏ ପାଇଲେ ମନ କେତେ ଖୁସି ହୋଇଯାଏ । ମନ ଭିତରେ କେତେ ସ୍ୱପ୍ନ କେତେ ଆଶା ଜାଗିଉଠେ, କେତେ କଣ ପାଇବା ଆଶାରେ ମନ ଉଲସିଉଠେ । କିନ୍ତୁ ରନାକୁ ପାଖରେ ପାଇ ମୁଁ ସିମିତି କିଛି ଅନୁଭବ କରୁ ନ ଥିଲି, ତାହାଠାରୁ ଆଡ଼େଇ ହୋଇ ରହିବାକୁ କେଜାଣି କାହିଁକି ଉଚିତ ମନେକରୁଥିଲି ।

ଉଦ୍ୟାନରେ ବୁଲୁ ବୁଲୁ ରନା ପଚାରିଲା—ତୁମେ ବୋଧହୁଏ ଜାଣିନ ଉତ୍କଳାବର୍ତ୍ତି ! ଆମେ ବର୍ତ୍ତମାନ ଯେଉଁ ସ୍ଥାନରେ ବୁଲୁଛେ, ତା ହେଉଛି ଚନ୍ଦ୍ରଲୋକର ଏକ ପ୍ରସିଦ୍ଧ ରମଣୀୟ ସ୍ଥାନ । ଚନ୍ଦ୍ରଲୋକର ଅସରନ୍ତି ସୌନ୍ଦର୍ଯ୍ୟ ଠୁଳ ହୋଇଛି ଏଠି । ଏଠାକାର

ସୌନ୍ଦର୍ଯ୍ୟ ଦେଖିଲେ ଆତ୍ମବିସ୍ମୃତ ଆସିଯାଏ । କଳ୍ପନାର ପକ୍ଷୀରାଜ ଏହା ଆଗରେ ଯେ ହାର ମାନିଯିବ ଏହ କେହ୍ନ ଅସ୍ୱୀକାର କରିପାରିବେ ନାହିଁ ! ରିନା ତାର ଏଇ କଥାଗୁଡ଼ିକ ବେଶ୍ ସୁମଧୁର କଣ୍ଠରେ କହିଯାଉଥିଲା ।

ପର୍ବତର ସର୍ପିଳ ରାସ୍ତା ଦେଇ ଉଦ୍ୟାନ ପରେ ଉଦ୍ୟାନ ଅତିକ୍ରମ କରି ଆମେ ଯାଉ ପହଞ୍ଚିଲୁ କ୍ରେଟର୍ ଭିତରସ୍ଥ ସମତଳ ଶଯ୍ୟାରେ । ଚତୁର୍ଦ୍ଦିଗରେ ବିରାଟ ବନ୍ଧଭଳି ଠିଆହୋଇଛି ପର୍ବତଗୁଡ଼ାକ । ଆମେ ଯାହା ଉପରେ ଠିଆ ହୋଇଥାଉଁ ସେ ସ୍ଥାନଟି ଦିନେ ଥିଲା ଏକ ଦୁର୍ଦ୍ଦାନ୍ତ ଆଗ୍ନେୟଗିରିର ମୁଖ । ଏହି ମୁଖ ଦେଇ ତରଳ ଲାଭା ଉଦ୍‌ଗିରଣ ହୋଇ ଚାରିପାଖର ସ୍ଥାନକୁ ପୋଡ଼ିଜାଳି ନଷ୍ଟ କରିଦେଉଥିଲା । କିନ୍ତୁ ଆଗ୍ନେୟଗିରିର ସେ ଧ୍ୱଂସକାରୀ ରୂପ ଆଜି ଆଉ ନାହିଁ । ଏହା ମୃତ ହୋଇଯାଇଥିବାରୁ ତାହା ଉପରେ ଆଜି ଗଢିଉଠିଛି ବିରାଟ ନନ୍ଦନକାନନ । ନାନା ଜାତିର ସୁଗନ୍ଧ ପୁଷ୍ପରେ ସ୍ଥାନଟି ମହକି ଉଠୁଥାଏ । ଉଦ୍ୟାନ-ଗୁଡ଼ିକର ସୌନ୍ଦର୍ଯ୍ୟରେ ମୁଁ ଓ ରିନା ଆତ୍ମହରା ହୋଇପଡ଼ିଥାଉ । ସେହି ସୁନ୍ଦର ପରିବେଶ ଭିତରେ ରିନା ମୋତେ ଆହୁରି ଅଧିକ ସୁନ୍ଦର ମନେହେଉଥାଏ । ଚନ୍ଦ୍ରର ଲଳନାମାନେ ସାଧାରଣତଃ ଯେତେ ସୁନ୍ଦରୀ ତା'ଠାରୁ ଢ଼େର୍ ଅଧିକ ସୁନ୍ଦର ଦିଶୁଥିଲା ପ୍ରସନ୍ନବଦନା ରିନା ରିନା ଏକ ପୁଷ୍ପଭାରାନତ ବୃକ୍ଷତଳେ ଠିଆ ହୋଇ ସୌନ୍ଦର୍ଯ୍ୟ ଉପଭୋଗରେ ବ୍ୟସ୍ତ ମୁଁ ତାହାଠାରୁ ଅଳ୍ପଦୂରରେ ଥାଇ ଏ ପଥରକୁ ସେ ପଥର ଏମିତି ଡ଼ିଆଁ ଡେଇଁ କରୁଥିଲି । ଡ଼େଇଁ ଡ଼େଇଁ ହଠାତ୍ ଆବିଷ୍କାର କଲି ଯେ, ଏଠାରେ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଡେଇଁବା ଯେମିତି ଖୁବ୍ ସହଜ । ଡ଼େଇଁ ଡେଇଁ ହଠାତ୍ ମୁଁ ଯେମିତି ଏକ ବିରାଟ ଲମ୍ଫ ଦେଇଛି, ଦେଖିଲି ମୁଁ ଆକାଶକୁ ଉଠିଯାଇ ପାହାଡ଼ର ଶିଖର-ଦେଶରେ ପହଞ୍ଚିସାରିଲିଣି । ମୁଁ ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ ମୁଁ ଏତେ ଦୂରକୁ କେମିତି ଡେଇଁ ଆସିଲି । ମନେ ମନେ ଭାବିଲି ମୁଁ ଯେତେ ଆଶ୍ଚର୍ଯ୍ୟ ହେଉଛି ତା'ଠାରୁ ତ ଢ଼େର୍ ବେଶି ଆଶ୍ଚର୍ଯ୍ୟ ହେବ ରିନା । ତେଣୁ ପାହାଡ ଉପରେ ଥାଇ ଡ଼ାକିଲି ରିନାକୁ । ରିନା ସେତେବେଳ ପର୍ଯ୍ୟନ୍ତ ସେହି ବୃକ୍ଷତଳେ ଠିଆହୋଇ କଣ ଏକ ପରୀକ୍ଷାରେ ଲାଗିଯାଇଥାଏ ।

ବହୁଦୂରରୁ ମୋ ସ୍ୱର ଭାସିଆସିବାର ଶୁଣି ରିନା ଚକିତ ହୋଇ ଚାରିଆଡ଼କୁ ଅନାଇଲା; କିନ୍ତୁ ମୋତେ କେଉଁଠାରେ ନଦେଖି ପୁଣି ମନୋନିବେଶ କଲା ନିଜ କାମରେ ।

ମୁଁ ପୁଣି ଥରେ ଡ଼ାକିଲି ରିନାକୁ ତା ନାଁ ଧରି ।

ଏଥର ବି ସେ ଚକିତ ହୋଇ ଚାରିଆଡ଼କୁ ଅନାଇଲା । ଭାବିଲା ମୁଁ ନିକଟରେ କେଉଁଠି ଲୁଚି ତାକୁ ଡ଼ାକୁଛି ବୋଲି । ମୋତେ ନଦେଖି ସେ ପୁଣି ନିଜ କାମରେ ମନୋନିବେଶ କରିବାକୁ ଚେଷ୍ଟା କରୁଥିଲା । ହଠାତ୍ କଣ ଭାବିଲା କେଜାଣି, ଉଠିଆସି ମୋତେ ଖୋଜିବା ପାଇଁ ଚାରିଆଡ଼କୁ ନିରୀକ୍ଷଣ କଲା । ବୋଧହୁଏ ସେ ଅନୁଭବ କଲା ମୁଁ କେମିତି ଦୂରରେ ଥାଇ ତାକୁ ଡ଼ାକୁଛି । ମୁଁ ଯେ ଇତି ମଧ୍ୟରେ ପାହାଡ଼ର ଶିଖର ଦେଶରେ ପହଞ୍ଚିସାରିଲିଣି ତା ଭାବନାର ବାହାରେ । ମୁଁ ଯେ ଏତେ ଶିଘ୍ର ଓ ସହଜରେ ପାହାଡ଼ର ଶିଖର ଦେଶରେ ପହଞ୍ଚି ପାରିଚି, ସେ ଭାବିବ ବା କେମିତି ?

ଶନାକୁ ଇଆଡ଼େ ସିଆଡ଼େ ଅନାଇବାର ଦେଖି କହିଲି—ଏଠାକୁ ଅନାଅ ଶନା ! କେମିତି ମୁଁ ଆସି ପାହାଡ଼ର ଶିଖରଦେଶରେ ପହଞ୍ଚି ସାରିଲିଣି । ତୁମେ ଏଆଡ଼କୁ ସେ ଆଡ଼କୁ ଅନାଉଛ କଣ ? ମୁଁ କଣ ସେଠି ଅଛି ଯେ ମୋତେ ଦେଖିବାକୁ ପାଇବ ?

ମୋ କଥା ଶୁଣି ଶନା ଅନାଇଦେଲା ପାହାଡ଼ର ଶିଖରଦେଶକୁ । ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲା—ତୁମେ ସେଠି କଣ କରୁଛ ? ତୁମେ ଏତେ ଉପରକୁ କେମିତି ଗଲ ମୁଁ ତ ଭାବିପାରୁନି ! ବର୍ତ୍ତମାନ ତ ଏଇଠି ଥିଲ; ସାଙ୍ଗେ ସାଙ୍ଗେ ଏତେ ଉପରେ ?

—ହଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ଶନା ? ଏଠିକି ଆସିବା ତ କିଛି କଷ୍ଟକର କଥା ନୁହେଁ । ତୁମେ ବି ଇଚ୍ଛାକଲେ ସଙ୍ଗେ ସଙ୍ଗେ ଚାଲିଆସିବ । ତୁମେ ଯେଉଁଠି ଠିଆହୋଇଛ ସେଠାରୁ ଡିଆଁ ଟାଏ ମାରିଦେଲେତ ଏଠାରେ ଆସି ହାଜର ହେବ ।

—ଏଁ, ଡିଆଁ ଟାଏ ମାରିଦେଲେ ସେଠି ପହଞ୍ଚି ଯାଇ ହେବ ? ତୁମେ ଯେ କଣ କହୁଛ ମୁଁ ବୁଝି ପାରୁନି ଉତ୍କଳାବର୍ତ୍ତି ? ଏତେ ଉଚ୍ଚ ଯାଗା, ଡିଆଁ ଟାଏ ମାରିଦେଲେ କଣ ପହଞ୍ଚିହେବ ?

—ନ ହେବ କାହିଁକି ? ମୁଁ ତ ପୁଣି ଗୋଟିଏ ଡିଆଁରେ ଏଠି ଆସି ପହଞ୍ଚିଛି ।

— ଅସମ୍ଭବ ମୁଁ ମୋଟେ ବିଶ୍ୱାସ କରିବିନି । ତୁମେ ନିଶ୍ଚୟ କୌଣସି ଏକ ବାଟ ଦେଇ ସେଠାକୁ ଚାଲିଯାଇଛ ।

—ମୋତେ ବିଶ୍ୱାସ କର ଶନା ! ମୁଁ ଅନ୍ୟ କୌଣସି ବାଟ ଦେଇ ଏଠାକୁ ଆସିନି । ତୁମେ ଯେଉଁଠାରେ ଠିଆହୋଇଛ ସେଇଠାରୁ ମାତ୍ର ଗୋଟାଏ କୁଦାରେ ଏଠାକୁ ଆସିଛି ।

—ତୁମେ ତ କିଛି ଅଳ୍ପ ଉଚ୍ଚରେ ନାହିଁ । ଏଠାରୁ ଅନ୍ତତଃ ପଚାଶ ଷାଠିଏ ଫୁଟ ଉଚ୍ଚ ହେବ । ମୋର ତ ମୋଟେ ବିଶ୍ୱାସ ଆସୁନି ତୁମେ ଡେଇଁ କରି ପଚାଶ ଷାଠିଏ ଫୁଟ ଉଚ୍ଚକୁ ଯାଇପାରିଛ ।

—ତୁମର ଯଦି ବିଶ୍ୱାସ ଆସୁନି ଶନା, ଦେଖିବ ମୁଁ କେମିତି ଏକା କୁଦାକେ ତୁମ-ଠାରେ ଯାଇ ହାଜର ହୋଇଯିବି ?

—ହାଁ ହାଁ, ସେ ଦୁଃସାହସ କରନାହିଁ ଉତ୍କଳାବର୍ତ୍ତି ! ପାଟିକରି ଉଠିଲା ଶନା—କି ମାରାତ୍ମକ ହେବ ତାର ପରିଣତି । ନିଜ ବାହାଦୁରି ଦେଖାଇବାକୁ ଯାଇ ନିଜ ଗୋଡ଼ହାତ ଖଣ୍ଡିଆ କରନି ।

ଆଁ, ଗୋଡ଼ହାତ ଖଣ୍ଡିଆ ହେବ ଏକ ସାମାନ୍ୟ ଡିଆଁରେ ? ମୋତେ ତ ଏ ସ୍ଥାନକୁ ଆସିବା ପାଇଁ ଡିଆଁଟା ଡିଆଁ ଭଲ ଲାଗୁନି—କହୁ କହୁ ଏକ ଲମ୍ଫ ଦେଇ ସଙ୍ଗେ ସଙ୍ଗେ ଶନା ପାଖରେ ହାଜର ହୋଇଗଲି ।

ମୋ ଡେଇଁବା ଦେଖି ଶନା ତା ଆଖି ବୁଜି ଦେଇଥିଲା । ସେ ଏତେ ଭୟଭୀତ ହୋଇ-ଯାଇଥିଲା ଯେ, ତା ପାଟିରୁ ଭାଷା ବାହାରୁ ନଥିଲା ।

ତା ନିକଟକୁ ଯାଇ କହିଲି—ଏଥର ତ ତୁମର ବିଶ୍ୱାସ ହୋଇଥିବ ଯେ ମୁଁ ସହଜରେ ଏତେ ଉଚ୍ଚରୁ ଡ଼ିଆଁ ଟାଏ ମାରି ତଳକୁ ଆସିପାରେ । ପୁଣି ଦେଖିବ, ତୁମ ଆଖିଆଗରେ ମୁଁ ଡ଼ିଆଁ ଟାଏ ମାରିଦେଇ ସେହି ପାହାଡ଼ ଉପରେ ପହଞ୍ଚିଯାଇ ପାରିବି ।

—ଥାଉ ଥାଉ ଉତ୍କଳାବତୀ ! ଆଉ ଯିବା ଦରକାର୍ ନାହିଁ । ମୋର ପୂରା ବିଶ୍ୱାସ ହେଲାଣି । —କହୁଁ କହୁଁ ମୋତେ ଧରି ଅଟକାଇବାକୁ ଚେଷ୍ଟା କଲା ଶିନା ।

—ମୋ ସହିତ ତୁମକୁ ବି ନେଇଯାଇ ପାରିବି ଶିନା ! ପାହାଡ଼ର ଉପରକୁ । —କହୁ କହୁ ଶିନାକୁ କୁଣ୍ଢାଇ ଧରି ଜୋର୍‌ରେ ଏକ ପ୍ରକାଣ୍ଡ ଲମ୍ଫ ଦେଲି । ଶିନା ମୋତେ ବାଧା-ଦେବା ପାଇଁ ଯେଉଁ ହାତ ବଢ଼ାଇଥିଲା, ସେହି ହାତରେ ମୋର ବେକକୁ ଭିଡ଼ିଧରିଲା । ନେଲି ତାକୁ ମୋ ସହିତ । ପାହାଡ଼ର ଯେଉଁ ଶିଖରଦେଶରେ ମୁଁ ପହଞ୍ଚିବି ବୋଲି ଆଶା କରିଥିଲି, ସେଠାରେ ନ ପହଞ୍ଚି ଆମେ ଦୁହେଁ ପଡ଼ିଗଲୁ ସେହିଠାରୁ ଅଳ୍ପ କିଛି ତଳେ । ସୌଭାଗ୍ୟବଶତଃ ଶିନାର କିଛି କ୍ଷତି ହେଲାନାହିଁ; କାରଣ ମୁଁ ପଡ଼ିଲି ତଳେ, ଶିନା ପଡ଼ିଲା ଠିକ୍ ମୋ ଉପରେ । ଏଇ କାଣ୍ଡ ସାମାନ୍ୟ କେତେ ସେକେଣ୍ଡ ଭିତରେ ଏମିତି ଭାବରେ ଘଟିଗଲା । ଶିନା ଯଦି ମୋ ଉପରେ ନପଡ଼ି ମୁଁ ତା ଉପରେ ପଡ଼ିଯାଇଥାନ୍ତି, ତେବେ ସେ ଖୁବ୍ ଆଘାତ ପାଇଥାନ୍ତା ।

ପଡ଼ିଯାଇ ଶିନା ହଠାତ୍ ଭାବିପାରିଲା ନାହିଁ—ଏ କଣ ହେଲା ! ସେ ଯେତେବେଳେ ବୁଝିପାରିଲା ଯେ ଆମେ ଦୁହେଁ ପଡ଼ିଯାଇଛୁ ଏବଂ ମୁଁ ପଡ଼ିଛି ତଳେ, ସେ ପଡ଼ିଛି ମୋ ଉପରେ, ତାର ଭୟ ହେଲା ଏଇ ପତନ ଯୋଗୁଁ ମୋର କିଛି ଗୁରୁତର ଆଘାତ ହୋଇଥାଇପାରେ । ସେ ହଠାତ୍ ଉଠି ମୋର କଣ ହେଲା ପରୀକ୍ଷା କରିବାକୁ ଚେଷ୍ଟାକଲାବେଳେ ମୁଁ ତାକୁ ମୋ ଉପରୁ ଉଠିବାକୁ ନ ଦେଇ ଗାଢ଼ରେ ଭିଡ଼ିଧରିଲି ।

—ହାଁ ହାଁ, ଏ କଅଣ କରୁଛ ଉତ୍କଳାବତୀ ? ଚିତ୍କାର କରିଉଠିଲା ଶିନା—ଆମେ ଦୁହେଁ ପଡ଼ିଗଲେଣି; ଅଥଚ ତମେ ସୁହାଗ ଦେଖାଉଛ । ଏମିତି ବେଳରେ କେହି କେବେ କଣ ସୁହାଗ ଦେଖାଏ ?

ଶିନାକୁ ଛାଡ଼ିଦେଲି, ସେ ଉଠି ଠିଆହେଲା, ସେଥି ସହି ମୁଁ ବି ।

ଶିନା କହିଲା—ମୁଁ ଏବେ ବି ଭାବିପାରୁନି ଉତ୍କଳାବତୀ ! ତୁମେ ମୋତେ ନେଇ ଏତେ ଦୂରକୁ କେମିତି ଡେଇଁପାରିଲ ?ତୁମର ମାଂସପେଶୀର ବଳ ମୁଁ ଦେଖୁଛି ଅସମ୍ଭବ ପ୍ରକାରର। ତୁମ ଦେହରେ ଯେ ଏତେ ବଳ ଅଛି, ମୁଁ ତ ଧାରଣା କରିପାରୁନାହିଁ !

— ମୋ ଦେହରେ ଯେ ଏତେ ବଳ ଅଛି ସେ କଥା ମୁଁ ବି ଭାବିପାରୁ ନାହିଁ । ମୁଁ ପୃଥିବୀରେ ଯେତିକି ବଳ ନେଇ ତିନି ଚାରି ଫୁଟ ଡିଏଁ, ସେତିକି ବଳରେ ମୁଁ ଏଠାରେ ଅକ୍ଲେଶରେ ପଚିଶ ଷାଠିଏଫୁଟ ଉଚ୍ଚକୁ ଡେଇଁପାରୁଛି । ମୁଁ ପ୍ରକୃତରେ ବୁଝିପାରୁନାହିଁ ଏହା କେମିତି ହେଉଛି । ତେବେ ଏଟା ସ୍ୱତଃସିଦ୍ଧ ଯେ ମୋ ଦେହରେ ସେମିତି କିଛି ରାକ୍ଷସୀୟ ବଳ ନାହିଁ । କିନ୍ତୁ ଏଠାରେ ଡେଇଁବା ଏତେ ସହଜ ଯେ ଏତେ ଉଚ୍ଚକୁ ଡେଇଁଲେ ମଧ୍ୟ

ମୋତେ ଡେଇଁଲା ଭଲ ଲାଗୁନ; ଲାଗୁଛି ଯେମିତି ଏହା ପିଲାଖେଳ ।

× × ×

ଧୀରେ ଧୀରେ ଚନ୍ଦ୍ରଲୋକରେ ମୋର ଦିନ କଟିବାକୁ ଲାଗିଲା । ଏହି ସମୟରେ ଦିନେ ବିଶ୍ୱବିଦ୍ୟାଳୟରେ ବାର୍ଷିକ ଖେଳ-ପ୍ରତିଯୋଗିତା ହେବା ଠିକ୍ ହେଲା । ବିଶ୍ୱ-ବିଦ୍ୟାଳୟ ଭିତରେ ଲମ୍ବା ଚଉଡ଼ାରେ ମୁଁ ବେଶ୍ ଆଖିକୁ ଦିଶିଲାଭଳି । ସମସ୍ତେ ଯେପରି ଭାବରେ ଚାଲନ୍ତି; ଲୋକେ କହନ୍ତି ମୁଁ ଚାଲେ ଆହୁରି ଜୋର୍‌ରେ । ଅନେକ ଭାବନ୍ତି, ମୁଁ ଚାଲେନାହିଁ, ଦଉଡ଼େ । ମୋ ସହିତ ଯାଉଁ ଯାଉଁ ବେଳେବେଳେ ଶାଙ୍ଖରିନା ଆକ୍ଷେପ କରି କହେ—ତୁମେ ଏତେ ଜୋର୍‌ରେ ଧାଉଁଛ କାହିଁକି ଉତ୍କଳାବର୍ତ୍ତି ! ତୁମ ସହିତ ଧାଇଁବାକୁ ମୋର ବଳ ନାହିଁ, ଟିକିଏ ଧୀରେ ଧୀରେ ଚାଲ ଭଲା !

ବଡ଼ ଆଶ୍ଚର୍ଯ୍ୟ ହୁଏ ରିନାର ଏହି ଆକ୍ଷେପରେ । କହେ—ମୁଁ ତ ଧାଉଁନ ରିନା ! ତୁମେ ଯେମିତି ଚାଲୁଛ, ମୁଁ ଠିକ୍ ସେମିତି ଚାଲୁଛି ।

ହଁ, ଏ ପୁଣି ମଣିଷର ଚାଲି ?—ମୁହଁ ଉପରେ କୃତ୍ରିମ ରାଗ ଫୁଟାଇ କହେ ରିନା— ମୋତେ ହଇରାଣ କରିବାପାଇଁ ତୁମେ ଏମିତି ଧାଉଁଛ । ସତ କହିଲ ଉତ୍କଳାବର୍ତ୍ତି ! ମୋତେ ହଇରାଣ କଲେ ତୁମକୁ କଣ ଲାଭ ମିଳେ ?

ମୋ ଚାଲିବା ସମ୍ପର୍କରେ ଶାଙ୍ଖରିନାର ବହୁ ଆକ୍ଷେପ ମୁଁ ଶୁଣିଆସିଥିଲି । ହଠାତ୍ ଏ ଆକ୍ଷେପରେ ଅଟକିଯାଇ ରିନାର ହାତ ଧରିପକେଇ ପଚାରିଲି—ତୁମେ ଯାହା କହୁଛ ରିନା, ଏ କଣ ତୁମ ମନର କଥା ? ତୁମେ କଣ ପ୍ରକୃତରେ ଭାବୁଛ ଯେ ମୁଁ ତୁମକୁ ହଇରାଣ କରିବା ପାଇଁ ଅସାଧାରଣ ଗତିରେ ଚାଲୁଛି ? ଦେଖ ରିନା, ମୁଁ ସତକରି କହୁଛି, ଏହା ମୋର ସ୍ୱାଭାବିକ ଗତି । ମୁଁ ମୋର ପିଲାଦିନୁ ପୃଥିବୀରେ ଯେମିତି ଚାଲିଆସିଛି, ଏଠି ବି ଠିକ୍ ସେମିତି ଚାଲୁଛି ।

—ତା ହେଲେ ତୁମେ ଧାଇଁଲାଭଳି ଦିଶୁଛ କାହିଁକି ଉତ୍କଳାବର୍ତ୍ତି ? ମୋତେ ଖାଲି ଦିଶୁନାହିଁ, ମୋର ସମସ୍ତ ସହପାଠୀ ସେହି କଥା ହିଁ କହୁଛନ୍ତି । ସେମାନେ କହନ୍ତି, ତୁମେ ଚାଲ ନାହିଁ; ତୁମେ ଧାଅଁ । କେତେ ପୁରୁଷ ବନ୍ଧୁ କହିବାର ଶୁଣିଛି—ପୃଥିବୀର ଲୋକ-ଗୁଡ଼ାକ ଚାଲିଜାଣନ୍ତି ନାହିଁ, ଖାଲି ଦୌଡ଼ନ୍ତି ।

ବଡ଼ ବିଚିତ୍ର ଏହିସବୁ ଆକ୍ଷେପ । ମୁଁ ମୋର ସ୍ୱାଭାବିକ ଗତିରେ ଚାଲୁଛି; କିନ୍ତୁ ଏଠାକାର ଲୋକେ କହୁଛନ୍ତି ମୁଁ ଧାଉଁଛି ! ମୁଁ ଚନ୍ଦ୍ରଲୋକକୁ ଆସିଲାଦିନରୁ ଏଠାକାର ଲୋକଙ୍କ ଚାଲିବାଭଙ୍ଗୀ ଦେଖି ବେଳେବେଳେ ଆଶ୍ଚର୍ଯ୍ୟ ମଧ୍ୟ ହୁଏ । ଭାବେ, ଲୋକଗୁଡ଼ାକ ଏତେ ଧୀରେ ଧୀରେ ଚାଲୁଛନ୍ତି କାହିଁକି ? ମୁଁ ମଧ୍ୟ କେତେଥର ଏ କଥା ରିନାକୁ ପଚାରିବ ଭାବି ପଚାରି ପାରିନଥିଲି । ବେଳେବେଳେ ଭାବୁଥିଲି ଯେ ଲୋକଗୁଡ଼ାକ ବୋଧେ ଦୁର୍ବଳ; ତେଣୁ ଜୋର୍‌ରେ ଚାଲିପାରୁନାହାନ୍ତି । କିନ୍ତୁ ସେମାନେ ଦେଖିବାକୁ ତ ବେଶ୍ ହୃଷ୍ଟପୁଷ୍ଟ; ଦୁର୍ବଳତାର ଲକ୍ଷଣ କେଉଁଠି ଦିଶୁନି । ତେବେ ଏମିତି ଧୀରେ ଧୀରେ ଚାଲୁଛନ୍ତି କାହିଁକି ?

ଶାଙ୍ଗରନାର ଆକ୍ଷେପରେ ମୋର ସେହି କଥା ମନେ ପଡ଼ିଗଲା । କହିଲି—ତୁମେ ସିନା ମୋ ସଂପର୍କରେ ଏମିତି ଭାବୁଛ ରନା ! ତୁମସଂପର୍କରେ ମୋର କଣ ଧାରଣା, କହିବି ?

ରନା ମୋ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା ।

—ମୁଁ ତୁମକୁ କହିବି ବୋଲି ବେଳେବେଳେ ଭାବିଛି; କିନ୍ତୁ କହିପାରିବି ନାହିଁ । ଆଜି ତୁମେ ମୋତେ ଏ କଥା କହିଲ ବୋଲି ମୋର ସେ କଥା ମନେପଡ଼ିଗଲା । ମୁଁ ଚନ୍ଦ୍ର-ଲୋକକୁ ଆସିଲା ଦିନଠାରୁ ଦେଖୁଛି ତୁମେ ଓ ତୁମ ଚନ୍ଦ୍ରଲୋକର ସମସ୍ତେ ଏତେ ଧୀରେ ଧୀରେ ଚାଲୁଛନ୍ତି, ଯେମିତିକି ସେମାନେ ସାତଦିନ ହେଲା କିଛି ଖାଇବାକୁ ପାଇନାହାଁନ୍ତି । ମୁଁ ବେଳେବେଳେ ଭାବେ, ଏ ଲୋକଗୁଡ଼ାକ ବୋଧହୁଏ ଦୁର୍ବଳ; ତା ନ ହେଲେ ଏମିତି ଚାଲନ୍ତେ କାହିଁକି ?

—ଆମେ ଦୁର୍ବଳ ? ଶାଙ୍ଗରନାର ମୁହଁରେ ବିସ୍ମୟର ଭାବ—କାହିଁ, ଆମେ ତ କିଛି ଦୁର୍ବଳତା ଅନୁଭବ କରୁନୁ । ତୁମେ ଆମକୁ ଗୋଟିଏ ପ୍ରକାର ଭାବୁଛ; ଆମେ ତୁମକୁ ଅଉ ଏକପ୍ରକାର ଭାବୁଛୁ । ମୁଁ କିଛି ବୁଝିପାରୁନି ଆମ ଭିତରେ ଅଭିଜ୍ଞତାର ଏ ପାର୍ଥକ୍ୟ କାହିଁକି ? ଆଜି ଘରକୁ ଫେରିଲେ ଅପାକୁ ସେ କଥା ପଚାରିବା ସେ ହୁଏତ୍ କହିପାରିବ ଏହାର କାରଣ କଣ ?

× × ×

ସେଦିନ ବିଶ୍ବବିଦ୍ୟାଳୟରୁ ଫେରି ଘରେ ପହଞ୍ଚିବାମାତ୍ରେ ରନା ଡ଼ାକ ପକାଇଲା—ଅପା ! ଅପା ! ତୋତେ ଗୋଟିଏ କଥା ପଚାରିବି ବୋଲି କେତେବେଳୁ ଭାବୁଛି ତୁ ସେ କଥାଟା କହିପାରିବୁ, ନା ଭାଇ ଆସିଲେ କହିବେ ?

—ତୋର ଏମିତି ପ୍ରଶ୍ନଟାଏ ଯେ ପାରିବି ନାହିଁ । ତୋ ଭାଇ ପାରିବେ ? ତୁ ଜାଣିଚୁ ପରା ପୃଥିବୀ ପରିଭ୍ରମଣ କରି ଆସିଛି । ମୋତେ ଚନ୍ଦ୍ରଲୋକର ସାଧାରଣ ସ୍ତ୍ରୀଲୋକଟିଏ ବୋଲି ଭାବିଲୁ କି ?

—ନାଇଁ ଅପା ! ତୁ ଏତେ ରାଗନା । ମୁଁ ତୋତେ ହିଁ ପଚାରୁଛି; ତୁ ଉତ୍ତର ଦେ । ତୋତେ ଏଇ ଉତ୍କଳାବର୍ତ୍ତିଙ୍କ କଥା ପଚାରୁଥିଲି । ଉତ୍କଳାବର୍ତ୍ତିଙ୍କ କଥା ନେଇ ଆମ କଲେଜରେ ବହୁତ ଆଲୋଚନା ହେଉଛି ।

—ଉତ୍କଳାବର୍ତ୍ତି ? ଚମକପଡ଼ିଲେ ଶାଙ୍ଗରନା । ଜିଜ୍ଞାସୁ ନୟନରେ ଅନାଇ ରହିଲେ ସାନଭଉଣୀ ରନା ଆଡ଼େ ।

—ହଁ ଅପା ଉତ୍କଳାବର୍ତ୍ତିକୁ ଦେଖି ମୋ ସାଙ୍ଗମାନେ କହୁଛନ୍ତି, ପୃଥିବୀର ଲୋକମାନେ ଚାଲନ୍ତି ନାହିଁ; ଖାଲି ଦୌଡ଼ନ୍ତି । ଉତ୍କଳାବର୍ତ୍ତିଙ୍କୁ ପଚାରିବାରୁ ସେ କହୁଛନ୍ତି—ସେ ଦୌଡ଼ୁ-ନାହାଁନ୍ତି; ଆମେ ଯେମିତି ସ୍ୱାଭାବିକ ଭାବେ ଚାଲୁଛେ, ସେ ବି ସେପରି ଚାଲୁଛନ୍ତି ।

—ଆଉ ଗୋଟିଏ କଥା ଅପା ! ଉତ୍କଳାବର୍ତ୍ତିଙ୍କୁ ତାଙ୍କ ଚାଲି ବିଷୟରେ ମୋ ସାଙ୍ଗ-ମାନଙ୍କର ମତାମତ ଜଣାଇବାରୁ ସେ କହୁଛନ୍ତି—ଆମେମାନେ କୁଆଡ଼େ ସାତଦିନଧରି

ଖାଇ ନଥିବା ଦୁର୍ବଳ ଲୋକଙ୍କ ଭଳି ଅତି ଧୀରେ ଧୀରେ ଚାଲୁଛେ । ଖାଲି ମୁଁ ନୁହେଁ, ସାରା ଚନ୍ଦ୍ରଲୋକର ସବୁ ଲୋକଙ୍କର ଚାଲି ତାଙ୍କୁ ବଡ଼ ଧୀର ଓ ମନ୍ଥର ମନେହେଉଛି । ମୁଁ ତ ଏହାର କାରଣ କିଛି ଠିକ୍ କରିପାରୁ ନାହିଁ । କହିଲୁ ଅପା! ତୁ କଣ କାରଣ ଜାଣିଛୁ ?

ରନାର ପ୍ରଶ୍ନରେ ଶାଙ୍ଗରିନା ନ ହସି ରହିପାରିଲେ ନାହିଁ । କହିଲେ—ଏହି ପ୍ରଶ୍ନଟାର ଉତ୍ତର ପାଇଁ ତୋ ଭାଇଙ୍କୁ ଖୋଜାପଡ଼ୁଥିଲା; କଣ ନା କାଲେ ମୁଁ ଉତ୍ତର ଦେଇ ପାରିବି ନାହିଁ । ହଉ ତା'ହେଲେ ଅପେକ୍ଷା କର, ତୋ ଭାଇ ଆସିଲେ କହିବେ !

—ନାହିଁ ଅପା, ତୁ କହ । ମୋର ଭୁଲ୍ ହୋଇଛି । ଆଉ ଏମିତି କହିବିନି ଅପା !

—ଆରେ ପାଗଳି, ତୁ ଏତିକ ଜାଣିନୁ ? ଖାଲି କହୁଚୁ କଣ ନା ବିଜ୍ଞାନ ପଢ଼ୁଚୁ । ଉତ୍କଳାବନ୍ତି ପରି ପୃଥିବୀର ଲୋକ । ପୃଥିବୀ ଏକ ପ୍ରକାଣ୍ଡ ଗ୍ରହ; ଆମ ଚନ୍ଦ୍ରଲୋକଠାରୁ ଆକାରରେ ଢେର୍ ବଡ଼ । ପୃଥିବୀର ମାଧ୍ୟାକର୍ଷଣବଳ ସେହି ଅନୁସାରେ ଖୁବ୍ ବେଶି: ଚନ୍ଦ୍ରର ମାଧ୍ୟାକର୍ଷଣ-ଶକ୍ତିଠାରୁ ଢେର୍ ଅଧିକ । ଉତ୍କଳାବନ୍ତି ପୃଥିବୀରେ ଜନ୍ମ ହୋଇ ପୃଥିବୀରେ ବଢ଼ିଥିବାରୁ ସେ ପୃଥିବୀର ମାଧ୍ୟାକର୍ଷଣ-ଶକ୍ତି ସହିତ ଅଭ୍ୟସ୍ତ । ପୃଥିବୀର ମାଧ୍ୟାକର୍ଷଣ-ଶକ୍ତି ଭିତରେ ସେ ବିଭିନ୍ନ ପ୍ରକାର କାମ କରିବାର ଯେଉଁ ଅଭ୍ୟାସ ହାସଲ କରିଛନ୍ତି, ସେ ଅଭ୍ୟାସଟା ତାଙ୍କର ନିଜର ହୋଇଯାଇଛି । ସେହି ଅନୁସାରେ ତାଙ୍କ ଶରୀରର ମାଂସପେଶୀଠାରୁ ଆରମ୍ଭ କରି ଏବି କିଛି ଗଠିତ ହୋଇ ଚାଳିତ ହେଉଛି । ପୃଥିବୀର ମାଧ୍ୟାକର୍ଷଣ-ଶକ୍ତି ସହିତ ଅଭ୍ୟସ୍ତ ଥିବାରୁ ଉତ୍କଳାବନ୍ତି କମ୍ ମାଧ୍ୟାକର୍ଷଣ-ଶକ୍ତିସମ୍ପନ୍ନ ଚନ୍ଦ୍ରପୃଷ୍ଠରେ ଚାଲିବାବେଳକୁ ତାଙ୍କୁ ସହଜ ଲାଗୁଛି ! ସେ ତାଙ୍କ ଚାଲିବା ରୀତିରେ ଚାଲିଲା-ବେଳକୁ ଆମକୁ ଦୌଡ଼ିଲା ଭଳି ଦିଶୁଛନ୍ତି । ଏହି ଉପଗ୍ରହର ଲୋକ ବୋଲି ଆମେ ଆମର ନିଜସ୍ୱ ଚାଲିବା ରୀତିରେ ଚାଲୁଛୁ । ସେ ଯେତେବେଳେ ନିଜେ ଦୌଡ଼ିଲା ଭଳି ଚାଲୁଛନ୍ତି; ଆମ ଚାଲିଟା ତାଙ୍କୁ ଧୀରେ ଧୀରେ ଚାଲିଲା ଭଳି ଦିଶିବନି ତ ଆଉ କଣ ଦିଶିବ ?

—ଆରେ ସତେ ତ ! ଠିକ୍ କହୁଛୁ ଅପା ! ମୋର ଆଉ ସେ ଆଡ଼କୁ ମୋଟେ ଖିଆଲ ନାହିଁ । ମୁଁ କେଡ଼େ ଓଲିଟାଏ ସତେ; ଏଇ କଥାଟାକୁ ଜାଣିପାରୁନି ? ମୁଁ ତ ଖାଲି ନୁହେଁ, ଆମ କଲେଜର ସବୁଗୁଡ଼ାକ ଓଲୁ । ଏତିକ ନ ବୁଝି କହୁଛନ୍ତି କଣ ନା ପୃଥିବୀର ଲୋକେ ଚାଲି ଜାଣିନାହାନ୍ତି; ଖାଲି ଦୌଡ଼ି ଜାଣିଛନ୍ତି ।

ଶାଙ୍ଗରିନା କହିଲେ—ଆରେ ପାଗଳି, ଖାଲି ସେତିକ ନୁହେଁ; ଆମେ ଯେତେବେଳେ ପୃଥିବୀକୁ ଗଲୁ, ପ୍ରଥମେ ପ୍ରଥମେ ପୃଥିବୀରେ ଭଲ ଭାବରେ ଚାଲିପାରିଲୁନି । ପୃଥିବୀପୃଷ୍ଠରେ ଚାଲିବାକୁ ଆମକୁ ଯେତେ କଷ୍ଟ ହେଉଥିଲା; ସେ କଥା କହିହେବନି । ତା'ର କାରଣ କଣ ଜାଣିଛୁ ? ଆମର ମାଂସପେଶୀ ଚନ୍ଦ୍ରଲୋକର ଦୁର୍ବଳ ମାଧ୍ୟାକର୍ଷଣବଳ ସହିତ ଅଭ୍ୟସ୍ତ । ସେଗୁଡ଼ିକ ସେହି ଅନୁସାରେ ତିଆରି ହୋଇଛି । ତେଣୁ ଆମେ ଯାଇ ଯେତେବେଳେ ବିରାଟ ମାଧ୍ୟାକର୍ଷଣବଳ ଥିବା ପୃଥିବୀ ଉପରେ ଚାଲି, ଆମର ଅପେକ୍ଷାକୃତ ମାଂସପେଶୀ ଆମକୁ

ଚନ୍ଦ୍ରପୃଷ୍ଠରେ ଚାଲିବା ଗତିରେ ଚାଲିଇ ଦେଇ ପାରିଲି ନାହିଁ । ଚନ୍ଦ୍ରପୃଷ୍ଠରେ ଆମର ଚାଲିବା ବ୍ୟବଧାନ ପ୍ରାୟ ଦୁଇ ଫୁଟ ଥିଲାବେଳେ ପୃଥିବୀପୃଷ୍ଠରେ ତା ଚାରି ପାଞ୍ଚ ଇଞ୍ଚରୁ ବେଶି ହେଲାନି । ତା ଅର୍ଥ, ଆମେ ଏଠି ଚାଲିଲାବେଳେ ଗୋଟିଏ ଗୋଡ ଆଉ ଗୋଟିଏ ଗୋଡ଼ଠାରୁ ଯେତିକି ବଳ ନେଇ ଫୁଟେ ଦୁଇ ଫୁଟ ଦୂରରେ ପଡୁଛୁ, ସେତିକି ବଳ ଖର୍ଚ୍ଚ କରି ପୃଥିବୀପୃଷ୍ଠରେ ଗୋଟିଏ ଗୋଡ଼ଠାରୁ ଆଉ ଏକଗୋଡ଼ ଚାରିପାଞ୍ଚ ଇଞ୍ଚରୁ ବେଶି ଗଲା-ନାହିଁ । ପୃଥିବୀପୃଷ୍ଠରେ ଆମେ ଚାଲୁଥିଲାବେଳେ ଯେ ଦେଖିବ ସେ କହିବ ଆମେ ଖୁବ୍ ଧୀରେ ଧୀରେ ଚାଲୁଛୁ ବୋଲି । ଏହାର କାରଣ କିଣ ବୁଝିଲୁଟି ? ଚନ୍ଦ୍ରଲୋକର ଅଧିବାସୀଙ୍କର ପୃଥିବୀରେ ଅବସ୍ଥା ଯାହା; ପୃଥିବୀ ଅଧିବାସୀଙ୍କର ଚନ୍ଦ୍ରଲୋକରେ ଅବସ୍ଥା ତାର ଓଲଟା । ଆମେ ପୃଥିବୀକୁ ଗଲେ ଖୁବ୍ ଧୀରେ ଧୀରେ ଚାଲିବୁ, ପୃଥିବୀ ଲୋକେ ଚନ୍ଦ୍ରକୁ ଆସିଲେ ଦୌଡ଼ିଲି ଭଳି ଚାଲିବେ—ଯଦିଚ ଉଭୟ ସେମାନଙ୍କ ନିଜ ନିଜ ବଳ ସ୍ୱାଭାବିକ ଭାବରେ ଖର୍ଚ୍ଚ କରି ଚଲାବୁଲା କରୁଛନ୍ତି ।

× × ×

ସେଦିନ ଆମ କଲେଜରେ ବାର୍ଷିକ ସ୍ପୋର୍ଟସ୍ । ମୁଁ ପ୍ରତିଯୋଗିତାରେ ଯୋଗ ଦେବାକୁ ମନା କଲେହେଁ ଶାଙ୍ଗରିନା ମୋ ନାଁ ଜବରଦସ୍ତି ପ୍ରତିଯୋଗୀ ତାଲିକାଭୁକ୍ତ କରିଦେଲି । କେତେ ରକମର ଖେଳ—ତାର ଜିଦ୍, ମୁଁ ଯେମିତି ସବୁ ପ୍ରକାର ଖେଳ-ପ୍ରତିଯୋଗିତାରେ ଭାଗ ନିଏ । କିନ୍ତୁ ମୋତେ କିଣ ଏତେ ରକମର ଖେଳ ଜଣା ? କିଣ କରିବି; ଅଗତ୍ୟା କେତୋଟି ଖେଳରେ ଯୋଗଦେବାକୁ ଠିକ୍ କଲି । ଯୋଗ ନ ଦେଲେ ଅନୁରୋଧ ରହିଲାନି ବୋଲି ଶିନା ଅଭିମାନ କରି ବସିବ । ତାର କେଜାଣି କାହିଁକି ଧାରଣା, ମୁଁ ଯଦି ଖେଳରେ ଯୋଗଦିଏ, ତେବେ ଚାମ୍ପିୟାନ୍ ହେବାର ଆଶା ଅଛି । ତା'ରି କଥାରେ ବିଭିନ୍ନ ପ୍ରକାର ଦୌଡ଼, ଡ଼ିଆଁ ଓ ଫିଙ୍ଗାଫିଙ୍ଗି ଖେଳରେ ଯୋଗଦେବାକୁ ନିଷ୍ପତ୍ତି କଲି ।

× × ×

ସ୍ପୋର୍ଟସ ଦିନ କଲେଜ ପଡ଼ିଆରେ ପ୍ରତିଯୋଗୀମାନେ ଏକାଠି ହେଲେ । ସେମାନଙ୍କ ଭିତରେ ମୁଁ ମଧ୍ୟ ଥାଏ । ଦର୍ଶକ-ଗ୍ୟାଲେରିରେ ଶାଙ୍ଗରିନା, ଶାଙ୍ଗଶିନା, କେବଲପ୍ରାୟ ଓ ତାଙ୍କର ବନ୍ଧୁମାନେ ଅନ୍ୟମାନଙ୍କ ସହ ବସିଥାନ୍ତି । ସେମାନେ ମୋ ବିଷୟରେ ବିଶେଷ ଆସ୍ଥାବାନ୍ । ମୁଁ ଯେ ସ୍ପୋର୍ଟସ୍‌ରେ ନିଶ୍ଚୟ ଚାମ୍ପିୟାନ୍ ହେବି, ସେମାନେ ଧରିନେଇଥାନ୍ତି । ତେବେ ବେଳେବେଳେ ସନ୍ଦେହ ହେଉଥାଏ, ମୁଁ ତ ଏଠାକାର ଆବହାଓ୍ୱାରେ ଅଭ୍ୟସ୍ତ ନୁହେଁ ; କେଜାଣେ କେଉଁ ମୁହୂର୍ତ୍ତରେ କିଣ ହୋଇପାରେ ।

ଖେଳ ଆରମ୍ଭ ହେଲା । ପ୍ରଥମେ ଆରମ୍ଭ ହେଲା ଦୌଡ଼ । ଗୋଟିକ ପରେ ଗୋଟିଏ— ବିଭିନ୍ନ ପ୍ରକାରର ଦୌଡ଼ । ସବୁଥିରେ ମୁଁ ହେଲି ପ୍ରଥମ । ମୁଁ ଶହେ ମିଟର ଦୌଡ଼ିଲା ବେଳକୁ ଚନ୍ଦ୍ରଲୋକର ପିଲାଏ ଦଶ ମିଟର ଦୌଡ଼ିନାହାନ୍ତି । ଡ଼ିହୁଁ ଡ଼ିହୁଁ ଦୌଡ଼ରେ କଲେଜରେ ଯେତେ ପୂର୍ବ ରେକର୍ଡ ଥିଲା, ସବୁ ଭାଙ୍ଗି ଚୁରମାର । ଦର୍ଶକମାନେ ମୋତେ

ଅଭିନନ୍ଦନ ଜଣାଇ ଓ ଆହୁରି ଉତ୍ସାହିତ କରିବାପାଇଁ ବାରମ୍ବାର କରତାଳି ଦେଉଥାନ୍ତି । ହାଇଜମ୍ପ, ଲଙ୍ଗଜମ୍ପ, ଜେଭେଲିନ୍ ଓ ଡିସ୍କସ୍ ଥ୍ରୋ, ସବୁଥିରେ ନୂଆ ରେକର୍ଡ ସୃଷ୍ଟି କଲି । ହାଇଜମ୍ପରେ ମୁଁ ଛଅଶ ଫୁଟ ଉଚ୍ଚ ଡେଇଁଲି ବେଳକୁ ସେଠାକାର ଚନ୍ଦ୍ରଆଁ ଳି-ମାନେ ଛ'ଫୁଟ ଡେଇଁପାରୁ ନାହାନ୍ତି । ମୁଁ ଯେଉଁଠି ଦେଡଶ' ଫୁଟ ଲଙ୍ଗ୍ ଜମ୍ପ କରୁଛି, ସେମାନେ କୋଡ଼ିଏ ଫୁଟ ଟପୁନାହାନ୍ତି । ଏପରି ସ୍ଥଳରେ ପୂର୍ବ ରେକର୍ଡ ରହିବ ବା କେମିତି ? ସବୁ ପ୍ରତିଯୋଗୀଙ୍କ ମନରେ ଦୁଃଖ; କାହାରି ମନରେ ଟିକେ ହେଲେ ସରସତା ନାହିଁ । କିନ୍ତୁ ଶାଙ୍ଗରିନା,ଶାଙ୍ଗରିନା,କେବଲପ୍ରାସ୍ତ ଓ ତାଙ୍କର ବନ୍ଧୁମାନଙ୍କ ଆନନ୍ଦ କହିଲେ ନ ସରେ । ଖେଳ ଶେଷରେ ମୁଁ ଯେତେବେଳେ ସବୁପ୍ରକାର ପ୍ରତିଯୋଗିତାରେ ନୂତନ ରେକର୍ଡ ସୃଷ୍ଟି କରି ଶ୍ରେଷ୍ଠ ଆଥଲେଟ୍‌ର ସମ୍ମାନରେ ଭୂଷିତ ହୋଇ ପଡ଼ିଆ ବାହାରକୁ ଆସିଲି—ମୋତେ କେମିତି ଅଭ୍ୟର୍ଥନା କରିବ ନପାରି ଶାଙ୍ଗରିନା ମୋତେ ଆନନ୍ଦରେ କୁଣ୍ଢାଇପକାଇ କହିଲା—ଆଜି ତୁମେ ଯାହା କଲ, ଉତ୍କଳାବନ୍ତି ! ସାରା ଚନ୍ଦ୍ରଲୋକର ଇତିହାସ ତାହା ଭୁଲିପାରିବନି । ଚନ୍ଦ୍ରଲୋକର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ତୁମର ଏହି ଅପୂର୍ବ କ୍ରୀଡ଼ା-ନୈପୁଣ୍ୟତା ।

କଲେଜରେ ସୁର୍ଣ୍ଣ ସ୍ଥାନ ହେବାର ସୌଭାଗ୍ୟ ଏତେ ଅଳ୍ପ ସମୟରେ ଯେ ଏଭଳି ଦୁର୍ଭାଗ୍ୟରେ ପରିଣତ ହେବ, ସେଦିନ ମୁଁ ଭାବି ପାରି ନଥିଲି । ଅବସ୍ଥା ଏମିତି ହେଲା ଯେ ପାଠପଢ଼ାରେ ଡୋରି ବାନ୍ଧିବାକୁ ପଡ଼ିଲା । ମୋର କୃତିତ୍ୱ ଖବରକାଗଜ ଜରିଆରେ ଚନ୍ଦ୍ରଲୋକରେ ପ୍ରଚାରିତ ହୋଇଯିବାକ୍ଷଣି ଆସିଲା ବିଭିନ୍ନ ସ୍ଥାନର ସ୍ପୋର୍ଟସରେ ଯୋଗ ଦେବାପାଇଁ ଶହ ଶହ ନିମନ୍ତ୍ରଣ । ସେ ସବୁ ନିମନ୍ତ୍ରଣ ରକ୍ଷା ନ କରିବାର ଉପାୟ ନାହିଁ । କଲେଜ, ପ୍ରଦେଶ, ଦେଶ, ଶେଷରେ ସାରା ଚନ୍ଦ୍ରଲୋକର ଆନ୍ତର୍ଜାତିକ ଖେଳ-ପ୍ରତିଯୋଗିତାରେ ଯୋଗ ଦେଇ ଦେଇ ମୋ ଦିନଗୁଡ଼ାକ କଟିବାକୁ ଲାଗିଲା । ପାଠପଢ଼ାର ନାଁ ଧରିବାକୁ ବେଳ କାହିଁ ? ସେ ସବୁଥିରେ ଯୋଗ ଦେବାକୁ ମୁଁ ବା ଯାହା ଅରାଜି ହୁଅନ୍ତି, ମାତ୍ର ଶାଙ୍ଗରିନାର ଅନୁରୋଧକୁ ଏଡ଼ି ନପାରି ସବୁଥିରେ ଯୋଗ ଦେବାକୁ ବାଧ୍ୟ ହୁଏ ।

ସାରା ଚନ୍ଦ୍ରଲୋକର ସର୍ବଶ୍ରେଷ୍ଠ ଆଥଲେଟ୍ ଭାବରେ ମୁଁ ଯେଉଁଦିନ ପ୍ରତିଷ୍ଠା ଅର୍ଜନ କଲି, ସେଦିନ ଶାଙ୍ଗରିନାର ଆନନ୍ଦ କହିଲେ ନ ସରେ । ଆମ ଘରଠାରୁ ତିନିଶହ ମାଇଲ ଦୂରରେ ଏହି ଆନ୍ତର୍ଜାତିକ ଖେଳ ପ୍ରତିଯୋଗିତା ହେଉଥାଏ । ପୂର୍ବପରି ସବୁ ଖେଳରେ ମୁଁ ନୂଆ ରେକର୍ଡ ସୃଷ୍ଟି କଲି । ସାରା ଚନ୍ଦ୍ରଲୋକ ମୋ ପ୍ରଶଂସାରେ ମୁଖରିତ । ସମସ୍ତଙ୍କ ମୁହଁରେ ମୋର ଉଚ୍ଛ୍ୱସିତ ପ୍ରଶଂସା—ବାଃ ! ମଣିଷଟା କି ଶକ୍ତି ପାଇଛି କେଜାଣି; ତା ଆଗରେ ଆମ ଚନ୍ଦ୍ରଲୋକର କେହି ଠିଆ ହୋଇ ପାରିଲେ ନାହିଁ ! ଖେଳାଳି ଭଳି ଖେଳାଳିଟାଏ । ଏମିତି ଖେଳାଳି ଚନ୍ଦ୍ରଲୋକର ଇତିହାସରେ ପ୍ରଥମ ।

ଚନ୍ଦ୍ରଲୋକର ଆନ୍ତର୍ଜାତିକ ପ୍ରତିଯୋଗିତା ସରିବା ପରେ ଆମେ ଯେତେବେଳେ ଫେରୁ ଶାଙ୍ଗରିନା କହିଲା—ଏ ଆନନ୍ଦ ବେଳରେ ତୁମେ କଣ ଘରକୁ ଫେରିବାକୁ ଚାହୁଁଛ,

ଉତ୍କଳାବର୍ତ୍ତି ! ମୋର ତ ମୋଟେ ମନ ହେଉନାହିଁ ଘରକୁ ଫେରିଯିବା ପାଇଁ । ଚାଲ ଏହି ଆନନ୍ଦର ମୁହୂର୍ତ୍ତଗୁଡ଼ିକ ଉପଭୋଗ କରିବା ପାଇଁ ଚନ୍ଦ୍ରଲୋକର ଶ୍ରେଷ୍ଠ ତପୋବନକୁ ଯିବା । ଏଭଳି ମୁହୂର୍ତ୍ତରେ ସେମିତି ତପୋବନ ଦରକାର, ଯେଉଁଠି ଆମେ ଏହି ବିଜୟର ଆନନ୍ଦଟିକକ ନିର୍ଜନରେ ଉପଭୋଗ କରିପାରିବା । ଚନ୍ଦ୍ରଲୋକର ସେହି ଶ୍ରେଷ୍ଠ ତପୋବନଟି ଏଠୁ ବେଶି ଦୂର ନୁହେଁ । ସେଠାରେ କିଛି ସମୟ କଟାଇ ଆମେ ଫେରିବା ଘରକୁ ।

ସନ୍ଧ୍ୟା ଆଗତ ପ୍ରାୟ । ପନ୍ଦର ଦିନର ନିରବଚ୍ଛିନ୍ନ ଦିନ ଆମକୁ ଏତେ କର୍ମମୁଖର କରି ରଖିଥାଏ ଯେ ଆମ ମନ ଲୋଡ଼ୁଥାଏ ଏକ ନିର୍ଜନ ବିଶ୍ରାମ ସ୍ଥାନ । ଚନ୍ଦ୍ରଲୋକରେ ଅଦ୍ଭୁତ ଏ ରାତିର ଆଗମନ । ନିରବଚ୍ଛିନ୍ନ ଭାବରେ ରହିବ ଚନ୍ଦ୍ରପୃଷ୍ଠରେ ପନ୍ଦରଟି ଦିନ । ପନ୍ଦରଦିନ ପରେ ପୁଣି ହେବ ସୂର୍ଯ୍ୟୋଦୟ । ଥରେ ସୂର୍ଯ୍ୟ ଉଦିତ ହେଲେ ଆକାଶରେ ବିରାଜମାନ କରିବ ପୁଣି ସେହିପରି ପନ୍ଦରଦିନ । ଚନ୍ଦ୍ରପୃଷ୍ଠରେ ମାସରେ ଥରେ ଆସେ ସନ୍ଧ୍ୟା; କିନ୍ତୁ ସେ ଦୃଶ୍ୟ ଅତୀବ ମନୋରମ । ପୃଥିବୀରେ ଯେମିତି ସନ୍ଧ୍ୟାକାଳୀନ ଦୃଶ୍ୟ ଘଣ୍ଟାଏ ଦୁଇ ଘଣ୍ଟାରୁ ଅଧିକ ସମୟ ରହେ ନାହିଁ, ଏଠାରେ କିନ୍ତୁ ତା ନୁହେଁ । ଆଲୋକ ଯାଇ ଅନ୍ଧକାର ଆସିବାକୁ ଯେତେ ସମୟ ଲାଗେ, ତାହା ପୃଥିବୀର ପ୍ରାୟ ଗୋଟାଏ ଦିନର ସମୟ । ସେହିପରି ସୂର୍ଯ୍ୟ ଉଦୟ ହେବାକୁ ଆରମ୍ଭ କଲେ, ପୂର୍ଣ୍ଣଭାବରେ ଉଦିତ ହେଉଁ ହେଉଁ ବିତିଯାଏ ପୃଥିବୀର ଗୋଟାଏ ଦିନ । ପ୍ରଥମେ ପ୍ରଥମେ ଏଭଳି ଲମ୍ବାଦିନ ଓ ରାତି ବଡ଼ ଅସହ୍ୟ ଲାଗୁଥିଲା; କିନ୍ତୁ ଏବେ ତାହା ଅଭ୍ୟାସରେ ପଡ଼ିଗଲାଣି । ଘନ ଅନ୍ଧକାର ଆସିବା ପୂର୍ବରୁ ଆମେ ଚନ୍ଦ୍ରପୃଷ୍ଠର ସେହି ତପୋବନରେ କିଛି ସମୟ କଟାଇ ଘରକୁ ଫେରିବାକୁ ଠିକ୍ କରି ତପୋବନ ଅଭିମୁଖେ ବାହାରିପଡ଼ିଲୁ ।

ନିକଟବର୍ତ୍ତୀ ଭୂମିତଳ ଷ୍ଟେସନକୁ ଯାଇ ଖଣ୍ଡିଏ ଟିକଟ ଆଣି ଧାଡ଼ି ଧାଡ଼ି ହୋଇ ଥୁଆହୋଇଥିବା ଯାନ ଭିତରୁ ଗୋଟିକୁ ବାଛି ସେଥିରେ ବସିଲୁ । ଟିକଟ୍‌ଟିକୁ ଇଞ୍ଜିନ୍ ଭିତରେ ପୂରାଇ ସୁଇଚ୍ ଟିପିଛୁ କି ନାହିଁ ଯାନଟି ଆଖିପିଛୁଳାକେ ଛୁଟିଚାଲିଲା ଆମ ଦୁହିଁଙ୍କୁ ନେଇ ତପୋବନ ଅଭିମୁଖେ । ଭୂମିତଳର ଚାରିଆଡ଼େ ଘନ ଅନ୍ଧକାର । କିନ୍ତୁ କୃତ୍ରିମ ଆଲୋକରେ ଆମ ଯାନ ଭିତରେ ଦିନ ଭଳି ଉଦ୍ଭାସିତ । ପାଖକୁ ପାଖ ଲାଗି ଦୁଇଟି ଆସନରେ ବସିଥାଉଁ—ମୁଁ ଆଉ ଶାଙ୍ଗରିନା ।

ଯାନ ସହିତ ମୋର ମନ ବି ଗତିଶୀଳ ହୋଇଉଠିଥାଏ । ମୁଁ ଭାବୁଥାଏ—କିଛି ବର୍ଷତଳେ ମୁଁ ପୃଥିବୀରେ କ'ଣ ଥିଲି; ବର୍ତ୍ତମାନ ଏଠି କଣ ଅଛି ? କେତେ କଷ୍ଟରେ ମୁଁ ଜୀବନ ବିତାଉଥିଲି ପୃଥିବୀରେ; କିନ୍ତୁ ଏଠି କି ଅପୂର୍ବ ସମ୍ମାନ, କେତେ ପ୍ରଶଂସା, କି ସୁଖ ! ଆଉ ଭାବିପାରିଲି ନାହିଁ; ଆଖିରେ ଆନନ୍ଦାଶ୍ରୁ ଆସିଗଲା ।

ମୋତେ ଏମିତି ଧ୍ୟାନମଗ୍ନ ଦେଖି ଶାଙ୍ଗରିନା ହଲାଇ ଦେଇ ପଚାରିଲା—ତୁମେ ଏତେ କଣ ଭାବିଚାଲିଛ ଉତ୍କଳାବର୍ତ୍ତି ? ବର୍ତ୍ତମାନ ପ୍ରୋଗ୍ରାମ କଣ—କିଛି ତ ଠିକ୍ କଲନାହିଁ ଏପର୍ଯ୍ୟନ୍ତ । ମୁଁ କଣ ଭାବୁଛି ଜାଣ—ସୂର୍ଯ୍ୟୋଦୟ ନ ହେଲା ପର୍ଯ୍ୟନ୍ତ ଆମେ ଏହି ପନ୍ଦରଦିନ

କାଲି ଆଉ ଘରକୁ ଫେରିବା ନାହିଁ—ଘୂରିବୁଲିବା ସାରା ଚନ୍ଦ୍ରଲୋକ । କେତେ ତପୋବନ, ହ୍ରଦକୂଳ, ସହର ବୁଲିବୁଲି ଆମେ ଘରକୁ ଫେରିବା ପନ୍ଦର ଦିନ ପରେ । ତପୋବନରେ ପହଞ୍ଚି ଆମେ ଖବର ପଠାଇଦେବା ଘରକୁ, ତାହା ସହ ଆମର ଏହି ପନ୍ଦରଦିନିଆଁ ପ୍ରୋଗ୍ରାମ ମଧ୍ୟ । ଆମ ଘରେ କେହି ଆପତ୍ତି କରିବେ ନାହିଁ । ତୁମର ତ ସେଥିରେ କିଛି ଆପତ୍ତି ନାହିଁ ଉତ୍କଳାବର୍ତ୍ତି ?

ମୁଁ ହସି ହସି କହିଲି—ତୁମ ଅନୁରୋଧ କେତେବେଳେ ଅନ୍ୟଥା ହୋଇଛି ଯେ ଆଜି ହେବ ?

ହଠାତ୍ ଚତୁର୍ଦ୍ଦିଗ ଦିନ ଭଳି ଝଲସି ଉଠିଲା । ଶାଙ୍ଖରିନା କହିଲା—ଏଥର ଆମ ଷ୍ଟେସନ ହୋଇଗଲା । ଏହି ଷ୍ଟେସନର ଠିକ୍ ମୁଣ୍ଡଉପରେ କଣ ଅଛି ଜାଣ ? ଅଛି ଚନ୍ଦ୍ରଲୋକର ଶ୍ରେଷ୍ଠ ରମଣୀୟ ତପୋବନ—ନନ୍ଦନକାନନ । ସେଠାକୁ ଦାର୍ଶନିକ ଗଲେ କବି ହୋଇ ଫେରେ, ଗୀତ ଗାଇ ଜାଣି ନଥିବା ଲୋକର କଣ୍ଠରୁ ସଙ୍ଗୀତର ଲହରୀ ଛୁଟେ, ଶୁଷ୍କ କଠିନ ହୃଦୟର ଲୋକ ରସଭରା ଅନୁଭୂତି ନେଇ ଫେରେ । କିନ୍ତୁ ଆମେ···

ଆମେ କଣ ହୋଇ ଫେରିବା, ତା ହୁଏତ ବର୍ତ୍ତମାନ କହି ହେବନି, ନୁହେଁ ? ଶାଙ୍ଖରିନା ମୁହଁରୁ କଥା ଛଡ଼ାଇ ନେଇ କହିଲି—ଆମର ଏହି ଯିବା ବାଟ ସେ କଥା କହିପାରିବ ନାହିଁ ସିନା; କିନ୍ତୁ ଫେରନ୍ତା ବାଟ କହି ପାରିବ ନିଶ୍ଚୟ !

ଗତିଶୀଳ ପାହାଚରେ ଉପରକୁ ଆସିଛୁ କି ନାହିଁ ତପୋବନର ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହୋଇପଡ଼ିଲି । କି ସୁନ୍ଦର ତପୋବନ ! କବିର ଭାଷା ବି ହାର ମାନିଯିବ ଏହାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପାଇଁ ।

ସେତେବେଳକୁ ଚନ୍ଦ୍ରର ଚକ୍ରବାଳରୁ ସୂର୍ଯ୍ୟ ଅପସରି ଯାଇଥିଲେ ହେଁ ଆକାଶ ବେଶ୍ ଆଲୋକିତ । ନାନା ବର୍ଣ୍ଣରେ ରଞ୍ଜିତ ହୋଇ ପଶ୍ଚିମ ଆକାଶ ବିଚିତ୍ର ବର୍ଣ୍ଣ ଧାରଣ କରିଥାଏ, ଗୋଧୂଳି ବିଭିନ୍ନ ବର୍ଣ୍ଣ କିରଣର ସମାବେଶରେ ହସିଉଠୁଥାଏ । ଆସନ୍ନ ସନ୍ଧ୍ୟାର ଆଗମନ ଜଣାଇ ଗୋଟିଏ ପଛରେ ଗୋଟିଏ ତାରା ବେଶ୍ ଜକ୍‌ଜକ୍ ହୋଇ ସନ୍ଧ୍ୟାକାଳୀନ ନଭୋମଣ୍ଡଳରେ ଦେଖାଦେଲେଣି । ଆକାଶ ଆହୁରି ଟିକିଏ ଅନ୍ଧକାର ହୋଇଗଲେ ଏହି ନକ୍ଷତ୍ରଗୁଡ଼ିକର ସଂଖ୍ୟା ଓ ଜ୍ୟୋତି ଆହୁରି ବଢ଼ିଯିବ; କିନ୍ତୁ ଚନ୍ଦ୍ରର ଆକାଶରେ ସଙ୍ଗେ ସଙ୍ଗେ ଅନ୍ଧାର ହେଉଛି ବା କାହିଁ ? ଅନ୍ଧାର ଆସୁ ଆସୁ ଆହୁରି କେତେ ସମୟ ବିତିଯିବ ।

ଚନ୍ଦ୍ରର ଆକାଶରୁ ଅସ୍ତଗାମୀ ସୂର୍ଯ୍ୟର ଆଲୋକ ପୂରାପୂରି ଲିଭି ନ ଥିଲେ ହେଁ ତପୋବନ ଭିତରେ ଅନ୍ଧାର ବେଶ୍ ଘନେଇ ଆସିଥାଏ । ତପୋବନର ଏହି ଅନ୍ଧକାରକୁ ଦୂର କରିବାପାଇଁ ତପୋବନ ଭିତରେ ଦିଆଯାଇଥିବା ଅସଂଖ୍ୟ ବିଚିତ୍ର ବର୍ଣ୍ଣର ବିଦ୍ୟୁତ୍‌ବତୀ ନୀଳ ହରିତ୍ ପୀତ ଆଲୋକ ବିକିରଣ କରି ତପୋବନକୁ ଆହୁରି ରମଣୀୟ କରି ଗଢ଼ି ତୋଳିଥାଏ । ମନହେଉଥାଏ ଯେମିତି ଏକ ସ୍ୱପ୍ନପୁରୀ । ମୁଁ ଆଉ ରିନା ହାତ ଧରାଧରି ହୋଇ ସେହି ତପୋବନ ଭିତରେ କିଛି ଦୂର ଅଗ୍ରସର ହେବାପରେ ତପୋବନର ଗୋଟିଏ

ମୃଦୁବାତ- ବିକ୍ଷୋଭିତ ପୁଷ୍କରିଣୀ କୂଳରେ ଅଟକିଗଲୁ । ତପୋବନର ଆରପାଖରୁ ବହି-ଆସୁଥିବା ସ୍ନିଗ୍ଧ ସମୀରଣରେ ଆମ ମନ ଉଲସି ଉଠୁଥାଏ । ପୁଷ୍କରିଣୀଟି ସ୍ୱଚ୍ଛ ନୀରରେ ପୂର୍ଣ୍ଣ, ଅସଂଖ୍ୟ ଜଳଜ ବିଚିତ୍ର ବର୍ଣ୍ଣର ପୁଷ୍ପସମ୍ଭାରରେ ଲଦିଟି ପଡ଼ୁଛି—ଦିଶୁଛି ଯେମିତି ଏକ ନାନା ରଙ୍ଗର ସୁନ୍ଦର ଗାଲିଚା । ଠାଏ ଠାଏ କେତେଗୁଡ଼ିଏ ଜଳଚର ପ୍ରାଣୀ ଜଳକ୍ରୀଡ଼ାରେ ଉନ୍ମତ୍ତ । ଅନ୍ଧକାର ଆଗମନ ପ୍ରତି ଭ୍ରୂକ୍ଷେପ ନକରି ଏହି ପ୍ରାଣୀଗୁଡ଼ିକ ଜଳକ୍ରୀଡ଼ାରେ ରତ । ପୁଷ୍କରିଣୀର ଅଭ୍ୟନ୍ତରରେ ନାନାପ୍ରକାରର ଆଲୋକ ଦିଆଯାଇ ପୁଷ୍କରିଣୀର ଜଳକୁ ସୁବର୍ଣ୍ଣ ଦୀପ୍ତିରେ ରଞ୍ଜିତ କରାଯାଇଛି ।

ପୁଷ୍କରିଣୀଠାରୁ ଅଦୂରରେ ଗଛପତ୍ରର ଆଢ଼ୁଆଳରେ ଏକ ସୁନ୍ଦର ଲତାକୁଞ୍ଜ । ବହୁ ବର୍ଣ୍ଣର ଓ ଜାତିର ପୁଷ୍ପସମ୍ଭାରରେ ଲତାକୁଞ୍ଜଟି ଭାଙ୍ଗିପଡ଼ୁଛି । ବୃନ୍ତରୁ ଖସିପଡ଼ୁଥିବା ଫୁଲରେ କୁଞ୍ଜର ମାର୍ବଲ ଚଟାଣ ଭରପୂର । ମୁଁ ଆଉ ରିନା ସେହି ମାର୍ବଲ ବେଦୀରେ ଯାଇ ବସିଲୁ । ସାନ୍ଧ୍ୟ ସମୀରଣରେ ଦେହ ଓ ମନ ଉଲ୍ଲସିତ ହୋଇ ଉଠୁଥାଏ । ମନେହେଉଥାଏ ଆତ୍ମବିସ୍ମୃତି ଆଉ ବେଶି ଡେରି ନାହିଁ । ଚାରିପାଖର ଜୀବନ୍ତ ପ୍ରକୃତି ମନ ଭିତରକୁ ଆନନ୍ଦରେ ଉଦ୍‌ବେଳିତ କରୁଥାଏ ।

ମୋ ହାତ ଉପରେ ହାତ ରଖି ରିନା ମୋ ପାଖରେ ବସିଥାଏ । ରିନାର ହାତ ଉପରେ ମୃଦୁ ଚାପ ଦେଇ କହିଲି—ଦେଖୁଛ ରିନା, ଏହି କୁଞ୍ଜଟି କେତେ ସୁନ୍ଦର ଦିଶୁଛି, ଯେଉଁଆଡ଼େ ଚାହିଁଲେ ବିଭିନ୍ନ ରଙ୍ଗ ଓ ଗନ୍ଧର ଫୁଲ; ଯେମିତିକି ନବ ବିବାହିତ ଦମ୍ପତିର ବାସର ରାତିର ମଧୁଶଯ୍ୟା ! ଏମିତି ଦୁର୍ବଳ ମୁହୂର୍ତ୍ତରେ ମଣିଷର ମନ କଣ ଲୋଡେ ଜାଣ ରିନା ?

ମୋଠାରୁ ନିଜକୁ ଆହୁରି ବେଶି ଦୁର୍ବଳ ମନେକରୁଥିଲା ରିନା ! ସେ ଏତେ ଦୁର୍ବଳ ହୋଇପଡ଼ିଥିଲା ଯେ ମୋ ପ୍ରଶ୍ନର ଉତ୍ତର ଦେବା ଅବସ୍ଥାରେ ବୋଧହୁଏ ନ ଥିଲା । କେବଳ ଉତ୍କଣ୍ଠାବ୍ୟଞ୍ଜକ ଦୃଷ୍ଟିରେ ମୋ ଆଡ଼କୁ ଚାହିଁ ରହିଥିଲା । ଦେଖିଲି ଲୋହିତ-ରାଗ-ରଞ୍ଜିତ ସନ୍ଧ୍ୟାର ରଙ୍ଗ ଭଳି ରିନାର ଲଜ୍ଜାନିମୀଳିତ ମୁଖ ଆରକ୍ତ ହୋଇଉଠିଛି ଅତି ଆକର୍ଷଣୀୟ ଭଙ୍ଗୀରେ । ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ । ରିନାକୁ ମୋ ଆଡ଼କୁ ଟାଣିଆଣି ଗୁପ୍ତରେ ଭିଡ଼ିଧରି କହିଲି—ଦୁର୍ବଳ ମନର ଏହି ମୁହୂର୍ତ୍ତଗୁଡ଼ିକ ସତେ କେଡ଼େ ସୁମଧୁର ରିନା ? ମନ କହୁଛି, ଏହି ଦୁର୍ବଳ ମୁହୂର୍ତ୍ତଗୁଡ଼ିକ ଆଉ ଅପସରି ଯାଆନ୍ତା କି ! ରିନାର କୋମଳ ବାହୁଯୁଗଳ ସେତେବେଳେ ମୋତେ ପୂରାପୂରି ବେଷ୍ଟନ କରିଥିଲା । ସେ କହିଲା—ତା'ହେଲେ ଆମେ ଦୁଇଜଣ ଏହି ତପୋବନର ଲତାକୁଞ୍ଜ ତଳେ ମାର୍ବଲ ବେଦୀ ଉପରେ ଏପରି ବସିରହିଥାନ୍ତେ !

—ସତରେ ରିନା, ଏଭଳି ଦୁର୍ଲ୍ଲଭ ମୁହୂର୍ତ୍ତ ଜୀବନରେ ଖୁବ୍ କମ୍ ସମୟ ପାଇଁ ଆସେ । ଏଭଳି ମୁହୂର୍ତ୍ତରେ ଜୀବନ ଆହୁରି ରସମୟ ହୋଇଉଠେ । —ଏହା କହୁ କହୁ ମୋର ଆବେଷ୍ଟନୀ ଆହୁରି କଠିନ ହୋଇ ଆସିଲା । ରିନାର କୋମଳ ସୁକୁମାର ତନୁ ପୂରାପୂରି

ମିଶିଗଲା ମୋର ପ୍ରଶସ୍ତ ବକ୍ଷ ସହିତ । ଶନା ଅତି ଆନନ୍ଦରେ ମୋର ବେକସନ୍ଧିରେ ତାର କମନୀୟ ମୁଖମଣ୍ଡଳକୁ ଲୁଚାଇ ମୋ କାନ ପାଖରେ ଆବେଗକମ୍ପିତ କଣ୍ଠରେ ହସି ହସି କହିଲା—ସାବଧାନ ଉଜ୍ଜଳାବର୍ତ୍ତି ! ଏହି ବେଷ୍ଟନୀ ଯଦି ଆଉ ଅଧିକ କଠିନ ହୁଏ, ମୋ ଅବସ୍ଥା କଣ ହେବ ସେ ଆଡ଼କୁ ଖିଆଲ ଅଛି ତ ?

"ତୁମ ଅବସ୍ଥା ? ତୁମ ଅବସ୍ଥା କିଛି ହେବନି ଶନା, ମୁଁ ଜାଣେ । ଯଦି କିଛି ହୁଏ ତେବେ ହେବ ଏଇ"—କହି କହି ଶନାର ସେହି ଆରକ୍ତ କପୋଳ ଉପରେ ଆଙ୍କିଦେଲି ଚୁମ୍ବନର ଏକ ରକ୍ତିମ ଦାଗ ।

ଉହୁ—ଅସ୍ପଷ୍ଟ ସ୍ୱରରେ କହି ପ୍ରତିବାଦର ଛଳନା କଲା ଶନା । ଲକ୍ଷ୍ୟ କଲି, ଶନା ତାର ଅଧରକୁ ଈଷତ୍ ଉନ୍ମୁକ୍ତ କରି ଉତ୍କଣ୍ଠାବ୍ୟଞ୍ଜକ ଅର୍ଦ୍ଧ-ନିମୀଳିତ ଦୃଷ୍ଟିରେ ଅନାଇ ରହିଛି ମୋତେ । ଚାହୁଁ ଚାହୁଁ ଦୁଇ ଅଧରର ମିଳନରେ ଆମେ ଦୁହେଁ ନିଜକୁ ପୂରାପୂରି ଭୁଲିଗଲୁ । ଆମର ଆଖି ମୁଦି ହୋଇଗଲା । ମୁଦ୍ରିତ ଚକ୍ଷୁର ସେହି ଘନ ଅନ୍ଧକାର ଭିତରେ ଆମେ ଦୁହେଁ ପରସ୍ପରକୁ ଦେଖୁଥିଲୁ ଆହୁରି ପାଖରେ, ଆହୁରି ନିବିଡ଼ ଭାବରେ ।

—ଶନା !

—ଉଁ !

—କଣ ଫେରିଯିବା ବର୍ତ୍ତମାନ ?

—ଉଁ ହୁଁ !

ଶନାର ରକ୍ତିମ ଅଧର ପୁଣି ମୋ ଅଧର ସହିତ ଲାଗି ଆସିଲା ।

ଶନାର ଗ୍ରୀବା ଉପରେ ମୁହଁ ଲୁଚାଇ ପଚାରିଲି—ଆଉ କଣ ଚାହଁ ଶନା ?

ଶନା ନିରୁତ୍ତର । ତାହାର ପ୍ରେମାପ୍ଲୁତ ହୃଦୟ ସେତେବେଳେ ଯେ କଣ ଚାହୁଁଥିଲା !

ଶନା ଆଉ ମୁଁ ସେତେବେଳେ ଲୋଡ଼ୁଥିଲୁ ଆହୁରି ନିଭୃତତର ପରିବେଶ, ଆହୁରି ଘନ ଅନ୍ଧକାର । କିନ୍ତୁ ଘନ ଅନ୍ଧକାର ଆସିବା ପରିବର୍ତ୍ତେ ଅନ୍ଧକାର ଧୀରେ ଧୀରେ ଦୂରେଇ ଯିବାକୁ ବସିଥିଲା ଆମଠାରୁ । ଶନାର ଗ୍ରୀବା ଉପରୁ ମୁହଁ ଉଠାଇ ଦେଖେ ତ ଚାରିଆଡ଼ ବେଶ୍ ଉଜ୍ଜ୍ୱଳ । ସାନ୍ଧ୍ୟ ଆକାଶରେ ଉଜ୍ଜ୍ୱଳ ଦୀପ୍ତିମୟ ପୃଥିବୀ ଜ୍ୟୋତ୍ସ୍ନା ବିକିରଣ କରୁଛି । ପୂର୍ବ ଆକାଶରେ ଗୋଲାକାର ଉଜ୍ଜ୍ୱଳ ପୃଥିବୀକୁ ଦେଖି ଶନାକୁ କହିଲି—ପୃଥିବୀ ଉଦୟ ହୋଇ ଆମ ଅନ୍ଧକାରତକ ଛଡ଼ାଇନେଲା । ବନ ଭଳି ଚାରିଆଡ଼ ଉଦ୍ଭାସିତ ହୋଇଉଠିଲାଣି । ମୋର ଜନ୍ମଭୂମି ପୃଥିବୀର ପ୍ରତିଫଳିତ କିରଣ ସତେ କେଡେ ମୃଦୁ, କେଡେ ଶୀତଳ ! ସୂର୍ଯ୍ୟକିରଣର ପ୍ରଖରତା ନ ଥାଇ ପୃଥିବୀର ମୃଦୁ ଜ୍ୟୋତ୍ସ୍ନାରେ ଏହି ତପୋବନଟି ଆହୁରି ସୁନ୍ଦର ହୋଇ ଉଠିଛି । ଶନା ଧୀରେ ଧୀରେ ମୁହଁ ଟେକି ଆକାଶର ମୃଦୁ ଦୀପ୍ତିମୟ ପୃଥିବୀ ଆଡ଼କୁ ଅନାଇବାକୁ ଚେଷ୍ଟା କଲା ।

ମୁଁ ପୁଣି କହିଲି—ଏହି ରାତିରେ ପୃଥିବୀ ଖୁବ୍ ସୁନ୍ଦର ଦିଶୁଛି ସତ; କିନ୍ତୁ ତୁମ ମୁହଁର ସୌନ୍ଦର୍ଯ୍ୟ ପାଖରେ ପୃଥିବୀ ଯେ ନିଷ୍ପ୍ରଭ, ସେ କଥା କେହି ଅସ୍ୱୀକାର କରିବେ ନାହିଁ

ଶନା ! ପୃଥିବୀର ସେହି ଯେଉଁ ସବୁ ଦାଗ ଦେଖୁଛ ସେହି ଦାଗଗୁଡ଼ିକ ପୃଥିବୀର ସୁନ୍ଦର ମୁଖମଣ୍ଡଳ ଉପରେ କଳଙ୍କ; କିନ୍ତୁ ତୁମର ମୁଖମଣ୍ଡଳ ଯେ ପୂର୍ଣ୍ଣପୂର୍ଣ କଳଙ୍କଶୂନ୍ୟ । ଏହା କହି ଶନାର ସେହି ରକ୍ତିମ କପୋଳ ଉପରେ ଆଙ୍କି ଦେଲି ଆଉ ଏକ ଚୁମ୍ବନ । ପୁଣି କିଛି ସମୟ ପାଇଁ ଗାଢ଼ ଆଲିଙ୍ଗନ ଭିତରେ ଆମେ ନିଜକୁ ଭୁଲିଗଲୁ । ଅଧରର ମିଳନରେ ଭାସିଗଲୁ କେଉଁ ସ୍ୱପ୍ନପୁରୀକୁ ।

ଶନାକୁ ଏତେ ନିକଟରେ ଏତେ ଆବେଗମୟୀ ଅବସ୍ଥାରେ କେବେ ପାଇ ନ ଥିଲି ଏହା ପୂର୍ବରୁ । ଶନାର ରକ୍ତିମ ଅଧରଠାରୁ ଦୂରେଇ ଆସୁଥିବା ମୋର ଅଧରକୁ ଆହୁରି ପାଖେଇନେଇ କହିଲି—ଚନ୍ଦ୍ରଲଳନାକୁ ଆଲିଙ୍ଗନରେ ଆବଦ୍ଧ ରଖି ଚୁମ୍ବନ ଦେଇ ଯେଉଁ ଅପୂର୍ବ ଆନନ୍ଦ ପାଇଛି, ତାକୁ ଭୁଲି ପାରିବନି ଶନା ! ଜୀବନର ଏଇ ଦୁର୍ଲଭ ମୁହୂର୍ତ୍ତକୁ କେହି କେବେ ଭୁଲି ପାରିବନି ଜୀବନରେ । ତୁମର ଏତେ ନିକଟରେ ରହି ତୁମର ଏହି ଅସରନ୍ତି ସୌନ୍ଦର୍ଯ୍ୟଭଣ୍ଡାର କେମିତି ମୁଁ ଆବିଷ୍କାର କରି ନଥିଲି, ତାହା ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଶନା ! ଆଜି ମୋଠାରୁ ଅଧିକ ଭାଗ୍ୟବାନ୍ ଏହି ସାରା ଚନ୍ଦ୍ରଲୋକରେ କେହି ନାହିଁ ।

ମୁଦ୍ରିତନୟନା ଶନା ଅଧରକୋଣରେ ସ୍ମିତ ହାସ୍ୟରେଖା ଖେଳାଇ ମୋ କଥାକୁ ଉପଭୋଗ କରୁଥିଲା ।

ନିବିଡ଼ ଆଲିଙ୍ଗନ ଧୀରେ ଧୀରେ କୋହଲ ହୋଇ ଆସୁଥିଲା । ଶନା ମୋ ଛାତି ଭିତରୁ ତାର ଶ୍ରେଷ୍ଠ ମୁଖମଣ୍ଡଳଟିକୁ ଧୀରେ ଧୀରେ ବାହାର କରି ମୋତେ ଦେଖିବାକୁ ଚେଷ୍ଟା କରୁଥିଲା । ମୁଁ ମୁଦିଦେଇଥିବା ଆଖି ଧୀରେ ଧୀରେ ମେଲି ଦେଖିଲି, ପୃଥିବୀର ଜ୍ୟୋତ୍ସ୍ନାଧୌତ ଶନାର ମୁଖମଣ୍ଡଳ ଆହୁରି ସତେଜ, କମନୀୟ, ହୋଇ ଉଠିଛି । ତାର ନୟନକୋଣରେ ଆତ୍ମତୃପ୍ତିର ସଙ୍କେତ । ଅଧରପ୍ରାନ୍ତର ସ୍ମିତ ହାସ୍ୟରେଖା ଶନାକୁ ବର୍ଣ୍ଣନାତୀତ ଭାବେ ଆକର୍ଷଣୀୟ କରିଦେଇଛି ।

କୋହଲ ହୋଇ ଆସୁଥିବା ମୋର ଆଲିଙ୍ଗନ ପୁଣି ନିବିଡ଼ ହୋଇ ଆସିଲା ମୋର ଅଜ୍ଞାତରେ । ଏକ ଶ୍ରାନ୍ତ-କ୍ଳାନ୍ତ ପକ୍ଷୀଟି ପରି ଶନା ଖୋଜୁଥିଲା ମୋ ଛାତିରେ ଆଶ୍ରୟ । ତାକୁ ଆଶ୍ରୟ ଦେଇ ମୁଁ ମୋର ସବୁକିଛି ଅଜାଡି ଦେଇଥିଲି ଶନାଠାରେ ଓ ମୋର ପ୍ରତ୍ୟେକ ଦାନ ଉପଯୁକ୍ତ ପ୍ରତିଦାନ ସହ ଶନାଠାରୁ ଫେରିପାଇଥିଲି ।

## ବାର

ଯେଉଁଦିନ ଆମ କଲେଜରେ ସର୍ବଶ୍ରେଷ୍ଠ ଡିଗ୍ରୀ ପରୀକ୍ଷାର ଫଳ ବାହାରିଲା, ସେଦିନ ଆମ ଘରେ ସମସ୍ତଙ୍କ ଆନନ୍ଦ କହିଲେ ନସରେ । ମୁଁ ଯେ କେବଳ ଡିଗ୍ରୀ ପାଇଲି ତା ନୁହେଁ, ହି

ମୋ ସହିତ ଶାଙ୍ଗରନା ବି । ଘରକୁ ଫେରିଲାବେଳକୁ କି ବିରାଟ ଅଭିନନ୍ଦନ ଆମ ଦୁହିଁଙ୍କ ପାଇଁ ! ସେ ଦିନ ସନ୍ଧ୍ୟା ନାଚ-ଗୀତ ଭୋଜିରେ ମୁଖରିତ ହୋଇଉଠିଥାଏ । ଆମେ ସମସ୍ତେ ଭୁଲିଯାଇଥାଉଁ ନିଜ ନିଜକୁ । ନାଚ, ଗୀତ ଓ ଭୋଜି ଭିତରେ କେତେବେଳେ ଯେ ସମୟ କଟିଗଲା, ଜାଣି ପାରିଲି ନାହିଁ । ତାହାର ଭିତରେ କେତେବେଳେ ଯେ ମୁଁ ଡ୍ରଇଙ୍ଗ୍ ରୁମ୍‌ରେ ଶୋଇଯାଇଛି ମୋର ଖିଆଲ ନାହିଁ ।

କିଛି ସମୟପରେ ହଠାତ୍ ନିଦ ଭାଙ୍ଗିଗଲା । ଝରକା ଦେଇ ଲକ୍ଷ୍ୟ କଲି, ସନ୍ଧ୍ୟା ହେବା ଆରମ୍ଭ ହୋଇଛି; କିନ୍ତୁ ଅନ୍ଧାର ଏପର୍ଯ୍ୟନ୍ତ ଆସିନାହିଁ । କୋଠରିର ଚାରିଆଡ଼କୁ ଲକ୍ଷ୍ୟ କଲି; ଦେଖିଲି ଚାରିଆଡ଼ ବନ୍ଦ । ହଠାତ୍ ଆବଦ୍ଧ କୋଠରିକୁ କେମିତି ଆସିଲି ମନେପକାଇବା ପାଇଁ ଚେଷ୍ଟା କଲି । ଏହି କିଛି ସମୟ ତଳେ ଏଠି ତ ନାଚଗୀତର ଧୁମ୍ ଚାଲିଥିଲା, ଏଠି ତ ଆମ ସହିତ କେତେ ଲୋକ ଥିଲେ; କିନ୍ତୁ ଏ କଣ ? କେହି ନାହାନ୍ତି ଏଠି ? ମୋଠାରୁ ଅଳ୍ପ ଦୂରରେ ଆଉ ଗୋଟିଏ ସୋଫା ଉପରେ ଶୋଇପଡ଼ିଛି ଶାଙ୍ଗରନା । ବଡ଼ ସଙ୍କୋଚ ଲାଗିଲା ମୋତେ । ଅନ୍ୟମାନେ ଦେଖିଲେ କଣ ଭାବିବେ ? ମୁଁ ଦୁଆର ଖୋଲି ବାହାରକୁ ବାହାରି ଯାଉଛି, ଦୁଆର ଖୋଲିବା ଶବ୍ଦରେ ହଠାତ୍ ଉଠିପଡ଼ିଲା ଶାଙ୍ଗରନା । ଅବସ୍ଥା ଦେଖି ବଡ ଲଜ୍ଜିତ ହୋଇପଡ଼ିଲା ସେ ଓ ମୋ ଆଗରୁ ଦଉଡ଼ି ପଳାଇଲା ସେହି କୋଠରିରୁ । ଅନ୍ୟମାନେ କେହି ଆମକୁ ଏଭଳି ଅବସ୍ଥାରେ ଦେଖିଛନ୍ତି କି ନାହିଁ, ଜାଣି ପାରିଲି ନାହିଁ । ଶାଙ୍ଗରନା ଓ କେବଳପ୍ରାପ୍ତ ଘରେ ନାହାନ୍ତି । ସେମାନେ ନିଜ ନିଜ କାମରେ ବାହାରି ଯାଇଛନ୍ତି ବୋଧହୁଏ । ମନେ ମନେ ଭାବିହେଲି, ଆମ ଦୁଇଜଣଙ୍କୁ ଗୋଟିଏ କୋଠରିରେ ରଖି ବାହାରୁ ଏପରି ଦ୍ୱାର ବନ୍ଦ କଲା କିଏ ?

କିଛିସମୟ ପରେ ଶାଙ୍ଗରନା ଘରକୁ ଫେରିଆସିବା ସାଙ୍ଗେ ସାଙ୍ଗେ ରନା ଦୌଡ଼ିଯାଇ ଅପାର ହାତ ଧରି ଅଟକାଇ କହିଲା—ଅପା, ତୁ ଆଜି ଯାହା କଲୁ, ଭଲ କଲୁନି । ମତେ ବଡ଼ ଲାଜ ଲାଗିଲା । ମୋତେ ଓ ଉତ୍କଳାବର୍ତ୍ତିଙ୍କୁ ଗୋଟିଏ ଘରଭିତରେ ରଖି ଦୁଆର ବନ୍ଦ କରି କେମିତି ଚାଲିଗଲୁ କହ ତ ?

—ଆରେ ସତେ ତ, ମୋର ସିଆଡ଼େ ମୋଟେ ଖିଆଲ ନାହିଁ ରନା ! ମୁଁ ବି ତ ସେଇଠି ଶୋଇଯାଇଥିଲି । ହଠାତ୍ ଟେଲିକମ୍ ଶବ୍ଦରେ ଚମକି ଉଠିଆସିଲି । ମୋତେ ଆଉ କେବଳପ୍ରାପ୍ତଙ୍କୁ ଜରୁରୀ ଡାକରା ଆସିଛି ରାଜଧାନୀରୁ । ଗଲାବେଳେ ହୁଏତ ଅଜାଣତରେ କବାଟଟି ବନ୍ଦ କରିଦେଇ ଚାଲିଯାଇଥିବ । ମୋର ନିଶ୍ଚୟ ସେ ଆଡ଼କୁ ଖିଆଲ ନଥିଲା ।

× × ×

—ଅପା, ଅପା ତତେ ଗୋଟିଏ କଥା ପଚାରିବି ବୋଲି କେତେଦିନ ହେଲା ମନେ ମନେ ଭାବୁଛି; କିନ୍ତୁ ପଚାରି ପାରୁନି । କହୁଁ କହୁଁ ଦଉଡ଼ି ଆସିଲା ରନା । ଏହା କହିଲା-ବେଳେ କେମିତି ଦବିଗଲା ଭଳି ଜଣାପଡୁଥିଲା ସେ ।

କଣ ଭାବୁଛୁ କହୁନୁ ? କଣ କିଛି ଜରୁରୀ ?—ଶାଙ୍ଗରନା ପଚାରିଲେ ।

—ନାହିଁ ଅପା, ଜରୁରୀ ନୁହେଁ, ହେଲେ ତୋର ପରାମର୍ଶ ମୋର ଦରକାର ।

– ପରାମର୍ଶ ? ପୁଣି ମୋ ସହିତ ?—ଶାଙ୍ଗରନାଙ୍କ ମୁଖରେ ବିସ୍ମୟର ଭାବ ।

—ହଁ ଅପା, ପରାମର୍ଶ ତୋ ସହିତ; ପୁଣି ଅତି ଗୋପନୀୟ ।

ଶାଙ୍ଗରନା ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲେ ସାନଭଉଣୀ ଶାଙ୍ଖରନାକୁ । ଭାବି-ପାରିଲେନି ସାନଭଉଣୀ ଶାଙ୍ଖରନା କଣ କହିବାକୁ ଚାହୁଁଛି । ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଗୁପ୍ତ ପରାମର୍ଶ କଣ କରେ ରନା ? ଆଜିକାଲି ମୁଁ କାହିଁକି ଦେଖୁଛି ତୋର ବେଶି ଗୋପନୀୟତା ବଢ଼ିଯାଇଛି । କାହିଁ, ଆଗରୁ ତ ତୁ ଏମିତି ନଥିଲୁ ?

ଚାରିଆଡ଼କୁ ଅନାଇଁ କେହି ନ ଆସୁଥିବା ଲକ୍ଷ୍ୟକରି ଶାଙ୍ଖରନା ଧୀରେ ଧୀରେ କହିଲା—ଅପା, ମୁଁ ଆଉ ଉତ୍କଳାବନ୍ତି ଠିକ୍ କରିଛୁ···ଆଉ କହିପାରିଲାନି ଶାଙ୍ଖରନା ।

—ହଁ ଠିକ୍ କରିଛ, କଣ ଠିକ୍ କରିଛ ? କଣ କେଉଁଠାକୁ ବାହାରକୁ ବୁଲିଯିବନି ନା କଣ ? ସେଥିପାଇଁ ତ କିଛି ବାଧା ନାହିଁ । ତୋତେ ନ କେହି ବାଧା ଦେବେ ନାହିଁ ଉତ୍କଳାବନ୍ତି ସହିତ ବୁଲିବାକୁ ଗଲେ । ଏଥିରେ ଗୋପନୀୟତା ବା କଣ ଅଛି ?

—ନାହିଁ ଅପା, ମୁଁ କଣ ବୁଲିଯିବା କଥା କହୁଛି ?

—ଆଉ ତେବେ ?

—ଆମେ ଦିହେଁ ଠିକ୍ କରିଛୁ ବିବାହ କରିବା ପାଇଁ । ଏହି ବିବାହରେ ଆମେ ଦିହେଁ ପୂରାପୂରି ରାଜି ।

ସାନଭଉଣୀଠାରୁ ଏହି କଥା କେଇ ପଦ ଶୁଣି ଶାଙ୍ଗରନା ଗମ୍ଭୀର ହୋଇଗଲେ । କିଛିସମୟ ପାଇଁ ତାଙ୍କ ପାଟିରୁ କିଛି ଭାଷା ବାହାରିଲା ନାହିଁ । ତାଙ୍କ ମୁହଁ ସାମାନ୍ୟ ବିମର୍ଷ ଦେଖାଗଲା ।

ରନା ଅନାଇ ରହିଥାଏ ଶାଙ୍ଗରନାଙ୍କ ମୁହଁକୁ ତାଙ୍କ ମତାମତ ଜାଣିବାପାଇଁ । ଶାଙ୍ଗରନାଙ୍କ ଏଭଳି ଗାମ୍ଭୀର୍ଯ୍ୟ ଓ ମୁଖର ବିମର୍ଷ ଭାବ ଭୟଭୀତ କରିପକାଇଲା ଶାଙ୍ଖରନାକୁ । ମନେ ମନେ ଭାବିଲା - ସେ ହୁଏତ ଏ ପ୍ରଶ୍ନ ପଚାରି ଭଲ କରିନି । ନିଜକୁ ଏକ ଦୋଷୀ ଭଳି ମନେ କରି କରୁଣ ଚାହାଣିରେ ଅନାଇଁ ରହିଲା ଶାଙ୍ଖରନା ଆଡ଼କୁ ।

କିଛି ସମୟ ପରେ ନୀରବତା ଭଙ୍ଗକରି ଶାଙ୍ଗରନା କହିଲେ—ଦେଖ ରନା ! ତୁ ଯେଉଁ ପ୍ରଶ୍ନଟା ମୋତେ ପଚାରିଲୁ, ସେହି ପ୍ରଶ୍ନର ଉତ୍ତର ଦେବା ସେତେ ସହଜ ନୁହେଁ । ଏ ବିଷୟରେ ମୁଁ ଯେ ତୋତେ କ ପରାମର୍ଶ ଦେବି, ତା ବି ଠିକ୍ କରି ପାରୁନାହିଁ । ସମସ୍ତେ ସ୍ୱୀକାର କରିବେ ଯେ ଉତ୍କଳାବନ୍ତି ଅତି ସୁନ୍ଦର ପ୍ରକୃତିର ଲୋକ । ତାଙ୍କ ସ୍ୱଭାବ-ଚରିତ୍ର ସମ୍ପର୍କରେ ଆମ୍ଭମାନଙ୍କର ଖୁବ୍ ଉଚ୍ଚ ଧାରଣା । ତୁମେ ଦୁଇଜଣ ଯେ ପରସ୍ପର ସହିତ ଖୁବ୍ ପରିଚିତ, ପରସ୍ପରକୁ ବେଶ୍ ବୁଝିପାରିଛ ଓ ଭଲପାଅ ଏଥିରେ ଆମ୍ଭର କାହାରି ସନ୍ଦେହ ନାହିଁ । କିନ୍ତୁ ତୁ ତ ଜାଣିଛୁ ରନା ! ଉତ୍କଳାବନ୍ତି ପୃଥିବୀର ଲୋକ । ତେଣୁ ଆମ ଦେଶ ଆଇନ୍ ଅନୁସାରେ ଚନ୍ଦ୍ରଲୋକର ମଣିଷ ପୃଥିବୀର ମଣିଷ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ

କରିବା ଆଇନସମ୍ମତ ନୁହେଁ । ଖାଲି ଆଇନ ଦୃଷ୍ଟିରୁ ନୁହେଁ, ଅନ୍ୟାନ୍ୟ ଦୃଷ୍ଟିରୁ ଏ ପ୍ରସ୍ତାବ ସମ୍ପର୍କରେ ଆଲୋଚନା ଦରକାର । ତୁ ଯଦି ଚନ୍ଦ୍ରଲୋକର କୌଣସି ଯୁବକ ସହିତ ବିବାହ କରିବା ପାଇଁ ଠିକ୍ କରିଥାନ୍ତୁ, ତେବେ ସେଥିରେ କିଛି ବାଧା ନଥିଲା । ହେଉ, ତୋ ପ୍ରସ୍ତାବଟା ତ ଶୁଣିଲି; କେବଳପ୍ରାପ୍ତ ଓ ଅନ୍ୟମାନଙ୍କ ସହିତ ପରାମର୍ଶ କରି ତୋତେ କହିବି । ଦେଖ୍ ଶନା ! ଏ କଥା ଯିମିତି ଉଜ୍ଜ୍ୱଳାବନ୍ତିଙ୍କ କାନରେ ନ ପଡ଼େ । ତେବେ ମନେ ରଖ, ତୋ ଅପା ତୋତେ ଖୁସି କରିବା ପାଇଁ ସମସ୍ତ ଚେଷ୍ଟା କରିବାକୁ ପ୍ରସ୍ତୁତ ।

ଶାଙ୍ଗରିନା ସାନଭଉଣୀ ଶନାକୁ ଏମିତି ବୁଝେଇ ଚାଲିଛନ୍ତି । ହଠାତ୍ ରୁମ୍‌ର ଟେଲିକମ୍ ବାଜିଉଠିଲା । ଶାଙ୍ଗରିନା ଟେଲିକମ୍ ଧରିଲେ । ଟେଲିକମ୍‌ର ରୁପେଲି ପର୍ଦା ଉପରେ ଚନ୍ଦ୍ରଲୋକର ପ୍ରଧାନମନ୍ତ୍ରୀଙ୍କ ପ୍ରତିଛବି ଫୁଟିଉଠିଲା । ସେ ହସି ହସି ଶାଙ୍ଗରିନାଙ୍କୁ କହିଲେ —ଦେଖ ଶାଙ୍ଗରିନା, ତୁମେ ଆଉ କେବଳପ୍ରାପ୍ତ ଏଠାକୁ ଏହି ମୁହୂର୍ତ୍ତରେ ଆସିପାରିବ କି ? ଗୋଟାଏ ବଡ଼ ସମସ୍ୟା ଉପୁଜିଛି ଏଠାରେ; ଯାହାପାଇଁ ତୁମ ଦୁହିଁଙ୍କର ଉପସ୍ଥିତି ଓ ପରାମର୍ଶ ଏଠାରେ ନିହାତି ଜରୁରୀ । ମୋର ଅନୁରୋଧ, ତୁମେ ଦୁହେଁ ବିଳମ୍ବ ନକରି ରାଜଧାନୀକୁ ସଙ୍ଗେ ସଙ୍ଗେ ଚାଲିଆସିବ ।

ପ୍ରଧାନମନ୍ତ୍ରୀଙ୍କ ଅନୁରୋଧ ଶୁଣି ଶାଙ୍ଗରିନା କେବଳପ୍ରାପ୍ତଙ୍କୁ ଏହି ସମ୍ବାଦ ଜଣାଇଦେଲେ ଓ କିଛି ସମୟ ପରେ ଦୁହେଁ ରାଜଧାନୀ ଅଭିମୁଖେ ବାହାରିପଡ଼ିଲେ ।

X X X

ରାଜଧାନୀରେ ପ୍ରଧାନମନ୍ତ୍ରୀଙ୍କ କକ୍ଷରେ ଏକ ଗୁରୁତର ବିଷୟର ଆଲୋଚନା ଚାଲିଥାଏ । ଦେଶର କୃଷି-ବିଶେଷଜ୍ଞମାନଙ୍କଠାରୁ ଆରମ୍ଭ କରି କୃଷି-ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ଆଲୋଚନାରେ ଭାଗ ନେଇଥାନ୍ତି । ପୃଥିବୀ ବିଶେଷଜ୍ଞ ଭାବରେ ଶାଙ୍ଗରିନା ଓ କେବଳପ୍ରାପ୍ତ ଯୋଗଦେଇଥାନ୍ତି । ପୃଥିବୀରୁ ସଂଗୃହୀତ ହୋଇ ଆସିଥିବା ଜଳ ଭିତରେ କେତେଗୁଡ଼ାଏ ଗ୍ରେଟ ଗ୍ରେଟ ଜିନିଷ ଚାଲିଆସିଛି, ଯେଉଁ ଜିନିଷଗୁଡ଼ିକୁ ଚିହ୍ନିବାପାଇଁ ସାରା ଚନ୍ଦ୍ରଲୋକର ବିଶେଷଜ୍ଞମାନେ ଲାଗିପଡ଼ିଥାନ୍ତି ।

କୃଷି-ବିଶେଷଜ୍ଞମାନେ ମତ ଦେଇଛନ୍ତି ଯେ ଏହି ଯେଉଁ ଜିନିଷଗୁଡ଼ିକ ଜଳ ସହିତ ଚନ୍ଦ୍ରଲୋକକୁ ଚାଲିଆସିଛି, ସେଗୁଡ଼ିକ ପୃଥିବୀର କେତେକ ଉଦ୍ଭିଦର ମଞ୍ଜି ଛଡ଼ା ଆଉ କିଛି ନୁହେଁ । ଏଗୁଡ଼ିକ ଯେ ମଞ୍ଜି, ଏଥିରେ ସମସ୍ତେ ଏକମତ । କିନ୍ତୁ କଥା ପଡ଼ିଛି, ଏଗୁଡ଼ିକ କେଉଁ ଉଦ୍ଭିଦର ମଞ୍ଜି ? ମଞ୍ଜିଗୁଡ଼ିକୁ ଚିହ୍ନିବା ପାଇଁ ଶାଙ୍ଗରିନା ଓ କେବଳପ୍ରାପ୍ତଙ୍କୁ ଡକାଯାଇଥାଏ ।

ଯେତେବେଳେ ପ୍ରଧାନମନ୍ତ୍ରୀ ଯନ୍ତ୍ରରେ ରଖାହୋଇଥିବା କେତେଗୋଟି ମଞ୍ଜି ଆଣି ଶାଙ୍ଗରିନା ଓ କେବଳପ୍ରାପ୍ତଙ୍କ ଆଗରେ ଥୋଇଦେଲେ, ସେମାନେ ସେଗୁଡ଼ିକୁ ଚିହ୍ନିବାର ଅକ୍ଷମତା ଜଣାଇଲେ । ସେମାନେ ଚିହ୍ନିବେ ବା କେମିତି ? ପୃଥିବୀରେ କିଛିଦିନ ରହିଥିଲେ ମଧ୍ୟ ପୃଥିବୀର ଲୋକଙ୍କ ସହିତ ତ ସେମାନେ ମିଶିବାକୁ ପସନ୍ଦ କରି ନଥିଲେ ଓ ସେମାନେ

ନିଜ କାମ ନେଇ ସର୍ବଦା ବ୍ୟସ୍ତ ଥିଲେ । ପୃଥିବୀ ସଂପର୍କରେ ସେମାନଙ୍କ ସ୍ୱଳ୍ପ ଅଭିଜ୍ଞତା ଭିତରେ ସେମାନଙ୍କଠାରୁ ଏତେ ଆଶା କରିବା ଉଚିତ ନୁହେଁ ।

ସେମାନେ ଯେତେବେଳେ ମଞ୍ଜିଗୁଡ଼ିକୁ ଚିହ୍ନି ପାରିଲେ ନାହିଁ, ସମସ୍ତଙ୍କ ମୁଣ୍ଡରେ ଚିନ୍ତା ପଶିଲା—ଏଗୁଡ଼ିକୁ ଚିହ୍ନିବ କିଏ ?

ହଠାତ୍ ଶାଙ୍ଗରିନା କହିଲେ—ଯଦି ଏହି ମଞ୍ଜିଗୁଡ଼ିକ ପୃଥିବୀରୁ ଆସିଥିବ ତେବେ ଏହାକୁ ଚିହ୍ନିବାପାଇଁ ଅନ୍ୟ ଲୋକ ଅଛନ୍ତି । ଆମର ଅତିଥି ଭାବରେ ଏଠାରେ ଯେଉଁ ଉଲ୍କାଳାବର୍ତ୍ତି ଅବସ୍ଥାନ କରୁଛନ୍ତି, ସେ ପୃଥିବୀର ଲୋକ ହୋଇଥିବାରୁ ତାଙ୍କ ସାହାଯ୍ୟରେ ଏମଞ୍ଜିଗୁଡ଼ିକୁ ଚିହ୍ନି ହେବ ।

"ହଁ ହଁ, ଠିକ୍ କଥା ମନେପକାଇଛ ଶାଙ୍ଗରିନା !"—ସମସ୍ତେ ଏକସ୍ୱରରେ ସମର୍ଥନ କରି କହିଉଠିଲେ, "ତେବେ ତାଙ୍କୁ ଏଠାକୁ ଡ଼କାଯାଉ ।"

କିନ୍ତୁ ସେ ଘରେ ନାହାନ୍ତି ବର୍ତ୍ତମାନ, ନୋହିଲେ ମୁଁ ତାଙ୍କୁ ଏଠାକୁ ଡକାଇ ଦେଇପାରନ୍ତି । ସେ ବର୍ତ୍ତମାନ ମୋ ସାନଭଉଣୀ ସହିତ ବୁଲିବାକୁ ବାହାରକୁ ଯାଇଛନ୍ତି । ଆପଣମାନେ ଯଦି କିଛି ମନେ ନ କରନ୍ତି, ପରେ ତାଙ୍କୁ ଏଠାକୁ ଡକାଇ ଦେଇପାରେ—ଶାଙ୍ଗରିନା କହିଲେ ।

× × ×

ଦେଖ ଉଲ୍କାଳାବର୍ତ୍ତି ! ଆମକୁ ଟିକିଏ ସାହାଯ୍ୟ କରିବାକୁ ପଡ଼ିବ ତୁମକୁ ।—ପ୍ରଧାନମନ୍ତ୍ରୀଙ୍କ କକ୍ଷରେ ଉଲ୍କାଳାବର୍ତ୍ତିଙ୍କୁ ଅନୁରୋଧ ଜଣାଇ କହିଲେ ପ୍ରଧାନମନ୍ତ୍ରୀ—ଦେଖ, ଏହି ମଞ୍ଜିଗୁଡ଼ିକୁ ଦେଖି ମୁଁ ବଡ଼ କୌତୁହଳୀ ହୋଇପଡ଼ିଲି ।

ହସି ହସି ମୁଁ କହିଲି—ଏଗୁଡ଼ିକ ମୋର ଅତି ପରିଚିତ ଫଳର ମଞ୍ଜି । ଦେଖନ୍ତୁ, ଏହି ଲମ୍ବାଳିଆ ମଞ୍ଜିଟି ହେଉଛି କାକୁଡ଼ି ମଞ୍ଜି । ଏହି ଯେଉଁ ମୋଟା ମୋଟା ଚେପ୍ଟା ମଞ୍ଜି ଦେଖୁଛନ୍ତି, ସେଗୁଡ଼ିକ ବୋଇତକଖାରୁ ମଞ୍ଜି । ଏ ହେଉଛି ମୁଳା ମଞ୍ଜି । ଯାହାକୁ କହନ୍ତି ଅଙ୍ଗୁର ମଞ୍ଜି । ଏ ନାସ୍‌ପାତି । ଏ ହେଉଛି ସେଉ ମଞ୍ଜି । ଏଇ ଯେଉଁ ଛୋଟ ଛୋଟ ମଞ୍ଜି, ସେଗୁଡ଼ିକ ହେଉଛି ଧାନ, ଆଉ ଏଗୁଡ଼ିକ ଗହମ । ବାଃ, ତାହେଲେ ବହୁ ପ୍ରକାର ମଞ୍ଜି ଚନ୍ଦ୍ରଲୋକକୁ ଚାଲିଆସିଛି । ଏଥିରୁ କେତେଗୁଡ଼ିଏ ଶସ୍ୟ, କେତେଗୁଡ଼ିଏ ପନିପରିବା ଓ କେତେଗୁଡ଼ିଏ ଫଳର ମଞ୍ଜି । ଏଗୁଡ଼ିକ ଯେଉଁ ଫଳ ଓ ଗଛରମଞ୍ଜି, ସେପରି ଗଛ ତ ଚନ୍ଦ୍ରଲୋକରେ ଦେଖା ଯାଉନାହିଁ । ଏଗୁଡ଼ିକ ଏଠି ଚାଷ କଲେ, କେତେ ନୂଆ ପ୍ରକାର ଶସ୍ୟ, ପନିପରିବା ଓ ଫଳମୂଳ ପାଇପାରିବେ ଆପଣମାନେ ।

– ତାହେଲେ କଣ ତୁମେ କହୁଛ, ଏହି ମଞ୍ଜିରୁ ଗଛହୋଇପାରିବ ? —ପ୍ରଧାନମନ୍ତ୍ରୀ ପଚାରିଲେ ।

—ହଁ, ନହେବ କାହିଁକି ? ମୋର ତ ମନେହେଉଛି ମଞ୍ଜିଗୁଡ଼ିକରୁ ଗଛ ହେବ । ଆମ ପୃଥିବୀରେ ଏମିତିକା ମଞ୍ଜିରୁ ତ ଗଛ ହୁଏ ।

—ତାହେଲେ ଉତ୍କଳାବତି ! ମୁଁ ତୁମକୁ ଅନୁରୋଧ କରୁଛି ଆମ କୃଷି-ବିଶେଷଜ୍ଞମାନଙ୍କ ସହିତ ଆମର ଏକ ବଡ଼ ଫାର୍ମକୁ ଯିବାପାଇଁ । ତୁମ ନିର୍ଦ୍ଦେଶରେ ଏହି ମଞ୍ଜିରୁ ଗଛ ଉତ୍ପାଦନ କରିବାକୁ ଚେଷ୍ଟା ଚାଲିବ । ମୋର ଆଶା, ଏହି ଉଦ୍ଭିଦରୁ ଆମେ ବିଭିନ୍ନ ନୂଆ ପ୍ରକାରର ଫଳ ଓ ପନିପରିବା ସୃଷ୍ଟି କରିପାରିବା ଚନ୍ଦ୍ରପୃଷ୍ଠରେ ।

× × ×

ପ୍ରଧାନମନ୍ତ୍ରୀଙ୍କ ଅନୁରୋଧକ୍ରମେ ମୋତେ ଚନ୍ଦ୍ରଲୋକର ସର୍ବବୃହତ୍ କୃଷିଫାର୍ମ ଡ୍ରୋଶନା ଫାର୍ମରେ ଅବସ୍ଥାନ କରିବାକୁ ପଡ଼ିଲା । ପୃଥିବୀର ମଞ୍ଜି ସମ୍ପର୍କରେ ଯେଉଁ ଗବେଷଣା ଚନ୍ଦ୍ରଲୋକରେ ଚାଲିଛି, ସେଥିରେ ସାହାଯ୍ୟ କରିବା ପାଇଁ ମୋ ଆବଶ୍ୟକତା ଅତି ଜରୁରୀ । ମୋର ନିର୍ଦ୍ଦେଶକ୍ରମେ ସେ ଫାର୍ମରେ ମଞ୍ଜିଗୁଡ଼ିକ ରୋପଣ କରାଗଲା । ମୋତେ ଜଣାଇ ଦିଆଯାଇଥାଏ ଯେ ଫଳ ଆଦାୟ ପର୍ଯ୍ୟନ୍ତ ସେଠି ଅପେକ୍ଷା କରିବାକୁ ପଡ଼ିବ । ପୃଥିବୀରେ ଏହି ସବୁ ଫଳ ଓ ପନିପରିବା ଚାଷ ହେବାର ମୁଁ ଦେଖିଛି; କିନ୍ତୁ ଚନ୍ଦ୍ରଲୋକରେ ସେଗୁଡ଼ିକ ଯେମିତି ଭାବରେ ଚାଷ ହେଲା, ସେଥିରେ ଗଛ ହେବ କି ନାହିଁ ଓ ହେଲେ ଫଳ ଫଳିବ କି ନାହିଁ, ମୋର ଆଶଙ୍କା ଥାଏ ।

କାକୁଡ଼ି, ମୂଳା, ବୋଇତାଳୁ ଆଦିର ମଞ୍ଜି ଗୋଟିଏ ସ୍ଥାନରେ; ଧାନ, ଗହମ ଆଦି ଆଉ ଏକ ସ୍ଥାନରେ ଓ ଅଙ୍ଗୁର, ସେଓ, ନାସପାତି ଆଦି ଫଳମଞ୍ଜି ଆଉ ଏକ ଅଲଗା ସ୍ଥାନରେ ଲଗାଗଲା । ଧାନ, ଗହମ ଆଦି ଶସ୍ୟ ପାଇଁ ଯେଉଁ ଜଳବାୟୁ ଦରକାର, ସେ ଜଳବାୟୁ କୃତ୍ରିମ ଉପାୟରେ ସୃଷ୍ଟି କରିବା ପାଇଁ ନିର୍ଦ୍ଦେଶ ଦେଲି । ପୃଥିବୀପୃଷ୍ଠରେ ଯେମିତି ଚାଷ ହୁଏ, ଠିକ୍ ସେହି ଅନୁସାରେ ଚାଷ କରିବା ଦରକାର । ବଡ଼ ଭୟ ଥାଏ, କାଳେ କିଛି ବ୍ୟତିକ୍ରମ ହେଲେ ଉଦ୍ୟମ ବ୍ୟର୍ଥ ହେବ । ମୋର ଗୋଟିଏ ସନ୍ଦେହ ସବୁବେଳେ ମନରେ ଥାଏ—ପୃଥିବୀର ଫଳ ଓ ଶସ୍ୟ ଚାଷ ପାଇଁ ପୃଥିବୀର ସବୁ ଅବସ୍ଥା ସିନା ସୃଷ୍ଟି କରାହେଲା; କିନ୍ତୁ ପୃଥିବୀଭଳି ଦିନରାତି ତ ସୃଷ୍ଟି କରାଯାଇ ପାରିଲା ନାହିଁ । ଏ ଦିନ ରାତି ବ୍ୟତିକ୍ରମ ଯୋଗୁଁ ଫସଲହାନିର ଯଥେଷ୍ଟ ଆଶଙ୍କା ମୋର ଥାଏ । ପୃଥିବୀରେ ସିନା ଦିନ ବାରଘଣ୍ଟା ଓ ରାତି ବାରଘଣ୍ଟା; କିନ୍ତୁ ଏଠି ତ ପୂରାପୂରି ଭିନ୍ନ ଅବସ୍ଥା । ଏଠି ତ ମାସକରୁ ଦିନ ପନ୍ଦରଦିନ, ରାତି ପନ୍ଦରଦିନ । ସୂର୍ଯ୍ୟ ଥରେ ଉଇଁବାକୁ ଆରମ୍ଭ କଲେ ପନ୍ଦର ଦିନ ଧରି ଆକାଶରେ ନିରବଚ୍ଛିନ୍ନ ଭାବରେ ରହୁଛି ଓ ଅସ୍ତ ଗଲେ ପନ୍ଦର ଦିନ ପର୍ଯ୍ୟନ୍ତ ଆଉ ଦେଖାନାହିଁ । ତେଣୁ ଯେଉଁଠି ଏପରି ଅବସ୍ଥା, ସେଠି ଏସବୁ ପନିପରିବା ଓ ଫଳମୂଳ ଚାଷ କରିବା କିଣ ସମ୍ଭବପର ? ଏସବୁ ଫଳ ଫଳିବ କି କିଣ, ବେଳକୁବେଳ ମୋର ସନ୍ଦେହ ଘନୀଭୂତ ହେଉଥାଏ । ପୃଥିବୀରେ ମୋର ଯାହା ଅଭିଜ୍ଞତା—ଖରାଦିନିଆ ପନିପରିବା ଯେମିତି ଶୀତ-ଦିନରେ ହୁଏନି, ଶୀତଦିନିଆ ପନିପରିବା ଖରାଦିନରେ ବି ହୁଏନି । ପୃଥିବୀରେ ଏହି ଦୁଇ ଋତୁରେ ଦିନରାତି ମଧ୍ୟରେ ମାତ୍ର ଘଣ୍ଟାଏ କି ଦି'ଘଣ୍ଟା ତାରତମ୍ୟରେ ବହୁ ରକମର ପନିପରିବା ଗଛ ଯେତେବେଳେ ଫଳ ଧରୁନି, ଏଠି ଦିନରାତି ଭିତରେ ଏଭଳି ଯେଉଁ ବିରାଟ

ତାରତମ୍ୟ, ସେଥିରେ କଣ ଏଗୁଡ଼ିକ ଫଳ ଧରିବ ?

କୃଷିଫାର୍ମରେ ଲଗାଯାଇଥିବା ଶସ୍ୟ ଓ ପନିପରିବା ମଞ୍ଜିରୁ ଅଙ୍କୁରୋଦ୍‌ଗମ ହେବାପରେ ମୋର ଏହି ଆଶଙ୍କା କଥା ଫାର୍ମ ମେନେଜରଙ୍କୁ କହିଲି । ସେ ମୋର ଆଶଙ୍କାର ସତ୍ୟତା ବୁଝିପାରି ତାହା ଦୂର କରିବାକୁ ଫାର୍ମଭିତରେ କୃତ୍ରିମ ଉପାୟରେ ପୃଥିବୀପୃଷ୍ଠର ଦିନରାତି ସୃଷ୍ଟି କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏହି ସବୁ ଫଳ-ପରିବା, ଶସ୍ୟ ପୃଥିବୀରେ ବୃକ୍ଷ ହେଲାବେଳେ ଯେମିତି ଦିନରାତି ହୁଏ, ଏଠି ଠିକ୍ ସେମିତି ଅବସ୍ଥା ସୃଷ୍ଟି ହେବା ଦେଖି ମୁଁ ଆଶ୍ୱସ୍ତ ହେଲି । ମନେ ମନେ ଭାବିଲି—ଯାହାହେଉ, ଏହି ଉଦ୍ଭିଦଗୁଡ଼ିକ ଏଥର ନିଶ୍ଚୟ ଫଳ ଧରିବ ।

ତୋଶନା ଫାର୍ମରେ ମୁଁ ରହିବା ଭିତରେ ପ୍ରତିଦିନ ଶନା ମୋ ସହିତ ଟେଲିକମ୍‌ରେ କଥାବାର୍ତ୍ତା କରେ । ଟେଲିକମ୍‌ରେ ଦିନେ ଶନାକୁ ନ ଦେଖିଲେ ମୋ ମନ ଭଲଲାଗେ ନାହିଁ; ଫାର୍ମ ଛାଡ଼ି ଶନା ପାଖକୁ ପଳାଇଯିବାକୁ ମନ ହୁଏ । ତା ମନର ଅବସ୍ଥା ମୋଠାରୁ କିଛି ଭିନ୍ନ ନୁହେଁ । ସେ ମଧ୍ୟ ମୋତେ ପ୍ରତିଦିନ ଟେଲିକମ୍‌ରେ ଥରେ ନ ଦେଖିଲେ ଧୈର୍ଯ୍ୟ ଧରି ରହିପାରେ ନାହିଁ । ଦିନେ ମୁଁ ହଠାତ୍ କାର୍ଯ୍ୟ ଉପଲକ୍ଷେ ଫାର୍ମ ଛାଡ଼ି ରାଜଧାନୀକୁ ଯାଇଥିଲି; ଶନାକୁ ଖବର ଦେଇ ପାରି ନଥିଲି ମୋ ଯିବାକଥା ନେଇ । ମୋ ଅନୁପସ୍ଥିତିରେ ଶନା ଯେତେବେଳେ ମୋତେ ଫାର୍ମରେ ଖୋଜୁଛି, ମୋତେ ନପାଇବାରୁ ସଙ୍ଗେ ସଙ୍ଗେ ଚାଲିଆସିଛି ଫାର୍ମକୁ । ମୁଁ ରାଜଧାନୀରୁ ଫେରିଆସି ଦେଖିଲିବେଳକୁ ଶନା ହାଜର । ମୁହଁରେ ତାର କୃତ୍ରିମ ରାଗ, ଅଭିମାନର କିଛି ସୀମା ନାହିଁ—କାରଣ କଣ ନା ଖବର ନଦେଇ ମୁଁ ରାଜଧାନୀକୁ କାହିଁକି ଚାଲିଗଲି ?

ବଡ଼ ଖୁସି ହେଲି ଶନାକୁ ଦେଖି । ଶନା ଯେତେବେଳେ ଫାର୍ମକୁ ଆସିଛି, ସେଠାରେ ପୃଥିବୀର ଫଳ-ପରିବା କେମିତି ବୃକ୍ଷ ହେଉଛି ଦେଖିଯିବାକୁ ତାକୁ ଅନୁରୋଧ କଲି । ସେ ଅତି ଆଗ୍ରହରେ ମୋର ଅନୁରୋଧ ଗ୍ରହଣ କରି ମୋ ସଙ୍ଗେ ବାହାରିଲା । ଗତ କେତେଦିନ ଧରି ମୁଁ ନାନାପ୍ରକାର ଗବେଷଣା କାର୍ଯ୍ୟରେ ଏତେ ବ୍ୟସ୍ତ ରହିଥିଲି ଯେ ସେ ଗଛଗୁଡ଼ିକୁ ମଧ୍ୟ ଦେଖିବାକୁ ଯାଇପାରି ନଥିଲି । ତେଣୁ ଶନାକୁ ଧରି ପୃଥିବୀର ପନିପରିବା ବୃକ୍ଷ ହେଉଥିବା ସ୍ଥାନକୁ ଗଲି । କିନ୍ତୁ ଜାଗାଉପରେ ପହଞ୍ଚି ସେଠି ଯାହାଦେଖିଲି ଆଶ୍ଚର୍ଯ୍ୟ ନହୋଇ ରହି ପାରିଲି ନାହିଁ । ଗଛଗୁଡ଼ିକ ଗଲା କୁଆଡେ । କାକୁଡ଼ି, ମୂଳା, କଖାରୁ, ଧାନ, ଗହମ ଆଦି ଯାହା ଲଗାଇଥିଲି; ସେଗୁଡ଼ିକ ସେ ସ୍ଥାନରେ ନାହିଁ ଓ ତାହା ପରିବର୍ତ୍ତେ ଆଉ ଅଲଗା ଅଲଗା ଗଛଗୁଡ଼ାଏ ଲଗାହୋଇଛି । ଏତେ କଷ୍ଟ କରି ଯେଉଁ ଗଛଗୁଡ଼ିକୁ ମୁଁ ନିଜ ହାତରେ ବଢ଼ାଇଥିଲି, ସେଗୁଡ଼ିକ ସ୍ଥାନରେ ଅନ୍ୟ ଗଛଗୁଡ଼ାଏ ଦେଖିଲେ କାହାର ବା କ୍ଷୋଭ ନ ହେବ ? ଯେଉଁ ବୃକ୍ଷ ସଂକ୍ରାନ୍ତ ଗବେଷଣାର ଫଳାଫଳ ପାଇଁ ଆଜି ସାରା ଚନ୍ଦ୍ରଲୋକର କୃଷିବିଶେଷଜ୍ଞଙ୍କଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତେ ଆଗ୍ରହାନ୍ୱିତ, ସେ ଗଛକୁ ଉପାଡ଼ି ତା ସ୍ଥାନରେ ଅନ୍ୟ ଗଛ ଲଗାଇବା କମ୍ ବଡ଼ ଆସ୍ପର୍ଦ୍ଧାର କଥା ନୁହେଁ । ସଙ୍ଗେ

ସଙ୍ଗେ ମୁଁ ଶନାକୁ ନେଇ ଗଲି ଫାର୍ମ ମେନେଜରଙ୍କ ପାଖକୁ । ମୋ ଅଜାଣତରେ ଏଭଳି କାଣ୍ଡ କିଏ କରିଛି, ତାର କୈଫିୟତ୍ ସଙ୍ଗେ ସଙ୍ଗେ ତଲବ କଲି ମେନେଜରଙ୍କଠାରୁ ।

ମେନେଜର ମୋ କଥା ଶୁଣି ବିସ୍ମିତ ହୋଇଗଲେ । ସଙ୍ଗେ ସଙ୍ଗେ କହିପକାଇଲେ—ନାହିଁ ତ, ମୋ ଜାଣିବା ଭିତରେ ଫାର୍ମର କୌଣସି ଗୋଟିଏ ଗଛ ନିଜ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ ହୋଇନାହିଁ । ମୋର ଏତେ ବର୍ଷର ଅଭିଜ୍ଞତା ଭିତରେ ଏହି ଫାର୍ମରେ ଏମିତି ବିଶୃଙ୍ଖଳା କେବେ ଘଟିବାର ତ ଶୁଣିନାହିଁ । ତୁମେ କଣ ପୂରାପୂରି ନିଶ୍ଚିତ ଯେ ତୁମେ ଗବେଷଣା କରୁଥିବା ସେହି ଗଛଗୁଡ଼ିକ ଯଥାସ୍ଥାନରେ ନାହିଁ ?

—ନା, ଥିଲେ ମୁଁ ଆପଣଙ୍କ ପାଖକୁ ଆସିଥାନ୍ତି କାହିଁକି ? ପୃଥ୍ୱୀର ଗଛ ଜାଗାରେ ଆଉ ସବୁ କଣ ବଡ଼ ବଡ଼ ଗଛଗୁଡ଼ାଏ ଠିଆହୋଇଛି !

—ଏଁ ···ପୃଥ୍ୱୀର ଗଛ ସ୍ଥାନରେ ଆଉ କି ଗଛ ? ମେନେଜରଙ୍କ ମୁହଁରେ ପୂର୍ବାପର ବିସ୍ମୟର ଭାବ – ଚାଲ ଦେଖିବା, କଣ ହୋଇଛି ସେଠି । ମେନେଜର ହାତରେ କାଗଜ-ପତ୍ର ଧରି ଅଫିସରୁ ବାହାରିଲେ । ମୁଁ ଆଉ ଶନା ତାଙ୍କ ସହିତ ଗଲୁ ।

ପୃଥ୍ୱୀର ଗଛ ଲଗାହୋଇଥିବା ସ୍ଥାନରେ ପହଞ୍ଚି ସେଠାରେ ଠିଆହୋଇଥିବା ଗଛଗୁଡ଼ିକୁ ପରୀକ୍ଷା କରିବାକୁ ଲାଗିଲେ ମେନେଜର । ଗଛ ଦେହରେ ଥିବା ସଙ୍କେତ ଓ ଫାର୍ମର ରେକର୍ଡ଼ ଦେହରେ ଥିବା ସଙ୍କେତକୁ ମିଳାଇ କହିଲେ—ନାହିଁ ତ, ଉଜ୍ଜଳାବନ୍ତି ! ପୃଥ୍ୱୀର ଗଛଗୁଡ଼ିକ ତ ଠିକ୍ ଅଛି । କାହିଁ, କୌଣସିଟି ତ ସ୍ଥାନାନ୍ତରିତ ହେବାର ମୁଁ ଦେଖୁନାହିଁ ।

—ଏଁ, ସ୍ଥାନାନ୍ତରିତ ହୋଇନି ? ଆପଣ ଭୁଲ କରୁନାହାନ୍ତି ତ ?

—ନାହିଁ, ମୋର ତ କିଛି ଭୁଲ ହୋଇନାହିଁ । ଏଇ ତୁମେ ନିଜେ ଦେଖୁନ – କହୁଁ କହୁଁ ଖାତାଟି ମୋ ଆଡ଼କୁ ଦେଖାଇ ଖାତା ଭିତର ସଙ୍କେତ ଓ ଗଛର ସଙ୍କେତକୁ ମିଳାଇ କହିଲେ ·ଏହା ତୁମର ଧାନଗଛ ନା, ଉଜ୍ଜଳାବନ୍ତି ?

—ଏହା ଧାନଗଛ ? ଗଛ ଦେଖି ଚମକିପଡ଼ିଲି । ଧାନଗଛ ବୋଲି ମେନେଜର ଯାହାକୁ ଚହ୍ନାଉଛନ୍ତି, ପ୍ରକାଣ୍ଡ ବାଉଁଶବୁଦାଭଳି ଠିଆହୋଇଛି ପଚିଶ ଫୁଟ ଉଚ୍ଚର ଏକ ବୁଦା ! ବଡ଼ ସନ୍ଦେହ ଲାଗିଲା ମୋତେ । ମେନେଜରଙ୍କ ହାତରୁ ଖାତା ନେଇ ପୁଣି ଥରେ ମିଳାଇ ଦେଖିଲି । ମନେ ମନେ ଭାବିଲି—ନା, ସଙ୍କେତ ତ ଠିକ୍ ଅଛି, ଗଛ ତ କିଛି ଅଦଳବଦଳ ହୋଇନାହିଁ । ଧାନଗଛ ଜାଗାରେ ବିରାଟ ବାଉଁଶଗଛ କାହିଁକି ? ଧାନଗଛ, ବାଉଁଶଗଛ ପାଲଟିଗଲା ନା କଣ ? ମୋତେ ଏସବୁ ସ୍ୱପ୍ନଭଳି ବୋଧ ହେଲା—ମୁଁ କିଛି ଠିକ୍ କରିପାରିଲି ନାହିଁ ।

ମୁଁ ନିଜକୁ ନିଜେ ପଚାରିଲି— ଏସବୁ କଣ ହେଲା ? ମୋ ମୁଣ୍ଡ ଖରାପ ହୋଇନାହିଁ ତ ? ପରମୁହୂର୍ତ୍ତରେ ମନେପଡ଼ିଗଲା—ନା, ମୁଁ ତ ସ୍ୱପ୍ନ ଦେଖୁନାହିଁ । ଏସବୁ ତ ବାସ୍ତବ ଏଇ ଶନା, ଏଇ ତ ମେନେଜର । ଅଳ୍ପ ସମୟ ତଳେ ଶନାକୁ ଧରି ଏଠାକୁ ଆସିଥିଲି ତାକୁ

ବୃକ୍ଷ ଦେଖେଇବା ପାଇଁ । କିନ୍ତୁ ହଠାତ୍ ଏ କଣ ? ଧାନଗଛ ବାଉଁଶଗଛ ପାଲଟିଲା କେମିତି ? ପୃଥିବୀରେ ଧାନଗଛ ତ ତିନି-ଚାରିଫୁଟରୁ ଅଧିକ ହୁଏନାହିଁ ? ଯେଉଁ ପଚାଶ-ଷାଠିଏ ଫୁଟର ଗଛ ତ କେବେ ଧାନଗଛ ହୋଇପାରେନା ।

ଏପରି ବିସ୍ମୟରେ ଅଭିଭୂତ ହୋଇ ଗୋଟିଏ ପରେ ଗୋଟିଏ ଗଛକୁ ମେନେଜରଙ୍କ ଖାତା ସହିତ ମିଳାଇବାକୁ ଲାଗିଲି । କାକୁଡ଼ିଗଛ ଦେଖି ମୁଁ ତାଟକା । କାକୁଡ଼ିଗଛ ଭୂଇଁରେ ଲୁଟାଇବା ପରିବର୍ତ୍ତନ ଆଖୁଗଛ ଭଳି ସିଧା ଠିଆହୋଇଛି—ସତୁରି କି ଅଶୀ ଫୁଟରୁ କମ୍ ନୁହେଁ । କଖାରୁଗଛ ବି ସେୟା—ଲଟି ନାହିଁ, ସିଧା ହୋଇ ଠିଆହୋଇଛି—ମୂଳା ଗଛଗୁଡ଼ିକ ସତରି ଅଠର ଫୁଟରୁ ଅଧିକ ଉଚା । ଗଛଗୁଡ଼ିକୁ ଚିହ୍ନିବାକୁ ଚେଷ୍ଟା କଲି । ପତ୍ର ଓ କାଣ୍ଡକୁ ଲକ୍ଷ୍ୟ କଲି—ହଁ, ଏସବୁତ ଠିକ୍ ! ଆକାରରେ ଅତି ବଡ଼ ହେଲେ ମଧ୍ୟ କାକୁଡ଼ିଗଛର ପତ୍ର ଠିକ୍ କାକୁଡ଼ିପତ୍ର ପରି ତ ଦିଶୁଛି; କଖାରୁପତ୍ର ତ ସେୟା; ମୂଳାପତ୍ର ତ ଅଲଗା ଦିଶୁନାହିଁ । ତେବେ ଏଗୁଡ଼ିକ ହଠାତ୍ ଏତେ ବଡ଼ ହୋଇଗଲା କେମିତି ? ପ୍ରତ୍ୟେକ ଗଛକୁ ଠିକଣଣି କରି ଚିହ୍ନିବା ପରେ ଆଶ୍ଚର୍ଯ୍ୟ ହୋଇ ମେନେଜରଙ୍କ ଆଡ଼କୁ ଅନାଇ ରହିଲି ।

ମେନେଜର ମୋତେ ଆଶ୍ଚର୍ଯ୍ୟ ହେବାର ଦେଖି ପଚାରିଲେ ଏସବୁ ପରା ପୃଥିବୀର ଗଛ, ଉତ୍କଳାବର୍ତ୍ତୀ ? ତୁମେ ତ ଏଗୁଡ଼ିକ ସହିତ ପୃଥିବୀରେ ନିଶ୍ଚୟ ପରିଚିତ ହୋଇଥିବ । ତୁମେ ବର୍ତ୍ତମାନ ଆଶ୍ଚର୍ଯ୍ୟ ହୋଇ ଏଗୁଡ଼ିକୁ ଏମିତି ଦେଖୁଛ କଣ ? ଥରକୁ ଥର ଏଗୁଡ଼ିକୁ ପରୀକ୍ଷା କରୁଛ ବା କାହିଁକି ? ଏଗୁଡ଼ିକ ତ ନିଶ୍ଚୟ ତୁମର ଅତି ଜଣାଶୁଣା ଗଛ ହୋଇଥିବ ?

ମେନେଜରଙ୍କ ପ୍ରଶ୍ନର ଉତ୍ତର ଦେବା ସେତେବେଳେ ମୋ ପକ୍ଷରେ ସମ୍ଭବ ନଥିଲା । ମୋ ମନ ଭିତରର ଦ୍ୱନ୍ଦ୍ୱ ଏତେ ପ୍ରବଳ ଆକାର ଧାରଣ କରିଥିଲା ଯେ ମେନେଜରଙ୍କ ପ୍ରଶ୍ନ ମୋ ମୁଣ୍ଡ ଭିତରକୁ ଠିକ୍ ପଶି ପାରୁ ନ ଥିଲା । ମୋତେ ଏଆଡ଼କୁ ସେଆଡ଼କୁ ଏମିତି ବଲବଲ ହୋଇ ଅନାଇବାର ଦେଖି ରନା ଭୟପାଇଗଲା ଭଳି ଜଣାପଡ଼ିଲା । ପୃଥିବୀର ସାଧାରଣ ପରିଚିତ ଗଛକୁ ପୃଥିବୀର ଜଣେ ଲୋକ ଚିହ୍ନିପାରୁନାହିଁ, ଏହା ଦେଖିଲେ କିଏ ବା ଗ୍ରାନଆ ନ ହେବ ? ରନା ବୋଧହୁଏ ମନେ ମନେ ଭାବୁଥିଲା—ହୁଏତ ମୋ ମୁଣ୍ଡ ଠିକ୍ ନାହିଁ; ତା ନ ହୋଇଥିଲେ ମୋ ନିଜ ଗ୍ରହର ଗଛକୁ ମୁଁ ନିଜେ ଚିହ୍ନିନପାରନ୍ତି କେମିତି—ପୁଣି ଯେତେବେଳେ ମୁଁ ସେହି ଦାୟିତ୍ୱ ବହନ କରି ଏଠାରେ ଅବସ୍ଥାନ କରୁଛି !

ମେନେଜରଙ୍କଠାରୁ ବିଦାୟ ନେଇ ରନା ମୋତେ ଧରି ଫେରିଲା ମୋ କୋଠରିଆଡ଼େ । ମୋର ମୃତପ୍ରାୟ ଅବସ୍ଥା ଦେଖି ମେନେଜର ବି ଗ୍ରାନଆ । ସେ ମନେ ମନେ ଭାବୁଥାନ୍ତି—ମଞ୍ଜି ତ ଲଗାହେଲା, ଗଛ ହେଲା, ଏଥିରେ ଏତେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ସେ ତ ଏଥିରେ କିଛି ବ୍ୟତିକ୍ରମ ଦେଖୁନାହାନ୍ତି ?

ତୁମ୍‌କୁ ମୁଁ ଯାଇ ଚୁପ୍ କରି ବସିରହିଲି । ମୋଠାରୁ ଅଳ୍ପ ଦୂରରେ ଆଉ ଗୋଟିଏ ଚେୟାରରେ ବସିଲା ଶନା । ମୁଁ ସିନା ବସିଥିଲି; କିନ୍ତୁ ମୋ ଭାବନାର ସ୍ରୋତ ଅବିଚ୍ଛିନ୍ନ ଗତିରେ ଚାଲିଥିଲା ସେହି ଗଛ କେତୋଟିକୁ କେନ୍ଦ୍ର କରି । ମୋତେ ଏତେ ଚିନ୍ତାମଗ୍ନ ଦେଖି ଶନା ମୋ ସମ୍ପର୍କରେ କେତେ କଣ ଭାବିବାକୁ ଲାଗିଲା । ବଡ ଅଦ୍ଭୁତ ! ଦୁଇଜଣ ଆମେ ଭାବିବାରେ ବ୍ୟସ୍ତ । ବଡ ବିଚିତ୍ର; ଆମ ଦୁଇଜଣଙ୍କର ଭାବନାସ୍ରୋତ ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ—ମୁଁ ଭାବୁଛି ଗଛ ବିଷୟରେ; ଶନା ଭାବୁଛି ମୋ ବିଷୟରେ ।

ଗଛଗୁଡ଼ିକର କଥା ଭାବି ଭାବି ମୁଁ ଅସ୍ଥିର ହୋଇପଡ଼ିଲି । ମୋର ଦେଖିବାର ଭ୍ରମ ହୋଇନାହିଁ ତ ? କଣ ମନେହେଲା, ମୁଁ ହଠାତ୍ ଉଠି ବଗିଚାକୁ ପୁଣି ଥରେ ଦୌଡ଼ିଲି ଗଛଗୁଡ଼ିକୁ ଦେଖିବା ପାଇଁ । ମୋତେ ଦୌଡ଼ିବା ଦେଖି ଶନା ସମ୍ଭାଳି ପାରିଲା ନାହିଁ । ସେ ବି ଆଶ୍ଚର୍ଯ୍ୟ ହୋଇ ମୋ ପଛେ ପଛେ ଦୌଡ଼ିଲା ।

ମୁଁ ସେହି ଗଛଗୁଡ଼ିକ ପାଖକୁ ଯାଇ ପୁଣି ଥରେ ସେଗୁଡ଼ିକୁ ପରୀକ୍ଷା କଲି । ଭାବିଲି— ନାଁ, ମୋର ତ ଆଦୌ ଭ୍ରମ ହୋଇନାହିଁ । ଗତ ଥର ଯାହା ଦେଖିଲି ଏଥର ବି ଠିକ୍ ସେୟା ଦେଖୁଛି । ହଁ, ମୁଁ ଯାହା ଦେଖୁଛି, ସବୁ ତ ସତ ।

ମୋଠାରୁ ଅଳ୍ପ ଦୂରରେ ଠିଆହୋଇଥିଲା ଶନା । କାଳେ ମୋ ଦେଖିବାରେ ଭ୍ରମ ହେଉଛି, ତେଣୁ ତା ଦ୍ଵାରା ପରୀକ୍ଷା କରିନେବା ଉଚିତ ମନେ କଲି । ଶନା ପାଖକୁ ଯାଇ ତାକୁ ଧାନଗଛଟି ଦେଖାଇ ପଚାରିଲି—ତୁମେ ତ ଏ ଧାନଗଛକୁ ଦେଖିପାରୁଛ ଶନା ? କହିଲ, ତୁମକୁ ଏହି ଗଛଟି କେତେ ଉଚ୍ଚ ଦିଶୁଛି ?

କାହିଁକି ? ଆଶ୍ଚର୍ଯ୍ୟ ହୋଇ ଉତ୍ତର ଦେଲା ଶନା—ଏଥିରେ ତ ସନ୍ଦେହ ହେବାର କିଛି ନାହିଁ, ଉତ୍କଳାବର୍ତ୍ତି ! ଏ ତ ପଚିଶ ଷାଠିଏ ଫୁଟରୁ କମ ଉଚ୍ଚ ହେବ ନାହିଁ ।

—ଆଉ···ସେଇ ଗହମଗଛ ?

—ସେମିତି ଉଚ୍ଚ ପଚିଶ ଫୁଟ ପାଖାପାଖି ।

—କଖାରୁଗଛର ଉଚ୍ଚତା କେତେ କହିଲ ? ଏହା ଠିଆହୋଇଛି ନା ଭୂଇଁରେ ଲାଗିଛି ?

—କାହିଁ, ଲଟିକି ତ···ଠିଆହୋଇଛି । ଏ ଗଛଟା କଣ ଲଟିଥାନ୍ତା କି ? ତୁମେ କଣ ଏମିତି ପଚାରୁଛ, ମୁଁ କିଛି ବୁଝି ପାରୁନାହିଁ । ତୁମର ଏ ଅବସ୍ଥା ସୂଚାଇ ଦେଉଛି ତୁମେ ବର୍ତ୍ତମାନ ସୁସ୍ଥ ନୁହଁ । ଏହି ଫାର୍ମରେ ରହି ତୁମ ମୁଣ୍ଡ ବୋଧହୁଏ ଖରାପ ହୋଇଗଲାଣି । ଚାଲ, ଏଠାରୁ ଛୁଟି ନେଇ ବାହାରେ କିଛି ଦିନ ବୁଲିଆସିବା ।

ଶନା ଟେଲିକମ୍‌ରେ ଫାର୍ମ ମେନେଜରଙ୍କୁ ଆମ ବାହାରକୁ ଯିବା କଥା ଶୁଣାଇଦେଲା । ଅଳ୍ପ କିଛିଦିନ ପରେ ଆମେ ଫେରିଆସିବୁ ବୋଲି ଜଣାଇଦେଇ ବାହାରିପଡ଼ିଲୁ ଚନ୍ଦ୍ରଲୋକର ସବୁଠାରୁ ସୁନ୍ଦର ପର୍ବତ ଗୋରିପମି ଅଭିମୁଖେ । ପୃଥିବୀର ଗଛଗୁଡ଼ିକରେ ଫଳ ଧରିଲାବେଳକୁ ମୁଁ ଯେମିତି ଫେରିଆସେ—ସେକଥା ଶନାକୁ ତାଗିଦ୍ କରି ଜଣାଇଦେଲେ ଫାର୍ମ ମେନେଜର ।

× × ×

ଚନ୍ଦ୍ରଲୋକର ଉଚ୍ଚତମ ପର୍ବତ ଗୋରୀପର୍ମି—ଉପରକୁ କ୍ରମେ ସରୁ ହୋଇ ସିଧାସଳଖ ଚନ୍ଦ୍ରପୃଷ୍ଠରୁ ଉଠିଯାଇଛି ଏକ ଖମ୍ବ ପରି । ଦେଖିଲାବେଳକୁ ଭାରି ଖୁସି ଲାଗୁଥାଏ । ଏଭଳି ବିଚିତ୍ର ଭାବରେ ସୃଷ୍ଟି ଯେ, ଦେଖିଲେ ଯାହାକୁ କେହି ପର୍ବତ ବୋଲି କହିବ ନାହିଁ । ପର୍ବତଟି ବେଶ୍ ଉଚ୍ଚ, ଯାହାକ ଉପରେ ପାହାଡ଼ ଥୁଆହୋଇ ଯେମିତି ଉଚ୍ଚତମ ପର୍ବତଟିକୁ ସୃଷ୍ଟି କରାଯାଇଛି । ଅସଂଖ୍ୟ ପ୍ରକାରର ସୁନ୍ଦର ସୁନ୍ଦର ବୃକ୍ଷଲତାରେ ପର୍ବତଟି ଘୋଡ଼ିହୋଇଯାଇଛି ମୂଳରୁ ଚୂଳ ପର୍ଯ୍ୟନ୍ତ ।

ପର୍ବତଟିର ପାଦଦେଶରେ ପହଞ୍ଚି ତାର ଶୀର୍ଷକୁ ଯିବାପାଇଁ ରନାର ଭାରି ଜିଦ୍ । ଦର୍ଶକମାନଙ୍କ ଦଶହଜାର ଫୁଟ୍ ଉଚ୍ଚ ପର୍ବତଶୃଙ୍ଗ ଉପରକୁ ନେବାପାଇଁ ନାନାପ୍ରକାର ଯାନ ପର୍ବତଟିର ପାଦଦେଶରେ ଅପେକ୍ଷା କରି ରହିଛି । ସେଥିରେ ଗୋଟିଏ ଯାନରେ ବସି ଆମେ ଉପରକୁ ଉଠିଲୁ ଓ ଚତୁର୍ଦ୍ଦିଗରେ ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିଭୋର ହୋଇପଡ଼ିଲୁ । ଚନ୍ଦ୍ରପୃଷ୍ଠରେ ଏତେ ସୌନ୍ଦର୍ଯ୍ୟ ଆମ ଅଜ୍ଞାତରେ ଥିଲା ! ଏଠାକୁ ଆସି ନଥିଲେ ଆମେ ସେଗୁଡ଼ିକର ଉପଭୋଗରୁ ତ ବଞ୍ଚିତ ହୋଇଥାନ୍ତୁ ! ଆମେ ଯେତେ ଉପରକୁ ଉଠୁଥାଉ, ଚନ୍ଦ୍ରପୃଷ୍ଠର ଘରଦ୍ୱାର, ବୃକ୍ଷଲତା, ନଦୀନାଳ କ୍ରମେ ଶ୍ରେଷ୍ଠ ହୋଇ ଆମଠାରୁ ଦୂରେଇ-ଯାଉଥାଏ ।

ଅଳ୍ପ ସମୟ ପରେ ଆମେ ଆସି ପର୍ବତଶୃଙ୍ଗ ଉପରେ ପହଞ୍ଚିଲୁ, ଆମ ଭଳି ବହୁ ଯୁବକଯୁବତୀ ଆମ ଆଗରୁ ଆସି ସେଠାରେ ସମବେତ ହୋଇଛନ୍ତି । ମୁଁ ଓ ରନା ଏକ ନିରୋଳା ସ୍ଥାନରେ ବସି ଶୃଙ୍ଗର ସୌନ୍ଦର୍ଯ୍ୟ ଉପଭୋଗ କଲୁ । ଶୃଙ୍ଗର ଗୋଟିଏ ପାଖକୁ ଏକ ଗଛର ଆଢ଼ୁଆଳରେ ଆମେ ଦୁହେଁ ବସିଥିଲୁ । ହଠାତ୍ ରନା କହିଲା—ଆଜି ତୁମର ଏମିତି ଗତିବିଧି ଦେଖି ମୁଁ ଭୟ ପାଇଗଲି ଉଜ୍ଜଳାବର୍ତ୍ତି ! ଭାବିଥିଲି ତୁମ ମୁଣ୍ଡ ଯେମିତି ଠିକ୍ ନାହିଁ । କିନ୍ତୁ ମୁଁ ତ ଦେଖୁଛି ତୁମେ ବର୍ତ୍ତମାନ ବେଶ୍ ସୁସ୍ଥ । ଫାର୍ମରେ ତୁମର ସେତେବେଳେ କଣ ହେଲା ? ତୁମେ ଏମିତି କଥାବାର୍ତ୍ତା କଲ କାହିଁକି ?

—ତୁମେ ଜାଣିପାରିବ ନାହିଁ ରନା ! ଏଠାରେ ଯାହା ଘଟିଯାଇଛି, ସେକଥା ଭାବି ମୁଁ କିଛି ଥଳକୂଳ ପାଉନାହିଁ । ମୋଅନୁଭୂତି ଥିଲା ଗୋଟିଏ ପ୍ରକାର; କିନ୍ତୁ ବର୍ତ୍ତମାନ ଦେଖୁଛି ଏଠାକାର ଅବସ୍ଥା ଆଉ ଏକ ପ୍ରକାର । ମୁଁ କେମିତି ମୋ ଆଖିକୁ ବିଶ୍ୱାସ କରିପାରିବି—ଯେଉଁ ଗଛକୁ ମୁଁ ପୃଥିବୀପୃଷ୍ଠରେ ଦେଖିଛି ତିନି ଫୁଟ କି ଚାରି ଫୁଟ ଉଚ୍ଚ, ଏଠି ସେହି ଗଛ ପଚିଶ ଷାଠିଏ ଫୁଟ ଉଚ୍ଚରେ ଠିଆହୋଇଛି ! ପୃଥିବୀପୃଷ୍ଠରେ ଯେଉଁ ଉଦ୍ଭିଦ ଲତା, ଏଠି ସେହି ଉଦ୍ଭିଦ ଲତା ଯଦି ଦ୍ରୁମ ଆକାର ଧାରଣ କରେ, ତେବେ ତମେ ମୋ ଅବସ୍ଥାରେ ଥିଲେ କଣ ଧାରଣା କରିଥାନ୍ତ କହିଲ ?

—ଏଁ, ପୃଥିବୀପୃଷ୍ଠର ଲତା ଆମ ଏଠି ଦ୍ରୁମ ହୋଇଛି ? ପୃଥିବୀପୃଷ୍ଠରେ ଯେଉଁ ଗଛର ଉଚ୍ଚତା ତିନି ଚାରି ଫୁଟ, ଆମର ଏଠି ତାର ଉଚ୍ଚତା କଣ ପଚିଶ ଷାଠିଏ ଫୁଟ ହୋଇପାରେ ? ମୁଁ ବି ତ ଭାବିପାରୁନାହିଁ ଉଜ୍ଜଳାବର୍ତ୍ତି, ଏହା କେମିତି ସମ୍ଭବପର ?

—ସେଇଟା ତ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ! ଯେଉଁ ଗଛକୁ ମୁଁ ଜନ୍ମରୁ ଦେଖିଆସିଛି ତିନି ଫୁଟ ଉଚ୍ଚ, ତାକୁ ପଚାଶ ଷାଠିଏ ଫୁଟ ଉଚ୍ଚ ଦେଖିଲେ କିଏ ଚିହ୍ନିବ ନିଜ ଦେଶର ଗଛ ବୋଲି ? ଯେଉଁ ଗଛକୁ ତୁମେ ପିଲାଦିନରୁ ଏକ ଲତା ଭଳି ଦେଖିଆସିଛ, ତାକୁ ଯଦି ଏକ ଦ୍ରୁମ ଭଳି ଦେଖ, ତାହା କଣ ତୁମେ ଚିହ୍ନିପାରିବ ?

—ମୁଁ ଭାବୁଛି ଉର୍ଜ୍ଜଳାବର୍ତ୍ତି ! ଏହାର ପଛରେ କିଛି ଗୋଟାଏ ବିରାଟ ରହସ୍ୟ ରହିଛି ଓ ଆମେ ତାହା ଉଦ୍‌ଘାଟନ କରିବା ଉଚିତ ।

ରିନାର ଏ ପ୍ରସ୍ତାବରେ କଣ ଉତ୍ତର ଦେବି ଭାବି ପାରିଲିନାହିଁ । ମୋ ମନ ଭିତରେ ଏହିସବୁ ଗୋଳମାଳିଆ ପ୍ରଶ୍ନ ଏଭଳି ଜମାଟ୍ ବାନ୍ଧୁଥାଏ ଯେ ଚନ୍ଦ୍ରପୃଷ୍ଠର ସୁନ୍ଦରତମ ପର୍ବତଶୃଙ୍ଗର ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ମନ ରହୁନଥାଏ । ସେହି ପ୍ରଶ୍ନଗୁଡ଼ିକ ମନକୁ ଭାରାକ୍ରାନ୍ତ କରିଦେଉଥାଏ । ମୋର ଚିନ୍ତାର କାରଣ ଜାଣିବା ପରଠୁ ରିନା ମଧ୍ୟ ଚିନ୍ତିତ ଜଣାଯାଉଥାଏ ।

ରିନାକୁ ଚାହିଁ ହଠାତ୍ ମୋର ଖିଆଲ ପଶିଲା ଯେ ମୋର ମନ ପରିବର୍ତ୍ତନ ପାଇଁ ସେ କେତେ ଆଗ୍ରହରେ ମୋତେ ଏଠାକୁ ନେଇଆସିଛି । ମୁଁ ଯଦି ଏଠି ସେଇ କଥା ଚିନ୍ତା କରିବସେ, ତେବେ ମୋର ଅବସ୍ଥାରରୁ ସେ ବିସ୍ତୃତ ନିରାଶ ହେବ ସିନା । ତାକୁ ଏଭଳି ହତାଶ କରିବା ଆଦୌ ଉଚିତ ହେବ ନାହିଁ; ତେଣୁ ମୋର ସମସ୍ୟା ଭୁଲିବାକୁ ଚେଷ୍ଟା କରି ମୁହଁରେ ହସ ଫୁଟାଇଲି ।

ରିନାକୁ ଖୁସି କରିବା ପାଇଁ ହସି ହସି ପଚାରିଲି—ତୁମେ ମୋତେ କଣ କରିବା ପାଇଁ ସେତେବେଳେ ପରାମର୍ଶ ଦେଉଥିଲ ରିନା ! ଏ ବିଷୟରେ ଗବେଷଣା କରି ଏହାର ରହସ୍ୟ ଉଦ୍‌ଘାଟନ କରିବା ପାଇଁ ନା ?

ରିନା ଉତ୍ସୁକ ହୋଇ ମୋ ମୁହଁକୁ ଅନାଇ ରହିଥିଲା । ମୋତେ ହସ ହସ ଦେଖି ତା ମୁହଁରେ ମଧ୍ୟ ହସ ଫୁଟିଉଠିଲା । ମୁଁ କହିଲି, କିନ୍ତୁ ଏ ରହସ୍ୟଠାରୁ ସେ ରହସ୍ୟ ଅଧିକ ଆବିଷ୍କାରଯୋଗ୍ୟ ନୁହେଁ ରିନା—କହୁ କହୁ ରିନାର କପୋଳ ଉପରେ ଆଙ୍କିଦେଲି ଏକ ଚୁମ୍ବନ । ରିନା ମୃଦୁ ହସି ମୋ କୋଳରେ ଲୋଟିପଡ଼ିଲା ।

ସେତେବେଳକୁ ଆମଠାରୁ ଅଳ୍ପ ଦୂରରେ ଆଉ ଦଳ ଯୁବକଯୁବତୀ ଆମୋଦ-ପ୍ରମୋଦରେ ବ୍ୟସ୍ତ ଥିଲେ । ରିନାକୁ ମୋ ଛାତିରେ ଜଡ଼ାଇ ଧରିଲି । ରିନା ମୋତେ ବାରଣ କରିବାର ଛଳନା କରି ଆହୁରି ଅଧିକ ଜୋରରେ ମୋ ଦେହକୁ ଭିଡ଼ିଧରିଥାଏ ।

× × ×

"ଦେଖିଲଣି ରିନା ! ମୁଁ ଯାହା ସନ୍ଦେହ କରୁଥିଲି ଠିକ୍ ସେଇଆ, କେମିତି ହୋଇଛି !" ଡ଼ୋରିନା ଫାର୍ମ ଭିତରେ ଲଗାହୋଇଥିବା ପୃଥିବୀର ଶସ୍ୟ ଗଛଗୁଡ଼ିକୁ ଦେଖାଇ ମୁଁ କହିଯାଉଥିଲି—ଦେଖ, ଏ ଯେଉଁ ଧାନଗଛ, ଏଥିରେ କେମିତି ଧାନ ଫଳିଛି ? ଏ ଧାନ-ଗୁଡ଼ିକର ଆକାର ତୁମକୁ କେତେ ବଡ଼ ଦିଶୁଛି କହିଲ ଗୋଟିଏ ଧାନ ଗୋଟିଏ ଗୋଟିଏ

ବଡ଼ ବରକୋଳି ଭଳି ହୋଇନାହିଁ ? ଦେଖିଲ, ଏହି ଗହମଗଛର ଗହମଗୁଡ଼ାକ । ଦାନାଗୁଡ଼ାକ ଟେନିସ୍ ବଲ୍ ଭଳି କିପରି ବଡ଼ ହୋଇଛି ! ଏପଟେ ଏ ବିଚନ୍ଧ କଖାରୁ-ଗୁଡ଼ାକୁ ଦେଖ, ଶୂନ୍ୟରେ ଗୋଟାଏ ଗୋଟାଏ ଗ୍ରେଟ କୋଠରି ଝୁଲିଲା ଭଳି ଦିଶୁଛି । ମୁଁ ବର୍ତ୍ତମାନ ସୁଦ୍ଧା ଭାବିପାରୁନାହିଁ ରିନା ! ଏଗୁଡ଼ିକ ସତ୍ୟ, କି ମୁଁ ଠିଆହୋଇ ସ୍ୱପ୍ନ ଦେଖୁଛି ! ପୃଥିବୀରେ ଯେଉଁ ଧାନ କି ଗହମ ଏଡ଼େ ବଟଟାଏ, ଏଠି ତାକୁ ଏଡ଼େ ବଡ଼ ଦେଖିଲେ କିଏ ଆଶ୍ଚର୍ଯ୍ୟ ନହେବ କହିଲ ? ସ୍ୱାକୁ ଦେଖ, ଇଏ ଆଉ ଏକ ବିଚନ୍ଧ ପରିବା । ପୃଥିବୀରେ ଯେଉଁ କାକୁଡ଼ି ଫୁଟେ ଦୁଇ ଫୁଟରୁ ଅଧିକ ଲମ୍ବ ହୁଏ ନାହିଁ, ଏଠି ସେ କାକୁଡ଼ିକୁ ତିରିଶ ଫୁଟ ଲମ୍ବ ଦେଖିଲେ କିଏ ନିଜ ଆଖିକୁ ବିଶ୍ୱାସକରି ପାରିବ ? ପୃଥିବୀରେ ଯେଉଁ ମୂଳା ଓ୍ୱଖଣ୍ଡେ ଦେଢଖଣ୍ଡରୁ ଅଧିକ ଲମ୍ବ ହୁଏନାହିଁ, ତାକୁ ଏଠି କୋଡ଼ିଏ ବାଇଶି ଫୁଟ ଲମ୍ବ ଦେଖିଲେ ସ୍ୱପ୍ନ ଦେଖୁଚି ବୋଲି କିଏ ନ ଭାବିବ ସତେ ? ଏସବୁ ଗଲା ପନିପରିବା ଓ ଶସ୍ୟ କଥା । ଫଳଗୁଡ଼ିକୁ ଦେଖିଲେ ତୁମେ ଆହୁରି ଆଶ୍ଚର୍ଯ୍ୟ ନ ହୋଇ ରହିପାରିବ ନାହିଁ । ପୃଥିବୀରେ ଅଙ୍ଗୁର ହେଉଛି ଗୋଟିଏ ଗ୍ରେଟ କୋଳି । କିନ୍ତୁ ଏଠି ସେହି ଅଙ୍ଗୁର ଫଳିଛି ଗୋଟିଏ ଆତ ଆକାରରେ । ପୃଥିବୀରେ ସେଉ ଫଳିବା ମୁଁ ଦେଖିଛି; କିନ୍ତୁ ସେ ସେଉ କେବେ କଖାରୁ ଭଳି ଏମିତି ବଡ଼ ନୁହେଁ । ଚନ୍ଦ୍ର ପୃଷ୍ଠରେ ସେଉ ଯେ ଏଡ଼େ ବଗ୍ରଟ ହୋଇ ଫଳିପାରେ; ତାହା ମୋ ଧାରଣାରେ ନଥିଲା । କହିଲ ରିନା, ଏମିତି ଫଳ ଦେଖିଲେ ମୁଁ କେମିତି ବିଶ୍ୱାସ କରିବି ମୋ ଆଖିକୁ ? ପୃଥିବୀର ଯିଏ ଏଗୁଡ଼ିକୁ ଦେଖିବ, କୌଣସି ଫଳ ବା ପନିପରିବାକୁ ସେ କଦାପି ଚିହ୍ନି ପାରିବ ନାହିଁ । ଏସବୁ କଣ ହେଲା ମୁଁ ଭାବି କିଛି ଠିକ୍ କରିପାରୁନାହିଁ ରିନା ! ପୃଥିବୀର ଶସ୍ୟ, ଫଳ ଓ ପନିପରିବାର ହଠାତ୍ ଏପରିଭାବରେ ଆକାର ବୃଦ୍ଧି କାହିଁକି ?

ରିନା ଚିନ୍ତା କରି କହିଲା—ତାହାହେଲେ ଚନ୍ଦ୍ରଲୋକର ବୈଜ୍ଞାନିକ-ସମାଜକୁ ଏହାର କାରଣ ଅନୁସନ୍ଧାନ କରିବା ପାଇଁ ଅନୁରୋଧ କରାଯିବା ଉଚିତ । ମୋତେ ଜଣାପଡ଼ୁଛି ପୃଥିବୀ ଓ ଚନ୍ଦ୍ରର ମାଧ୍ୟାକର୍ଷଣବଳର ପାର୍ଥକ୍ୟ ଯୋଗୁଁ ଏଭଳି ପରିବର୍ତ୍ତନ ଘଟିଥାଇପାରେ ।

× × ×

ପୃଥିବୀର ଶସ୍ୟ, ଫଳ, ପନିପରିବା ଚନ୍ଦ୍ରଲୋକରେ ଚାଷ କରାହେବାରୁ ଏଠାରେ ସେଗୁଡ଼ିକର ଆକାର କେମିତି ଆଶାତୀତ ଭାବରେ ବୃଦ୍ଧି ପାଉଛି, ସେ ଖବର ସାରା ଚନ୍ଦ୍ର-ଲୋକରେ ଚାଞ୍ଚଲ୍ୟ ଖେଳାଇଦେଲା । ସମସ୍ତେ ଜାଣିବାକୁ ଚାହିଁଲେ ଏହାର କାରଣ । ବହୁ ଗବେଷଣା ପରେ ସ୍ପଷ୍ଟଭାବରେ ପ୍ରତିପାଦିତ ହେଲା ଯେ ମାଧ୍ୟାକର୍ଷଣବଳର ପାର୍ଥକ୍ୟ ହିଁ ଏହି ପରିବର୍ତ୍ତନ ପାଇଁ ଦାୟୀ । ପୃଥିବୀର ବୀଜ ପୃଥିବୀର ମାଧ୍ୟାକର୍ଷଣବଳ ଭିତରେ ସୃଷ୍ଟି ହୋଇଥିବାରୁ ସେହି ମାଧ୍ୟାକର୍ଷଣ ବଳ ଭିତରେ ଏହାର ଗଛ ନିର୍ଦ୍ଦିଷ୍ଟ ଆକାରର ହେବ । ମାଧ୍ୟାକର୍ଷଣବଳକୁ କମାଇଦେଲେ ଏହା ନିଶ୍ଚୟ ଅଧିକ ଜୋର୍‌ରେ ବଢ଼ିବାକୁ ଲାଗିବ; ଫଳରେ ଗଛ ଓ ଫଳର ଆକାର ଆଶାତୀତ ଭାବରେ ବୃଦ୍ଧି ପାଇବ । ଅଳ୍ପ କେଇଦିନ ଭିତରେ ଚନ୍ଦ୍ରଲୋକର ବୈଜ୍ଞାନିକମାନେ ନାନାପ୍ରକାର ପରୀକ୍ଷା ସାହାଯ୍ୟରେ ଏହି ତଥ୍ୟକୁ

ଏମିତି ଭାବରେ ପ୍ରମାଣିତ କରିଦେଲେ ଯେ ଏଥିରେ ସନ୍ଦେହ କରିବାର କିଛି ରହିଲ ନାହିଁ । ଖାଲି ସେତିକି ନୁହେଁ, ସେମାନେ ମଧ୍ୟ ଆହୁରି ପ୍ରମାଣିତ କଲେ ଯେ ଚନ୍ଦ୍ରମଣ୍ଡଳର ବୀଜକୁ ନେଇ ଯଦି ପୃଥିବୀରେ ବୃଷ କରିଯାଏ, ତେବେ ଏହାର ଠିକ୍ ଓଲଟା ହେବ; ଅର୍ଥାତ୍ ଚନ୍ଦ୍ରର ବୀଜରୁ ଯେଉଁ ଗଛ ପୃଥିବୀରେ ଉତ୍ପାଦିତ ହେବ, ସେହି ଗଛ ଓ ଫଳର ଆକାର ଢେର୍ କ୍ଷୁଦ୍ର ହେବ । ଯେଉଁ ଶସ୍ୟ ଚନ୍ଦ୍ରପୃଷ୍ଠରେ ଦେଖିବାକୁ ପୃଥିବୀର ସାଧାରଣ ଧାନଟିଏ ଭଳି, ସେହି ଶସ୍ୟର ଆକାର ପୃଥିବୀରେ ହେବ ଗୋଟାଏ ସୋରିଷ କିମ୍ବା ପୋସ୍ତକଦାନା-ଠାରୁ ଆହୁରି ଛୋଟ । ମନେ ମନେ ଭାବିଲି, ଧନ୍ୟ ଏ ପ୍ରକୃତିର ନିୟମ ! ଅବସ୍ଥା-ଚକ୍ରରେ କିଏ କେଉଁ ରୂପ ଧାରଣ ନ କରୁଛି ସତେ !

## ତେର

କିନ୍ତୁ ଡ଼ାକ୍ତର, ଆପଣ କଣ ଚାହାନ୍ତି ଦେଲେ କହୁଛନ୍ତି ରନା ଆଉ ଉତ୍କଳାବର୍ତ୍ତିଙ୍କ ଭିତରେ ବିବାହ ସମ୍ପୂର୍ଣ୍ଣ ଅସମ୍ଭବ ?—ଏହି ପ୍ରଶ୍ନ ପଚାରିଲାବେଳେ ଶାଙ୍ଗରନା ଅତ୍ୟନ୍ତ ଚିନ୍ତିତ ହେଲି ଭଳି ଜଣାପଡ଼ୁଥାନ୍ତି—ସେ ଦୁହେଁ ପରସ୍ପରକୁ ଏତେ ନିବିଡ଼ଭାବେ ଭଲପାଆନ୍ତି ଯେ ଦୁହେଁ ଦୁହିଁଙ୍କୁ ନ ପାଇଲେ ସେମାନଙ୍କ ଜୀବନ ବ୍ୟର୍ଥ ହୋଇଯିବ ଡ଼ାକ୍ତର ! ଶାଙ୍ଗରନାଙ୍କ କଣ୍ଠରେ ଉଦ୍‌ବେଗର ସ୍ପଷ୍ଟ ଚିହ୍ନ ।

—ମୁଁ କଣ କରିବ ଶାଙ୍ଗରନା ? ତୁମର ବି ତ ବିଜ୍ଞାନରେ ଢେର୍ ଦକ୍ଷତା ଅଛି । ତୁମେ ଏହାକୁ ନିଜେ ପଢ଼ି ଦେଖ । ଏହା ହେଉଛି ଚନ୍ଦ୍ରଲୋକର ସର୍ବପ୍ରଧାନ ବିଶେଷଜ୍ଞଙ୍କ ମତ । ଏହି ମତ ବିରୁଦ୍ଧରେ କିଛି କହିବା ମୋ ଶକ୍ତିର ବାହାରେ । ଏଇଠି କଣ ଲେଖାହୋଇଛି ନିଜେ ପଢ଼ି ଦେଖ—ପୃଥିବୀର ଯୁବକ ଯୁବତୀ ବା ଚନ୍ଦ୍ରର ଯୁବକ ଯୁବତୀ ମଧ୍ୟରେ ଯଦି ବିବାହ ସମ୍ପର୍କ ସ୍ଥାପିତ ହୁଏ, ତେବେ ସେମାନଙ୍କ ସନ୍ତାନସନ୍ତତି ବଞ୍ଚିବେ ନାହିଁ; କାରଣ ପୃଥିବୀର ପୁରୁଷର ଶୁକ୍ରାଣୁ ବା ସ୍ତ୍ରୀର ଡ଼ିମ୍ବାଣୁ ପୃଥିବୀର ମାଧ୍ୟାକର୍ଷଣବଳ ସହିତ ଅଭ୍ୟସ୍ତ ଥାଏ ଓ ଅପରପକ୍ଷରେ ଚନ୍ଦ୍ରଲୋକର ସ୍ତ୍ରୀ ଡ଼ିମ୍ବାଣୁ ଓ ପୁରୁଷ ଶୁକ୍ରାଣୁ ଚନ୍ଦ୍ରଲୋକର ମାଧ୍ୟାକର୍ଷଣବଳ ସହିତ ଅଭ୍ୟସ୍ତ । ଅଲଗା ଅଲଗା କ୍ଷେତ୍ର ଓ ବଳ ସହିତ ଅଭ୍ୟସ୍ତ ଥିବା ଶୁକ୍ରାଣୁ ଓ ଡ଼ିମ୍ବାଣୁ ଭିତରେ ନିଷେକ ଆମର ଜନନବିଜ୍ଞାନ ମତ ଅନୁଯାୟୀ ପୁରାପୂରି ଅସମ୍ଭବ । ତେଣୁ ଏ ଦୁଇଟିର ମିଳନରୁ ସନ୍ତାନସନ୍ତତି ସୃଷ୍ଟି ହେବା ମୋଟେ ସମ୍ଭବ ନୁହେଁ ।

ବିଶେଷଜ୍ଞଙ୍କ ମତାମତ ପଢ଼ି ଶୁଣାଇଦେବା ପରେ ଡ଼ାକ୍ତର କହିଲେ—ଦେଖ ଶାଙ୍ଗରନା ! ତୁମେ ଯଦି ସେମାନଙ୍କ ସନ୍ତାନସନ୍ତତି ପାଇଁ ଚିନ୍ତିତ ନୁହଁ, ତେବେ ତୁମେ

ସେମାନଙ୍କୁ ବିବାହ ଦେଇପାରି ।

—ସେମାନଙ୍କ ସନ୍ତାନସନ୍ତତିଙ୍କୁ ବଞ୍ଚାଇବାର କଣ କୌଣସି ଉପାୟ ନାହିଁ ଡାକ୍ତର ?

—ନା, ଅନ୍ତତଃ ମୋ ଜ୍ଞାନ ଭିତରେ ନାହିଁ । ତୁମେ ଯଦି ଜନନ-ବିଶେଷଜ୍ଞ ମନବର୍ମିର୍‌ଙ୍କ ସହିତ ପରାମର୍ଶ କର, ସେ ହୁଏତ ତୁମକୁ କିଛି ଉପାୟ ବତାଇ ଦେଇପାରନ୍ତି । ମାତ୍ର ଏମିତି ଯେ କିଛି ଉପାୟ ଥାଇପାରେ, ସେଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।

× × ×

ଏହାର କିଛି ଦିନ ପରେ ଦିନେ ଶାଙ୍ଗରିନା ସାନଭଉଣୀ ରିନାକୁ ଡାକି ଜଣାଇଲେ ଡାକ୍ତରଙ୍କ ମତାମତ —ଦେଖ ରିନା! ଶାଙ୍ଗରିନା କହିଲେ—ତୋର ଆଉ ଉତ୍କଳାବର୍ତ୍ତିଙ୍କର ବିବାହରେ ଆମ କାହାରି କିଛି ଆପତ୍ତି ନାହିଁ; ଏମିତି କି ରାଷ୍ଟ୍ର ସରକାରଙ୍କର ମଧ୍ୟ । ତୁ ତ ଜାଣିଛୁ ସରକାର କେମିତି ଆଇନଗତ ଆପତ୍ତି ଉଠାଇ ନେଇଛନ୍ତି । ତୁମ ଦୁଇ ଜଣଙ୍କ ବିବାହରେ ବର୍ତ୍ତମାନ ଆପତ୍ତି ଉଠୁଛି ବୈଜ୍ଞାନିକ ମହଲରୁ । ସେମାନଙ୍କ ମତ, ତୁମ ଦୁଇ ଜଣଙ୍କର ବିବାହ ହେଲେ ତୁମମାନଙ୍କର ସନ୍ତାନସନ୍ତତି ହେବ ନାହିଁ । ଯଦି ସେଭଳି ପରିସ୍ଥିତି ବରଣ କରିନେବାକୁ ତୁମେ ଦୁହେଁ ପ୍ରସ୍ତୁତ ଥାଅ, ତେବେ ନିଶ୍ଚିନ୍ତରେ ବିବାହ କରିପାରି; ଆମ କାହାରି ଏଥିରେ ଆପତ୍ତି ନାହିଁ । ମୁଁ ଆଶା କରୁଛି, ତୁମେ ଦୁହେଁ କିଛି ନିଷ୍ପତ୍ତି ଗ୍ରହଣ କରିବା ପୂର୍ବରୁ ଏ ସମ୍ପର୍କରେ ଆହୁରି ଭଲଭାବେ ଚିନ୍ତା କରିବ ।

× × ×

ଯେଉଁ ଦିନ ଶାଙ୍ଗରିନା ଚନ୍ଦ୍ରପୃଷ୍ଠର ଶ୍ରେଷ୍ଠ ଜନନ-ବିଶେଷଜ୍ଞ ମନବର୍ମିର୍‌ଙ୍କ ସହିତ ପରାମର୍ଶ କଲେ ମୋର ଓ ରିନାର ବିବାହ ସମ୍ପର୍କରେ, ସେହି ଦିନଠାରୁ ସେ ସବୁବେଳେ ଚିନ୍ତିତ ଥିଲାଭଳି ଜଣାଗଲେ । ମୁଁ ଆଉ ରିନା ଏ ସମ୍ପର୍କରେ ଭାବି ଭାବି କୌଣସି ଏକ ସିଦ୍ଧାନ୍ତରେ ପହଞ୍ଚି ପାରିଲୁ ନାହିଁ । ରିନା ବେଳେବେଳେ ଜୀବନସାରା ସନ୍ତାନହୀନ ରହିବାକୁ ପ୍ରସ୍ତୁତ ହୋଇ ବିବାହ ସପକ୍ଷରେ ମତ ଦିଏ; କିନ୍ତୁ ପର ମୁହୂର୍ତ୍ତରେ ପୁଣି ଚମକି ଉଠି ମତ ବଦଳାଏ ।

ବିଶେଷଜ୍ଞଙ୍କ ସହିତ ବହୁ ଆଲୋଚନା ପରେ ଶାଙ୍ଗରିନାଙ୍କୁ ଏକ କ୍ଷୀଣ ଆଶାର ବାଣୀ ଶୁଣାଇଲେ ବିଶେଷଜ୍ଞ ମନବର୍ମିର୍ — ରିନା ଓ ଉତ୍କଳାବର୍ତ୍ତିଙ୍କ ଔରସରୁ ଜାତ ସନ୍ତାନ ଜୀବିତ ହୋଇପାରେ, ଯଦି ରିନା ଓ ଉତ୍କଳାବର୍ତ୍ତିଙ୍କ ମଧ୍ୟରେ ପ୍ରାକୃତିକ ଭାବରେ ମିଳନ ନ ହୋଇ କୃତ୍ରିମ ଭାବରେ ସେମାନଙ୍କ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ କରାଯାଏ ଏକ ଯନ୍ତ୍ରଭିତରେ । ଏହି ଯନ୍ତ୍ରରେ ରିନାଙ୍କର ଡିମ୍ବାଣୁ ନିଷିକ୍ତ ହେଲେ ଏହାକୁ ବଢ଼ାଇବାକୁ ପଡ଼ିବ ପୋଷକ ମାଧ୍ୟମ ଭିତରେ; ଫଳରେ ସେହି ନିଷିକ୍ତ ଡିମ୍ବାଣୁ ଏକ ମଣିଷଶିଶୁରେ ପରିଣତ ହେବାର ଆଶା । ତା ନ ହେଲେ ସନ୍ତାନଲାଭର ଆଉ କୌଣସି ଉପାୟ ନାହିଁ । ନାନା ପରୀକ୍ଷାଦ୍ୱାରା ନିର୍ଦ୍ଧାରଣ କରିବାକୁ ପଡ଼ିବ ଏହି କୃତ୍ରିମ ନିଷେକ କେଉଁ ଭାବରେ କରିବା ଦରକାର । ସେମାନଙ୍କ ଶୁକ୍ରାଣୁ ଓ ଡିମ୍ବାଣୁର ଉପଯୁକ୍ତ ନିଷେକ ନ ହେଲେ ପିଲା

ହେବା ସମ୍ଭବ ନୁହେଁ । ମୋର ଭୟ ହେଉଛି, ପ୍ରାକୃତିକ ସହବାସ ଫଳରେ ଯଦି ନିଷିକ୍ତ ଡିମ୍ବାଣୁକୁ ସନ୍ତାନ ହେବା ଆଶାରେ ରଜନୀର ଜରାୟୁରେ ବଢ଼ିବାକୁ ଦିଆଯାଏ, ତେବେ ସେହି ନିଷିକ୍ତ ଡିମ୍ବାଣୁର ବୃଦ୍ଧି ହେତୁ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହୋଇ ରଜନୀର ମୃତ୍ୟୁ ହେବା କିଛି ଅସମ୍ଭବ ନୁହେଁ । ତେଣୁ ସେ ପରିସ୍ଥିତିରେ ମୁଁ ଉପଦେଶ ଦେବି, ସନ୍ତାନସନ୍ତତି ପାଇଁ ରଜନୀ ଜରାୟୁସ୍ଥ ଡିମ୍ବାଣୁକୁ ବାହାର କରି ବାହାରେ ଉତ୍କଳାବର୍ତ୍ତିଙ୍କ ଶୁକ୍ରଣୁଦ୍ୱାରା ନିଷିକ୍ତ କରାଇ ପୋଷକ ମାଧ୍ୟମରେ ବଢ଼ାଇବାକୁ ହିଁ ପଡ଼ିବ । ସେହି ନିଷିକ୍ତ ଡିମ୍ବାଣୁ ପରିଶେଷରେ ଏକ ଜୀବନ୍ତ ସନ୍ତାନରେ ପରିଣତ ହେବାର ସମ୍ଭାବନା ଅଛି ।

ବିଶେଷଜ୍ଞଙ୍କ ଏହି ମତାମତ ଶୁଣି ଶାଙ୍ଗରିନା ଖିନ୍ନ ହୋଇ ପଡ଼ିଲେ । ଗୋଟିଏ ପକ୍ଷରେ ରଜନୀର ମୃତ୍ୟୁ, ଅନ୍ୟ ପକ୍ଷରେ ସନ୍ତାନଲାଭର କ୍ଷୀଣ ଆଶା ତାଙ୍କୁ ଏକ ଭୀଷଣ ଦ୍ୱନ୍ଦ୍ୱ ଭିତରେ ପକାଇଦେଲା । ପ୍ରାକୃତିକ ନିୟମରେ ସନ୍ତାନ ପାଇବା ଆଶାରେ ନିଷିକ୍ତ ଡ଼ିମ୍ବାଣୁକୁ ରଜନୀର ଜରାୟୁରେ ବଢ଼ିବାକୁ ଦେବା କେଡ଼େ ବିପଜ୍ଜନକ, ଭାବୁ ଭାବୁ ସେ ଶିହରି ଉଠିଲେ । ଡିମ୍ବାଣୁକୁ ଜରାୟୁରୁ ବାହାର କରି କୃତ୍ରିମ ଉପାୟରେ ବାହାରେ ବଢ଼ାଇଲେ ହେଁ ସନ୍ତାନ ଯେ ନିଶ୍ଚୟ ହେବ, ଏହା ମଧ୍ୟ କେହି ଜୋର୍ ଦେଇ କହିପାରିବ ନାହିଁ । ତେଣୁ ଏଭଳି କ୍ଷେତ୍ରରେ କଣ କରାଯିବା ଦରକାର ··ଆଉ ଭାବିପାରିଲେ ନାହିଁ ଶାଙ୍ଗରିନା ।

× × ×

ଜନନ-ବିଶେଷଜ୍ଞଙ୍କ ମତାମତ ଘରେ ସମସ୍ତଙ୍କୁ ଜଣାଇସାରିବାପରେ ଶାଙ୍ଗରିନା ରଜନୀକୁ କହିଲେ—ତୁ ଉତ୍କଳାବର୍ତ୍ତିଙ୍କୁ ବିବାହ କଲେ ଭବିଷ୍ୟତରେ କି ବିପଦ ରହିଛି ତାହା ଦେଖିପାରୁଛୁ ନିଶ୍ଚୟ । ତୁମ ଦୁଇ ଜଣଙ୍କ ବିବାହରେ ଆମର କାହାରି ଆପତ୍ତି ନାହିଁ । ତେବେ ତୁମମାନଙ୍କର ସନ୍ତାନସନ୍ତତି ନେଇ ଯେଉଁ ବିପଦର ସମ୍ଭାବନା ଅଛି, ତାହାହିଁ ଆମକୁ ଅସ୍ଥିର କରି ପକାଉଛି । ମୁଁ ଏହା ଭିତରେ ଦେଶର ବହୁ ବିଖ୍ୟାତ ଜନନ-ବିଶେଷଜ୍ଞଙ୍କ ସହିତ ପରାମର୍ଶ କରି ସାରିଲିଣି । ସେମାନେ ସମସ୍ତେ ବିଶେଷଜ୍ଞ ମନବର୍ମିର୍ଙ୍କ ସହିତ ଏକମତ । ତା ଛଡ଼ା ଅନେକେ ଆହୁରି ଏକ ଅଧିକା ବିପଦର ଆଶଙ୍କା କରୁଛନ୍ତି; ଯାହା ସମ୍ପର୍କରେ ବିଶେଷଜ୍ଞ ମନବର୍ମିର୍ କିଛି ଆଭାସ ଦେଇନାହାନ୍ତି । ସେମାନଙ୍କ ମତ—ଯଦି ଏହି ନିଷିକ୍ତ ଡିମ୍ବାଣୁକୁ ବଢ଼ାଇବାରେ କିଛି ବ୍ୟତିକ୍ରମ ଘଟେ, ତେବେ ସେହି କୃତ୍ରିମ ଉପାୟରେ ଜାତ ଓ ପାଳିତ ସନ୍ତାନଟି ସାଧାରଣ ମଣିଷ ହେବା ପରିବର୍ତ୍ତିରେ ରାକ୍ଷସ ପାଲଟିଯିବାର ଆଶଙ୍କା । ସେ ସନ୍ତାନଟି ଆକାରରେ ଏତେ ବଡ଼ ହୋଇଯିବ ଯେ ତାହାକୁ ଲାଳନପାଳନ କରିବା ଅସମ୍ଭବ ହୋଇ ଉଠିବ ।

—ଏଁ, ରାକ୍ଷସ-ପୁତ୍ର !···ଚମକି ପଡ଼ିଲା ରଜନୀ ।

—ଏସବୁ ପରିସ୍ଥିତିରେ ତୁ କଣ ଭାବୁଛୁ ରଜନୀ ! ତୁମ ଦୁଇ ଜଣଙ୍କ ବିବାହ ଏକ ବିଜ୍ଞତାର କାମ ହେବ ? ତୁତେ ଦିଜଣ ବିବାହ ସଂପର୍କରେ ସିଦ୍ଧାନ୍ତ ଗ୍ରହଣ କରିବା ପୂର୍ବରୁ ଏହି ସବୁ ବିଷୟ ପ୍ରତି ବିଶେଷ ଧ୍ୟାନ ଦେବ ବୋଲି ଆଶା କରୁଛି ।

× × ×

ବାପ ମା ଭାଇ ଭଉଣୀ ସମସ୍ତଙ୍କ ବାରଣ ସତ୍ତ୍ୱେ ରିନା ଓ ମୋର ବିଭାଘର ସମ୍ପାଦିତ ହୋଇଗଲା । ଅତି ନିରାଡ଼ମ୍ବରରେ ବିଭାଘର ହେଲା ସତ; କିନ୍ତୁ ସେଥିରେ କାହାର ବିଶେଷ ଆନନ୍ଦ ଉଲ୍ଲାସ ନ ଥିଲା । ଏକ ଅଜଣା ଭୟ ଓ ଆଶଙ୍କାରେ ଆମେ ଦିହେଁ ଶିହରିଉଠୁଥିଲୁ । କିଏ ଜାଣେ, ଆମର ଏହି ବିବାହ ଏକ ଅମଙ୍ଗଳ ପରିସ୍ଥିତି ସୃଷ୍ଟି ନ କରିବ ? ସନ୍ତାନ ପାଇବାପାଇଁ ଆମେ ଯଦି କେବେ ଇଚ୍ଛୁକ ହୋଇଉଠୁ ତେବେ ଏକ ପକ୍ଷରେ ରିନାର ଜୀବନ ବିପଦାପନ୍ନ ହେବ; ଅନ୍ୟପକ୍ଷରେ ରାକ୍ଷସ-ପୁତ୍ର ଜାତ ହେବା ଅସମ୍ଭବ ନୁହେଁ । ତେଣୁ ଏଇ ଦୁଇ ଆଶଙ୍କା ଭିତରେ ଆମେ ଯେ କେମିତି ଆମ ସଂସାର ଚଳେଇନେବୁ ତାହା ଆମର ସବୁବେଳେ ଚିନ୍ତା । ଚନ୍ଦ୍ରଲୋକରେ ଯେଉଁ ରୀତିରେ ବିଭାଘର ହୁଏ, ଠିକ୍ ସେହି ରୀତିରେ ଆମର ବିଭାଘର ହୋଇଥିଲା ସତ; କିନ୍ତୁ ତାର ପରିଣତି କଥା ଭାବି ସମସ୍ତେ ଚିନ୍ତିତ ହୋଇ-ପଡ଼ିଥିଲେ । ପୁରୁଷ ଓ ସ୍ତ୍ରୀ ଉଭୟେ ଉଭୟଙ୍କୁ ପ୍ରକୃତରେ ଭଲପାଆନ୍ତି କି ନାହିଁ, ଯଦି ଭଲପାଆନ୍ତି ତେବେ ସେ ଭଲପାଇବାର ପରିମାଣ ଏକ ନିର୍ଦ୍ଦିଷ୍ଟ ପରିମାଣଠାରୁ ଯଦି ଅଧିକା ହୋଇ ନ ଥାଏ, ତେବେ ରାଷ୍ଟ୍ରର ଆଇନ ଅନୁସାରେ ସେ ବିବାହ ଅନୁମୋଦିତ ହୁଏନା । ତା ଛଡ଼ା ମେଦ, ମାଂସ, ରକ୍ତର ମେଳ ନେଇ ବହୁ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼େ । ଏସବୁ ପରୀକ୍ଷାରୁ ନ ଉତୁରିଲା ପର୍ଯ୍ୟନ୍ତ ସାମାଜିକ ରୀତିରେ ବିବାହ ସମ୍ଭବପର ନୁହେଁ । ଆମ ଦୁଇ ଜଣଙ୍କ ଶାରୀରିକ ମେଳ ଛଡ଼ା ବାକି ଅନ୍ୟଗୁଡ଼ିକର ମେଳ ଖୁବ୍ ଭଲ ଭାବରେ ହୋଇଥିବାରୁ ଆମକୁ ବିବାହ କରିବାକୁ ଅନୁମତି ମିଳିଥିଲା । ବିବାହ ପରେ ପରେ ଆମେ ଦିଜଣ ଚାଲିଯାଇଥିଲୁ ଘରଠାରୁ ବହୁ ଦୂରକୁ ମଧୁଯାମିନୀର ମିଳନ ମୁହୂର୍ତ୍ତରେ ମଧୁରତାର ଆସ୍ୱାଦ ଉପଭୋଗ ପାଇଁ । ସେତେବେଳେ ଆମେ ଭୁଲିଯାଇଥିଲୁ ଆମ ମିଳନ ପଛରେ ଥିବା ବିପଜ୍ଜନକ ପରିଣାମ କଥା, ବୈଜ୍ଞାନିକମାନଙ୍କର ହୃତ୍‌କମ୍ପନକାରୀ ଭବିଷ୍ୟତ୍‌ବାଣୀ—ରିନାର ଅପମୃତ୍ୟୁ; ନୋହିଲେ ରାକ୍ଷସ-ସନ୍ତାନର ମାତୃତ୍ୱ—ବେଳେବେଳେ ଆମକୁ ଭୟ-ବିହ୍ୱଳିତ କରି ପକାଉଥାଏ ।

## ଚଉଦ

ପୃଥିବୀରୁ ନେଇଥିବା ବାୟୁ ଓ ଜଳରେ କିଛି ବର୍ଷ ବିତିଯିବା ପରେ ପୁଣି ପୂର୍ବଭଳି ଜଳ ଓ ବାୟୁ ବ୍ୟବହାରକୁ ନିୟନ୍ତ୍ରଣ କରିବାଲାଗି ଚନ୍ଦ୍ରଲୋକରେ ନାନାପ୍ରକାର କଟକଣା ଜାରି ହେଲା—ଲୋକମାନେ ସେମାନଙ୍କର ଘରଗୁଡ଼ିକୁ ପୂର୍ବପରି ଆବଦ୍ଧ ରଖିବେ; ଅଫିସ ସ୍କୁଲ, କଲେଜ, ଦୋକାନ, ବଜାର ସବୁ କିଛି ଆବଦ୍ଧ କରିବାକୁ ପଡ଼ିବ; ଯେମିତି କି ବାୟୁ

ଓ ଜଳୀୟବାଷ୍ପ ଚନ୍ଦ୍ରପୃଷ୍ଠର ବାୟୁମଣ୍ଡଳକୁ ବିଶେଷ ଭାବରେ ଚାଲି ନଯାଏ । ବାଡ଼ିବଗିଚା, ଉଦ୍ୟାନ, ଉପବନ, ଚାଷଜମି ସବୁ କିଛିକୁ ଆବଦ୍ଧ ନକଲେ ନଚଳେ । ଏହି ସବୁ ବିସ୍ତୀର୍ଣ୍ଣ ଜାଗାଗୁଡ଼ିକୁ ଆବଦ୍ଧ ରଖିବା କିଛି ସହଜ କଥା ନୁହେଁ । ସେଥିପାଇଁ ନାନାପ୍ରକାର ଯୋଜନା ଧୀରେ ଧୀରେ ମୁଣ୍ଡ ଟେକିବାକୁ ଲାଗିଲା । ଚନ୍ଦ୍ରପୃଷ୍ଠରୁ ବାୟୁର ଚାପ ଧୀରେ ଧୀରେ କମି-ଯାଉଥିବାରୁ ଏହି ବ୍ୟବସ୍ଥା ଗ୍ରହଣ କରିବା ଅତି ଜରୁରୀ । ଏତେ ପ୍ରକାର ନିୟନ୍ତ୍ରଣ ଯୋଗୁଁ ଲୋକମାନଙ୍କ ଚଳିବାରେ ଅସୁବିଧା ଯେ ନହେଉଥିଲା ତା ନୁହେଁ; ହେଲେ ସେ ଅସୁବିଧାକୁ ମୁଣ୍ଡପାତି ସହିନେବାକୁ ପଡ଼ିବ । ତା ନହେଲେ ପୁଣି ଦୌଡ଼ିବାକୁ ପଡ଼ିବ ପୃଥିବୀପୃଷ୍ଠକୁ ବା ଅନ୍ୟତ୍ର ଜଳ ଓ ବାୟୁ ପାଇଁ ।

ସବୁଦିନ ପାଇଁ ଏହି ସମସ୍ୟାର ସମାଧାନ କରିବାକୁ ଚନ୍ଦ୍ରପୃଷ୍ଠର ବୈଜ୍ଞାନିକମାନେ ଲାଗିପଡ଼ିଥାଆନ୍ତି ବିଶ୍ୱର ଆଉ କୌଣସି ଗ୍ରହ–ଉପଗ୍ରହର ସନ୍ଧାନରେ । ଚନ୍ଦ୍ରର ଅବସ୍ଥା ଭଳି ଅବସ୍ଥା ଥିବା କୌଣସି ଗ୍ରହ କି ଉପଗ୍ରହ ମିଳିଲେ, ସେମାନେ ସେଠାକୁ ଚାଲିଯିବା ଚେଷ୍ଟାରେ ଥାଆନ୍ତି; କିନ୍ତୁ ସେମିତି ସୁବିଧା ଥିବା ଗ୍ରହ-ଉପଗ୍ରହ ମିଳୁଛି ବା କେଉଁଠି ? ଗତ କେତେ ବର୍ଷଧରି ଚନ୍ଦ୍ରର ସବୁଯାକ ମହାଶୂନ୍ୟଯାତ୍ରୀରୁ ବହୁ ଅଭିଯାନ ହୋଇଯାଇଛି ବିଶ୍ୱର ବିଭିନ୍ନ ପ୍ରାନ୍ତକୁ । ଆମ ସୌରଜଗତଠାରୁ ଆରମ୍ଭ କରି ବିଶ୍ୱର ବହୁ ସୌରଜଗତ ସେମାନେ ଖୋଜିସାରିଲେଣି; କିନ୍ତୁ ଚନ୍ଦ୍ରଲୋକର ଅଧିବାସୀ ଚଳିପାରିଲା ଭଳି ସୁବିଧା ଥିବା ଗ୍ରହ ବା ଉପଗ୍ରହଟିଏ ମିଳିପାରୁନି ।

ମିଳିବା ଏତେ ସହଜ ବା କେମିତି ହେବ ? ଚନ୍ଦ୍ର ସହିତ ଆକାର, ବାୟୁମଣ୍ଡଳ, ଜଳ—ସବୁଥିରେ ସମାନ ଥିବା ଗ୍ରହ କି ଉପଗ୍ରହଟିଏ ମିଳିବାର ଆଶା ଦିନକୁଦିନ ଦୂରେଇ ଯାଉଛି । କୌଣସି ଗୋଟିଏ ଗ୍ରହ କି ଉପଗ୍ରହ ଚନ୍ଦ୍ରର ଆକାରର ହେଲାବେଳକୁ ସେଠାରେ ଜଳ ନାହିଁ; ଜଳ ଯଦି ଅଛି, ବାୟୁ ନାହିଁ । ସବୁଥାଇ ଦେଖିଲାବେଳକୁ ହୁଏତ ବାୟୁମଣ୍ଡଳ ବିଷାକ୍ତ ବାଷ୍ପରେ ପୂରିରହିଛି । କାହାର କାହାର ବାୟୁମଣ୍ଡଳରେ ଅନ୍ୟ କିଛି ଗ୍ୟାସ୍ ନ ଥାଇ ଖାଲି ଅମ୍ଳଜାନ ଗ୍ୟାସ୍ ପୂରିରହିଛି । ଅମ୍ଳଜାନପୂର୍ଣ୍ଣ ଥିବା ବାୟୁମଣ୍ଡଳରେ ନିଃଶ୍ୱାସ ପ୍ରଶ୍ୱାସ ନେବା କଷ୍ଟକର ନହେଲେହିଁ ସାଧାରଣ ଜୀବନକ୍ରିୟାରେ ବ୍ୟତିକ୍ରମ ହେବା ସ୍ୱାଭାବିକ । ପୃଥିବୀରେ କିମ୍ବା ଚନ୍ଦ୍ରଲୋକରେ ଯେଉଁ ଲୋକ ଏକ-ପଞ୍ଚମାଂଶ ଅମ୍ଳଜାନ ଥିବା ବାୟୁମଣ୍ଡଳରେ ଯେତିକି ଦିନ ବଞ୍ଚିପାରିବ, ଖାଲି ଅମ୍ଳଜାନ ଥିବା ବାୟୁମଣ୍ଡଳରେ ତାର ଜୀବନପ୍ରକ୍ରିୟା ଏତେ ଦ୍ରୁତଗତିରେ ଚାଲିବ ଯେ ତାର ଜୀବନକାଳ ଏକ-ପଞ୍ଚମାଂଶକୁ ଖସିଆସିବ । ଚନ୍ଦ୍ରର ବାୟୁମଣ୍ଡଳ ପୃଥିବୀର ବାୟୁମଣ୍ଡଳର ଅନୁରୂପ ଥିବାରୁ ଯେଉଁ ଲୋକ ଚନ୍ଦ୍ରପୃଷ୍ଠରେ ଶହେ ବର୍ଷ ବଞ୍ଚିପାରିବ, ସେହି ଲୋକ କେବଳ ଅମ୍ଳଜାନ ଥିବା ବାୟୁମଣ୍ଡଳରେ କୋଡ଼ିଏ ବର୍ଷରୁ ଅଧିକ ବଞ୍ଚିପାରିବ ନାହିଁ । ଖାଲି ସେତିକି ନୁହେଁ, ସେମିତି ଏକ ବାୟୁମଣ୍ଡଳ ଜୀବନପ୍ରକ୍ରିୟା ଦୃଷ୍ଟିରୁ ଅତୀବ ମାରାତ୍ମକ । ସେହିଭଳି ବାୟୁମଣ୍ଡଳରେ ଖାଦ୍ୟ ତ ରାନ୍ଧିହେବନି; ଥରେ କୌଣସି ଦହନପ୍ରକ୍ରିୟା ଆରମ୍ଭ ହେଲେ

ତାହା ଆଖପାଖ ସବୁ କିଛି ପୋଡ଼ିଜାଳି ଛାରଖାର କରିଦେବ ।

ଏହି ସବୁ କାରଣ ହେତୁ ଚନ୍ଦ୍ରଲୋକର ବୈଜ୍ଞାନିକମାନେ ଆଂଶିକ ବାସୋପଯୋଗୀ ଏହିଭଳି ବହୁ ଗ୍ରହ-ଉପଗ୍ରହ ଯାଇ ମଧ୍ୟ, ସେଗୁଡ଼ିକୁ ତ୍ୟାଗ କରିବାକୁ ବାଧ୍ୟ ହୋଇଛନ୍ତି । ତେବେ ଅଳ୍ପ କେଇଦିନ ତଳେ ଯେଉଁ ତିନୋଟି ଗ୍ରହ ଓ ଉପଗ୍ରହର ସନ୍ଧାନ ମିଳିଛି, ସେଗୁଡ଼ିକୁ ଯାଇ ସେଠାକାର ଅବସ୍ଥା ନିର୍ଣ୍ଣୟ କରିବା ଉପରେ ଅନେକ କିଛି ନିର୍ଭର କରୁଛି । ସେଇ ତିନୋଟିଯାକ ହେଉଛି ମଘା ନକ୍ଷତ୍ରମଣ୍ଡଳର ଗ୍ରହ କେ-ଜେଡ଼୍-ସି-୯; ଅଶ୍ୱିନୀ ନକ୍ଷତ୍ରମଣ୍ଡଳରେ ଦିଶୁଥିବା କେ-ଏମ୍-ବି୧୧ ଗ୍ରହ ଓ ଧ୍ରୁବମଣ୍ଡଳରେ ଥିବା ଜେଡ଼୍-ଏନ୍-ଏଇଚ୍-୧୦୧ ଗ୍ରହ । ଏହି ତିନୋଟିଯାକ ଗ୍ରହର ଆକାର ଚନ୍ଦ୍ରର ଆକାର ସହିତ ପ୍ରାୟ ସମାନ । ସେମାନଙ୍କର ମାଧ୍ୟାକର୍ଷଣବଳ ଚନ୍ଦ୍ରର ଅନୁରୂପ । ସେ ସବୁରେ କିଛିକି ବାୟୁ ଓ ଜଳ ଥିବାର ବହୁ ପ୍ରମାଣ ମିଳିଛି । କୌଣସି ଜୀବଜଗତ ଥିବା ସନ୍ଧାନ ମିଳିନଥିଲେ ମଧ୍ୟ ସେହି ସବୁ ଗ୍ରହ ଉପଗ୍ରହ ନିକଟକୁ ଯାଇ ସେଗୁଡ଼ିକର ପ୍ରକୃତ ଅବସ୍ଥା ସ୍ୱଚକ୍ଷୁରେ ଦେଖି ଆବିଷ୍କାର ନ କଲା ପର୍ଯ୍ୟନ୍ତ କୋଟି କୋଟି ମାଇଲ ଦୂରରେ ଥାଇ ସେ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତ ଗ୍ରହଣ କରିବା ସେତେ ସହଜ ନୁହେଁ । ତେଣୁ ବୈଜ୍ଞାନିକମାନଙ୍କର ବର୍ତ୍ତମାନ ଯୋଜନା ହେଉଛି, ଏହି ସବୁ ଗ୍ରହ-ଉପଗ୍ରହକୁ ନିଜେ ଯାଇ ସେଗୁଡ଼ିକର ଅବସ୍ଥା ସ୍ୱଚକ୍ଷୁରେ ଦେଖିଆସିବା ।

ବର୍ତ୍ତମାନ ଦୁଇଟି ବିଷୟ ରାଷ୍ଟ୍ର ସରକାରଙ୍କ ପ୍ରଧାନ ପ୍ରଣିଧାନଯୋଗ୍ୟ ହୋଇପଡ଼ିଛି । ପ୍ରଥମଟି ହେଉଛି ଏହି ନୂତନ ଆବିଷ୍କୃତ ତିନୋଟି ଗ୍ରହ ଭିତରୁ କେଉଁଟି ସର୍ବୋତ୍କୃଷ୍ଟ ନିର୍ଣ୍ଣୟ କରିବା; ଦ୍ୱିତୀୟଟି ହେଉଛି ସାରା ଚନ୍ଦ୍ରଲୋକ କୋଡ଼ିଏ କୋଟି ଅଧିବାସୀଙ୍କୁ ସ୍ଥାନାନ୍ତରିତ କରି ସେହି ଗ୍ରହ-ଉପଗ୍ରହରେ ଥଇଥାନ କରିବା । ପ୍ରଥମଟିର ସମାଧାନ ତ ଏପର୍ଯ୍ୟନ୍ତ ହୋଇନି, ଦ୍ୱିତୀୟଟିର ପ୍ରଶ୍ନ ଉଠୁଛି କୁଆଡ଼ୁ !

ଚନ୍ଦ୍ରଲୋକର ଚଉଦଟିଯାକ ବିରାଟ ଦୂରବୀକ୍ଷଣଯନ୍ତ୍ର ସେଗୁଡ଼ିକର ଅବସ୍ଥା ବିଭିନ୍ନ ଦିଗ୍‌ରୁ ସଂଗ୍ରହ କରି ଯୋଗାଇସାରିଲେଣି । ବହୁ ମହାଶୂନ୍ୟଗୃଖିଦଳ ଏହି ଗ୍ରହ-ଉପଗ୍ରହର ବହୁ ପାଖକୁ ଯାଇ ନାନାପ୍ରକାର ଆଲୋକଚିତ୍ର ଉଠାଇ ସେମାନଙ୍କ ସମ୍ପର୍କରେ ବହୁ ତଥ୍ୟ ସଂଗ୍ରହ କରି ବୈଜ୍ଞାନିକମାନଙ୍କୁ ଯୋଗାଇପାରିଛନ୍ତି । ବର୍ତ୍ତମାନ କେବଳ ବାକି ରହିଛି, ଏହି ଗ୍ରହ-ଉପଗ୍ରହକୁ ଯାଇ ସେଠାରେ ପ୍ରକୃତ ଅବସ୍ଥା ପର୍ଯ୍ୟବେକ୍ଷଣ କରି ଫେରିଆସିବା । କିନ୍ତୁ କେତୋଟି ଆଖପାଖ ଗ୍ରହ-ଉପଗ୍ରହକୁ କେତେ ମହାଶୂନ୍ୟଗୃଖି ଯାଇ ଯେଉଁଭଳି ଭାବରେ ଦୁର୍ଘଟଣାରେ ପଡ଼ିଛନ୍ତି ଓ ସେମାନଙ୍କ ଭିତରୁ କେତେକ ମୃତ୍ୟୁବରଣ କରିଛନ୍ତି, ତାହା ଅନ୍ୟ କୌଣସି ମହାକାଶଗୃଖିଙ୍କୁ ଉତ୍ସାହ ଦେବା ପରିବର୍ତ୍ତେ ସେମାନଙ୍କ ମନରେ ନାନାପ୍ରକାର ଆଶଙ୍କା ଜନ୍ମାଇଛି । ତେଣୁ ଏହିସବୁ ଗ୍ରହ-ଉପଗ୍ରହକୁ ଯିବା ପାଇଁ ଆଉ କେହି ଆଗଭର ହୋଇ ବାହାରିପାରୁ ନାହାନ୍ତି ।

ଅଶ୍ୱିନୀ ନକ୍ଷତ୍ରରେ ଦିଶୁଥିବା କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଯିବାପାଇଁ ଚନ୍ଦ୍ରର

ବୈଜ୍ଞାନିକମାନେ ଅଧିକ ଜୋର୍ ଦେଉଥାନ୍ତି । ସେମାନଙ୍କ ମତରେ ଚନ୍ଦ୍ରଲୋକର ଅଧିବାସୀଙ୍କ ବାସସ୍ଥାନ ଦୃଷ୍ଟିରୁ ସେହି ଗ୍ରହଟି ହେଉଛି ସବୁଠାରୁ ବେଶି ଉପଯୁକ୍ତ । ଚନ୍ଦ୍ରର ସବୁ ସୁବିଧା ସହିତ ଏହାର ଅନେକ ମେଳ ରହିଛି;ବରଂ ଚନ୍ଦ୍ରଲୋକର ଏକ ବଡ଼ ଅସୁବିଧା —ଏଠାରେ ଯେମିତି ଦିନ ପନ୍ଦର ଦିନ ଓ ରାତି ପନ୍ଦର ଦିନ ହୁଏ, ସେଠି ସେମିତି ନୁହେଁ । ପୃଥିବୀ ଭଳି ସେଠାରେ ଦିନ ବାରଘଣ୍ଟା ଓ ରାତି ବାରଘଣ୍ଟା ହୁଏ । ତେଣୁ ପ୍ରକୃତ ଅବସ୍ଥା ଆବିଷ୍କାର କରିବାପାଇଁ ସେହି ଗ୍ରହରେ ପହଞ୍ଚିବା ଏକାନ୍ତ ଆବଶ୍ୟକ ।

ଅଶ୍ୱିନୀ ନକ୍ଷତ୍ରର କେ-ଏମ୍-ବି-୧୧ ଗ୍ରହ ବ୍ୟତୀତ ଆବିଷ୍କୃତ ହୋଇଥିବା ଅନ୍ୟ ଦୁଇଟି ଗ୍ରହ ବିଷୟରେ ବୈଜ୍ଞାନିକମାନେ ଆହୁରି ଅଧିକ ଗବେଷଣା କରି ଯେଉଁ ତଥ୍ୟ ସଂଗ୍ରହ କଲେ ତାହା ଅତ୍ୟନ୍ତ ନିରାଶାଜନକ ଜଣାପଡ଼ିଲା ।

ଧ୍ରୁବତାରାର ସେହି ଗ୍ରହର ବାୟୁମଣ୍ଡଳ ପୂରାପୂରି ବିଷାକ୍ତ ବାଷ୍ପରେ ଓ କେ-ଜେଡ଼-ସି-୯ ଉପଗ୍ରହର ଜଳ ବିଷାକ୍ତ ପଦାର୍ଥରେ ଭରିରହିଥିବା ଜଣାପଡ଼ିଲାରୁ ବୈଜ୍ଞାନିମାନେ ବଡ଼ ବ୍ୟସ୍ତ ହୋଇପଡ଼ିଥାନ୍ତି । ବର୍ତ୍ତମାନ ଚନ୍ଦ୍ରଲୋକ ଅଧିବାସୀଙ୍କ ପାଇଁ ସାରା ବିଶ୍ୱରେ ଏକମାତ୍ର ଆଶା-ଭରସାର ମୂଳ ହେଉଛି କେ-ଏମ-ବି-୧୧ ଗ୍ରହ । ସେହି ଗ୍ରହକୁ ଯାଇ ନ ଫେରିଲା ପର୍ଯ୍ୟନ୍ତ ଚନ୍ଦ୍ରଲୋକର ଅଧିବାସୀଙ୍କ ଭବିଷ୍ୟତ ଅନ୍ଧକାର । କିନ୍ତୁ ଏହି ଗ୍ରହର ଦୂରତା ଚନ୍ଦ୍ରରୁ ପ୍ରାୟ ଅଢ଼େଇ ହଜାର ଆଲୋକ-ବର୍ଷ । ଏତେ ଦୂରରେ ଥିବା ଗ୍ରହକୁ ଯାଇ ଫେରିଆସିବା କିଛି କମ୍ କଥା ନୁହେଁ ।

ଅଳ୍ପ କିଛିଦିନ ତଳେ ଯେଉଁ ଦଳେ ବୈଜ୍ଞାନିକ ଚନ୍ଦ୍ରଲୋକର ବିଶିଷ୍ଟ ମହାକାଶଯାତ୍ରୀ କାମରାନ୍‌ଙ୍କ ଅଧକ୍ଷତାରେ ଯାଇଥିଲେ, ସେମାନଙ୍କ ଧ୍ୱଂସର କରୁଣ କାହାଣୀ ଚନ୍ଦ୍ରର କାହାରିକୁ ଅବିଦିତ ନାହିଁ । ସେମାନେ ଯେମିତି ଭାବରେ ମୃତ୍ୟୁବରଣ କଲେ, ତାହିଁର ବର୍ଣ୍ଣନ ଦୁଃଖଦାୟକ । ସେମାନେ ଧ୍ୱଂସ ପାଇବା ପୂର୍ବରୁ ଯେଉଁ ଯେଉଁ ଅବସ୍ଥାର ସମ୍ମୁଖୀନ ହୋଇଥିଲେ, ସେଗୁଡ଼ିକ ବେତାରଯୋଗେ ମନିକୁମନ ଲିପିବଦ୍ଧ ହୋଇଯାଇଥିଲା ଚନ୍ଦ୍ର-ଲୋକରେ । କି ଭୟାନକ ସେ ଅନୁଭୂତି ! ସେ କରୁଣ ଅନୁଭୂତି ତଥା ମୃତ୍ୟୁର କରାଳଗ୍ରାସୀ କଥା ଭାବିଲାବେଳକୁ ସେହି ଗ୍ରହ ଅଭିମୁଖେ ଆଉ ଥରେ ଅଭିଯାନର ନାଁ ଧରିବାକୁ କେହି ସାହସ କରୁନଥାନ୍ତି ।

ଏହି ଦୁର୍ଭାଗ୍ୟଗ୍ରସ୍ତ ଅଭିଯାନଟି ଆରମ୍ଭ ହେଲା ଯେତେବେଳେ ବୈଜ୍ଞାନିକମାନେ ନାନା ପରୀକ୍ଷା ପରେ ଦେଖାଇଦେଲେ, ଏହି ଗ୍ରହଟି ଚନ୍ଦ୍ରଠାରୁ ମାତ୍ର ଅଢ଼େଇ ହଜାର ଆଲୋକ-ବର୍ଷ ଦୂରରେ ଅଛି । ଏଠାକାର ସମସ୍ତ ସୁବିଧା ଚନ୍ଦ୍ରର ଅନୁରୂପ—ଜଳ ଅତୀବ ମଧୁର, ବାୟୁ ବେଶ୍ ବିଶୁଦ୍ଧ ।

ସଙ୍ଗେ ସଙ୍ଗେ ଯୋଜନା ପ୍ରସ୍ତୁତ ହେଲା ଏହି ଗ୍ରହ ଅଭିମୁଖେ ଅଭିହାନ ଆରମ୍ଭ କରିବାପାଇଁ ଓ ସର୍ବଶ୍ରେଷ୍ଠ ମହାକାଶଯାତ୍ରୀ କାମରାନ୍ ଆଗ୍ରହରେ ନେତୃତ୍ୱ ଗ୍ରହଣ କଲେ । ଆଲୋକବେଗର ପାଖାପାଖି ବେଗବିଶିଷ୍ଟ ଏକ ଯାନ ନହେଲେ ନ ହୁଏ । ଏମିତି ଯାନ

ସାହାଯ୍ୟରେ ମହାକାଶଯାତ୍ରା ଚନ୍ଦ୍ରପୃଷ୍ଠରୁ ମଧ୍ୟ ସୁବିଧାଜନକ ନୁହେଁ । ଦୂରଦୂରାନ୍ତର ନକ୍ଷତ୍ରମଣ୍ଡଳକୁ ଯିବାପାଇଁ ଗ୍ରହାଣୁପୁଞ୍ଜ ଭିତରେ ଥିବା ସିରସ ଗ୍ରହାଣୁ ସେଥିପାଇଁ ସୁବିଧାଜନକ ମନେହେବାରୁ ସେଠାରେ ଆନ୍ତଃନକ୍ଷତ୍ର ଅଭିଯାନ ପାଇଁ ଏକ ବିରାଟ ମହାଶୂନ୍ୟଘାଟୀ ଓ ଗବେଷଣାଗାର ପ୍ରତିଷ୍ଠା କରାଗଲା ।

ଏହି ଗ୍ରହ ସମ୍ପର୍କରେ ଛ'ମାସ ଅଧ୍ୟୟନ କରି ଦଳପତି କାମରାନ୍ ବାହାରିଲେ ନିଜ ଦଳକୁ ନେଇ । ଏହି ନୂତନ ଗ୍ରହ ସମ୍ପର୍କରେ ଟିକିନିଖି ଯାହା ଜାଣିବା କଥା, ଚନ୍ଦ୍ରଲୋକର ମହାଶୂନ୍ୟ-ବିଶେଷଜ୍ଞମାନେ କାମରାନ୍‌ଙ୍କୁ ଥରକୁ ଥର ଯୋଗାଇ ଦେଉଥାନ୍ତି । ବୈଜ୍ଞାନିକମାନଙ୍କ ପର୍ଯ୍ୟବେକ୍ଷଣରୁ ଯେତେବେଳେ ଜଣାପଡ଼ିଲା, ଏହି ଗ୍ରହଟିକୁ ଏକ ପ୍ରତିବସ୍ତୁ ବଳୟ ଘେରିରହିଛି, ଏହି ଗ୍ରହଟି ପ୍ରତି ବୈଜ୍ଞାନିକମାନଙ୍କ ଉତ୍ସାହ କମିଆସିଲା । କିନ୍ତୁ ଦଳପତି କାମାରାନ୍ ହତୋତ୍ସାହ ହୋଇଗଲେ ନାହିଁ । ସେ ନାନା ପରୀକ୍ଷା କରି ଦେଖିଲେ, ସେ ଯଦି ଖୁବ୍ ସାବଧାନତାସହକାରେ ତାଙ୍କ ଯାନକୁ ଚଳାନ୍ତି, ତେବେ ସେହି ପ୍ରତିବସ୍ତୁବଳୟକୁ ସ୍ପର୍ଶ ନକରି ତାହାକୁ ଅତିକ୍ରମ କରି ଅଭିପ୍ରେତ ଗ୍ରହଠାରେ ପହଞ୍ଚିପାରିବେ । କିନ୍ତୁ ଟିକିଏ ଅସାବଧାନ ହେଲେ ସାରା ଦଳଟି ବିଶ୍ୱପୃଷ୍ଠରୁ ନିଶ୍ଚିହ୍ନ ହେବା କିଛି ଅସମ୍ଭବ ନୁହେଁ । ସେ ନିଧାର୍ଯ୍ୟଭାବରେ ତାଙ୍କ ଦଳକୁ ଜଣାଇଦେଲେ, ସେ ବିନା ବାଧାବିଘ୍ନରେ ଏହି ପ୍ରତିବସ୍ତୁବଳୟଟିକୁ ଅତିକ୍ରମ କରି ଯାଇପାରିବେ । ବହୁ ଅନିଚ୍ଛାସତ୍ତ୍ୱେ ଚନ୍ଦ୍ରଲୋକର ବୈଜ୍ଞାନିକମାନେ କାମରାନ୍‌ଙ୍କୁ ଏହି ଅଭିଯାନ ପାଇଁ ଅନୁମତି ଦେଲେ । ମାତ୍ର କାମରାନ୍ ଯେ ସଫଳ ହୋଇ ଫେରିଆସିବେ, ଏ ଧାରଣା କାହାର ନଥିଲା ।

ଯଥାସମୟରେ କାମରାନ୍‌ଙ୍କ ଦଳ ଚନ୍ଦ୍ରପୃଷ୍ଠ ଛାଡ଼ିଲେ ଗ୍ରହାଣୁ ସିରସ୍ ଅଭିମୁଖେ । ସେଠାରେ କିଛିଦିନ ଅବସ୍ଥାନ କରି ସେମାନେ ଯାତ୍ରା କରିବେ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ସେମାନଙ୍କର ବିଶ୍ୱଯାନରେ ।

ଚନ୍ଦ୍ରଲୋକରୁ ଏକ ସାଧାରଣ ଯାନରେ ସେମାନଙ୍କୁ ଯିବାକୁ ପଡ଼ିଲା ଗ୍ରହାଣୁ ସିରସ୍ ଅଭିମୁଖେ । ଅନ୍ୟାନ୍ୟ ନକ୍ଷତ୍ର ଓ ନୀହାରିକାକୁ ଯିବାପାଇଁ ଅତି ଶକ୍ତିଶାଳୀ ବିଶ୍ୱଯାନ କେବଳ ସିରସ୍‌ରୁ ଯାଇପାରିବ; ଚନ୍ଦ୍ରରୁ ନୁହେଁ । ସିରସ୍ ଗ୍ରହାଣୁରେ ଅନ୍ୟାନ୍ୟ ଗ୍ରହ-ନକ୍ଷତ୍ର ସମ୍ବନ୍ଧରେ ଚନ୍ଦ୍ର ଅପେକ୍ଷା ଅଧିକ ଗବେଷଣା ଚାଲିଥାଏ । ଯେଉଁମାନେ ଅନ୍ୟ ନକ୍ଷତ୍ରକୁ ଯିବେ, ସେ ନକ୍ଷତ୍ର ସମ୍ବନ୍ଧରେ ସମସ୍ତ ଜ୍ଞାତବ୍ୟ ତଥ୍ୟ ସେମାନେ ସିରସ୍‌ରୁ ହିଁ ପାଇପାରିବାର ବନ୍ଦୋବସ୍ତ ହୋଇଥାଏ ।

ସିରସ୍‌ରେ ପହଞ୍ଚିଲାକ୍ଷଣି କାମରାନ୍ ଓ ତାଙ୍କ ଦଳ କେ-ଏମ୍-ବି-୧୧ ସମ୍ବନ୍ଧରେ ଆହୁରି ତଥ୍ୟ ସଂଗ୍ରହ କରିବାରେ ଲାଗିପଡ଼ିଲେ । ପ୍ରକୃତ ଅଭିଯାନ ଆରମ୍ଭ କରିବା ପୂର୍ବରୁ ଏହି ଅଜଣା ଗ୍ରହ ସମ୍ବନ୍ଧରେ ଟିକିନିଖି ଖବର ଯେ ଅତ୍ୟନ୍ତ ଦରକାର ହେବ, ସେ କଥା କିଏ ଅସ୍ୱୀକାର କରିବ ?

ସିରସ୍‌ରେ ତିନି ଚାରି ଦିନ ରହିବା ପରେ ପ୍ରକୃତ ଅଭିଯାନ ଆରମ୍ଭ ହେଲା । ସିରସ୍-

ପୃଷ୍ଠରୁ ବିଶ୍ୱଯାନ କାମରିନ୍ ଓ ତାଙ୍କ ଦଳକୁ ଧରି ଛୁଟିଗଲବ ଅଭିପ୍ରେତ ଗ୍ରହ ଅଭିମୁଖେ । ମହାଶୂନ୍ୟ ଘାଟିରେ ସେମାନଙ୍କୁ ବିଦାୟ ଦେବାପାଇଁ ଦଳେ ବୈଜ୍ଞାନିକ ଓ ମହାଶୂନ୍ୟ ଅଭିଯାତ୍ରୀ ସମବେତ ହୋଇଥିଲେ । କି ବିରାଟ ସେହି ମହାଶୂନ୍ୟଘାଟୀ ! ମହାଶୂନ୍ୟ ଅଭିଯାନରେ ବିଶେଷ ଜ୍ଞାନ ଥାଇ ମଧ୍ୟ କାମରିନ୍ ସେହି ମହାଶୂନ୍ୟଘାଟୀ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ମହାଶୂନ୍ୟଯାନ ସିରସ୍ ଛାଡ଼ିବା ପର୍ଯ୍ୟନ୍ତ ବୈଜ୍ଞାନିକମାନଙ୍କ ସହିତ ତାଙ୍କର ଆଲୋଚନା ଚାଲିଥାଏ—କେମିତି ସେ ଯିବେ, କେମିତି ଖବର-ଅନ୍ତତ୍ ପଠାଇବେ; ସବୁ ବିଷୟରେ ଆଲୋଚନା ନ କଲେ ନହୁଏ । ବାଟରେ କିଛି ଅସୁବିଧା ହେଲେ, ଚନ୍ଦ୍ର ବା ସିରସ୍‌ରେ ଲୋକେ ଜାଣି ନ ପାରିଲେ ଜୀବନରକ୍ଷା ଅସମ୍ଭବ ହୋଇପଡ଼ିବ ।

ଚାହୁଁ ଚାହୁଁ ସିରସ୍ ଛାଡ଼ିବା ବେଳ ପାଖେଇ ଆସିଲା । ଅଭିଯାତ୍ରୀଦଳ ବିଶ୍ୱଯାନରେ ଆଶ୍ରୟ ନେଇ ସାରିଲେଣି; କେବଳ କାମରିନ୍ ବାହାରେ କଥାବାର୍ତ୍ତାରେ ବ୍ୟସ୍ତ । ମହାଶୂନ୍ୟ ଅଭିଯାନରେ ସେ ସୁଦକ୍ଷ । ଏଥିପୂର୍ବରୁ ସେ ବହୁବାର ମହାଶୂନ୍ୟ ଭିତରକୁ ଯାଇ ସଫଳତାର ସହିତ ଫେରିଆସିଛନ୍ତି । ପାଖଆଖ ବହୁ ଗ୍ରହ-ଉପଗ୍ରହରୁ ନାନା ନୂତନ ତଥ୍ୟ ସେ ସଂଗ୍ରହ କରିଛନ୍ତି; ତେଣୁ ସମସ୍ତଙ୍କର ତାଙ୍କ ଉପରେ ପୂରା ବିଶ୍ୱାସ ଯେ ସେ ଏହି ଅଭିଯାନରେ ଯାଇ କୃତକାର୍ଯ୍ୟ ହେବେ । ତେବେ ସେମାନେ ଏହି ଯେଉଁ ପ୍ରଖର ବେଗରେ ଯିବେ, ତାହା ଫଳରେ ସମୟର ତାରତମ୍ୟ ନେଇ ନାନା ପ୍ରକାର କଥା ଉପୁଜିବାର ଆଶଙ୍କା ଥାଏ ।

ମହାଶୂନ୍ୟଘାଟୀରେ ଦଳପତି କାମରିନ୍‌ଙ୍କୁ ସିରସ୍‌ର ମହାଶୂନ୍ୟ ବିଶେଷଜ୍ଞଦଳର ଚେୟାରମାନ୍ ବିଦାୟ ବାଣୀ ଶୁଣାଉ ଶୁଣାଉ ଅତ୍ୟନ୍ତ ଭାବପ୍ରବଣ ହୋଇ କହିଲେ—ଦେଖ କାମରିନ୍ ! ତୁମର ଏହି ଅଭିଯାନ ସଫଳ ହେଉ, ଏହା ହିଁ ଆମର କାମନା । ଖାଲି ଆମର ନୁହେଁ, ସାରା ଚନ୍ଦ୍ରଲୋକର ଅଧିବାସୀଙ୍କ ମଙ୍ଗଳକାମନା ଏହାରି ପଛରେ ରହିଛି । ତୁମ ଅଭିଯାନ କୃତକାର୍ଯ୍ୟ ହେଲେ ତୁମେ ସାରା ଚନ୍ଦ୍ରଲୋକର ଅଧିବାସୀଙ୍କୁ ଉଦ୍ଧାର କରିପାରିବ । ତୁମର ବିଫଳତାରେ ସମସ୍ତେ ବିଜ୍ରାହିତ ହେବେ । ତୁମର ବିଜୟ-ବାହୁଡ଼ା ଦେଖିବାକୁ ଆମେ ହୁଏତ ବଞ୍ଚି ଥାଇ ନ ପାରୁ; କିନ୍ତୁ ଚନ୍ଦ୍ରଲୋକର ଇତିହାସରେ ଯୁଗେ ଯୁଗେ ଲିପିବଦ୍ଧ ହୋଇ ରହିବ ତୁମର ସେହି ଅସାଧାରଣ ସଫଳତା । ତୁମର ପ୍ରତ୍ୟାବର୍ତ୍ତନ କାଳରେ ତୁମକୁ ଏଠାରେ ଅଭିନନ୍ଦନ ଜଣାଇବା ପାଇଁ ଆମର ପରବର୍ତ୍ତୀ ଦାୟାଦଗଣ ଯେ ଉପସ୍ଥିତ ଥିବେ, ଏହା ନିଃସନ୍ଦେହରେ କୁହାଯାଇପାରେ । ତୁମର ଏହି ଅଭିଯାନ ଆମେ ଦେଖିଲୁ; କିନ୍ତୁ ପ୍ରତ୍ୟାବର୍ତ୍ତନ ଦେଖିବାପାଇଁ ଅପେକ୍ଷା କରିଥିବେ ଆମର ବଂଶଧରଗଣ । ଅଭିପ୍ରେତ ଗ୍ରହରେ ପହଞ୍ଚିବାର ବହୁ ପୂର୍ବରୁ ଆମେ ଏ ସଂସାରରୁ ବିଦାୟ ନେଇଥିବୁ; ହେଲେ, ଆମର ଶତାଧିକ ଯନ୍ତ୍ରପାତି ତୁମର ଏହି ଐତିହାସିକ ଯାତ୍ରାକୁ ଦୃଷ୍ଟିରେ ରଖି ଅପେକ୍ଷା କରି ରହିଥିବ ତୁମର ଫେରିବା ପଥକୁ ।

× × ×

ମହାଶୂନ୍ୟ ଭିତରେ ଆଲୋକ-ବେଗର ପାଖାପାଖି ବେଗରେ ଛୁଟି-ଚାଲିଥାଏ

କାମଗ୍ରନ୍‌ଙ୍କ ମହାଶୂନ୍ୟଯାନ । ମହାଶୂନ୍ୟଯାନ ଭିତରେ କାମଗ୍ରନ୍ ଓ ତାଙ୍କର ଗୃହଜଣ ସହଯାତ୍ରୀ—ସମସ୍ତେ ମହାଶୂନ୍ୟ ଅଭିଯାନରେ ଅଭିଜ୍ଞ ଓ ଧୂରନ୍ଧର; କିନ୍ତୁ ସେ ସମସ୍ତଙ୍କ ପାଇଁ ଏତେ ଦୂର ଅଭିଯାନ ଏଇ ପ୍ରଥମ ।

ଦଳପତି କାମଗ୍ରନ୍ ମହାଶୂନ୍ୟର ଘନ ଅନ୍ଧକାର ଭିତରକୁ ଚାହିଁ ବସିଥାନ୍ତି । ହଠାତ୍ ବହୁ ଦୂରରେ ଦେଖାଦେଲା ଏକ ମହାଶୂନ୍ୟ-ପୋତ । କାମଗ୍ରନ୍ ଦୂରବୀକ୍ଷଣ ଦେଇ ଲକ୍ଷ୍ୟ-କଲେ ମହାଶୂନ୍ୟ-ପୋତକୁ ଅତି ଉତ୍କଣ୍ଠାର ସହିତ । ବଡ଼ ବିଚିତ୍ର ସେ ମହାଶୂନ୍ୟ-ପୋତଟି; ତାହା ମଧ୍ୟ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଗଲାଭଳି ଜଣାପଡ଼ୁଥାଏ । ନାନାପ୍ରକାର ଗଣନା ଓ ହିସାବ ପରେ କାମଗ୍ରନ୍ ଓ ତାଙ୍କ ଦଳ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ସେମାନେ ଯେଉଁ ଗ୍ରହ ଅଭିମୁଖେ ଯାଉଛନ୍ତି; ଏହି ମହାଶୂନ୍ୟ-ପୋତଟି ଠିକ୍ ତାହାରି ଅଭିମୁଖେ ଗତି କରୁଛି ।

କିନ୍ତୁ ବଡ଼ ଅଦ୍ଭୁତ ଯାନଟିର ବେଗ; ଜଣାପଡ଼ୁଥାଏ ଯେମିତି କି ତାହାର ବେଗ ସେମାନଙ୍କର ଯାନର ବେଗଠାରୁ ଢେର୍ ବେଶି । କାମଗ୍ରନ୍‌ଙ୍କ ଯାନର ବେଗ ଆଲୋକ-ବେଗର ପାଖାପାଖି ଥିବାରୁ ଏହି ଯାନର ବେଗ ଆଲୋକର ବେଗଠାରୁ ଯେ ଢେର୍ ବେଶି, ଏଥିରେ ସେମାନଙ୍କର ଆଉ ସନ୍ଦେହ ରହିଲା ନାହିଁ ।

କିନ୍ତୁ କି ଆଶ୍ଚର୍ଯ୍ୟ—ଚନ୍ଦ୍ରଲୋକର ବୈଜ୍ଞାନିକମାନେ ଯେତେବେଳେ ନିର୍ଧାରିତ ଭାବରେ ପ୍ରମାଣ କରିସାରିଛନ୍ତି ଯେ ଏହି ବିଶ୍ୱର କୌଣସି ବସ୍ତୁ ପକ୍ଷରେ ଆଲୋକବେଗଠାରୁ ଅଧିକ ବେଗରେ ଗତି କରିବା ସମ୍ଭବପର ନୁହେଁ, ସେତେବେଳେ ଏହି ଯାନ ଆଲୋକବେଗଠାରୁ ଅଧିକ ବେଗରେ କେମିତି ଯାଉଛି, ଧାରଣା କରିପାରିଲେନି କାମଗ୍ରନ୍ କିମ୍ବା ତାଙ୍କର କେହି ସହକାରୀ । ସେମାନଙ୍କୁ ଏହା ଅତ୍ୟନ୍ତ ରହସ୍ୟମୟ ଜଣାପଡ଼ିଲା । ସେମାନେ ଯାହା ଗଣନା କରିଛନ୍ତି କିମ୍ବା ମାପଚୁପ କରିଛନ୍ତି, ତାହା ସେମାନଙ୍କୁ ବିଶ୍ୱାସଯୋଗ୍ୟ ଜଣାପଡ଼ିଲା ନାହିଁ । ଥରକୁ ଥର ଗଣନା କରି ସେମାନେ ଯେତେବେଳେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ସେହି ଯାନର ବେଗ ଆଲୋକବେଗଠାରୁ ନିଶ୍ଚୟ ଢେର୍ ବେଶି ଓ ସେଥିରେ କୌଣସି ସନ୍ଦେହ ନାହିଁ, ସେତେବେଳେ ସେମାନଙ୍କର ବିସ୍ମୟର ସୀମା ରହିଲା ନାହିଁ ।

କାମଗ୍ରନ୍ ଯାନଟି ସମ୍ପର୍କରେ ଅଧିକ ତଥ୍ୟ ସଂଗ୍ରହ କରିବା ପାଇଁ ନିଜ ଯାନକୁ ସେହି ଯାନଆଡ଼କୁ ମୁହାଁଇ ଦେଲେ । ଗୁହୁଁ ଗୁହୁଁ ଯାନ ଦୁଇଟି ପାଖେଇଆସିଲା । ଦୂରବୀକ୍ଷଣ ସାହାଯ୍ୟରେ ସେମାନେ ବର୍ତ୍ତମାନ ଦେଖିଲେ ଯାନଟି ଭିତରେ ଜଣେ ମାତ୍ର ଯାତ୍ରୀ; ପୁଣି ଯାତ୍ରୀଟି ପୁରୁଷ ନୁହେଁ, ସ୍ତ୍ରୀ ଭଳି ଜଣାପଡ଼ୁଥାଏ । କାମଗ୍ରନ୍ ସଙ୍ଗେ ସଙ୍ଗେ ତାଙ୍କ ଅନୁଭୂତିକୁ ସିରସ୍ ଗ୍ରହାଣୁ ଷ୍ଟେସନକୁ ପଠାଇଦେଲେ ।

ମହାଶୂନ୍ୟ ଭିତରେ ଆଉଏକ ମହାଶୂନ୍ୟଯାନ, ତାହା ମୁହାଁଇଛି ସେମାନଙ୍କ ଅଭିପ୍ରେତ ଗ୍ରହଆଡ଼େ, ଚାଳକ ଜଣେ ସ୍ତ୍ରୀ ଓ ଯାନଟିର ବେଗ ଆଲୋକବେଗଠାରୁ ଅଧିକ—ଏସବୁ କୁହୁକ ଭଳି ଲାଗିଲା କାମଗ୍ରନ୍‌ଙ୍କୁ । ମହାଶୂନ୍ୟ ଭିତରେ ଏମିତି ଏକ ଅଦ୍ଭୁତ ଅଭିଜ୍ଞତା

ଅର୍ଜନ କରିବାପାଇଁ ସେ ଆଶା କରି ନଥିଲେ । ମହାଶୂନ୍ୟ ଭିତରେ ଆଉ କେହି ଯେ ଗତି କରୁଥିବ ସେ ଆଶା ତାଙ୍କର ନ ଥିଲା । ଯଦି କେହି ଗତି କରୁଥାଏ, ତେବେ ସେମାନେ ଯାଉଥିବା ଗ୍ରହକୁ କାହିଁକି ? ମହାଶୂନ୍ୟ ଅଭିଯାତ୍ରୀ ପୁରୁଷ ନ ହୋଇ ସ୍ତ୍ରୀ ହେବାର କାରଣ କଣ ? ବୈଜ୍ଞାନିକ ଗଣନା ଆଲୋକର ବେଗଠାରୁ ଅଧିକ ବେଗରେ ଯାଉଥିବା କୌଣସି ଯାନକୁ ସ୍ୱୀକାର କରୁ ନ ଥିବାବେଳେ ଏହି ଯାନଟି ସେଭଳି ବେଗରେ ଯାଉଛି ବା କେମିତି ? ଏସବୁ ବିଷୟରେ ସେ ଯେତେ ଭାବୁଥାଆନ୍ତି, ତାଙ୍କୁ ଘଟଣା ଆହୁରି ଅଧିକ ରହସ୍ୟମୟ ଜଣାପଡ଼ୁଥାଏ । ବେଳକୁ ବେଳ ଅଜ୍ଞାତ ଯାନଟି ବେଶ୍ ପାଖେଇ ଆସିଲା । ସେ ଯାନଟିର ଚାଳକ ମଧ୍ୟ କାମଗ୍ରନ୍‌ଙ୍କ ଯାନକୁ ଦେଖିପାରିଥିଲା ଓ ଯାନଟିକୁ ସେମାନଙ୍କ ଆଡ଼କୁ ପାଖେଇ ଆସୁଥିବା କାମଗ୍ରନ୍ ଉପଲବ୍ଧି କରୁଥିଲେ ।

ପାଖେଇ ଆସୁଥିବା ଯାନଟିକୁ ଆହୁରି ଭଲଭାବରେ ନିରୀକ୍ଷଣ କରିବାକୁ ଲାଗିଲେ କାମଗ୍ରନ୍ ଓ ତାଙ୍କ ଦଳ । ଦେଖିଲେ ଯାନଟିର ଚାଳକ ସେମାନଙ୍କୁ ମଧ୍ୟ ନିରୀକ୍ଷଣ କରିବାରେ ଲାଗିଛି । କାମଗ୍ରନ୍ ଯେମିତି ଆଶା କରି ନ ଥିଲେ ମହାଶୂନ୍ୟରେ ଏମିତି ଏକ ମହାଶୂନ୍ୟଯାନ ଭେଟିବେ ବୋଲି, ସେମିତି ହୁଏତ ସେହି ଯୁବତୀଟି ଆଶା କରି ନ ଥିଲା ଏଇ ଅନନ୍ତ ମହାଶୂନ୍ୟ ଭିତରେ ଆଉ ଏକ ମହାଶୂନ୍ୟଯାନ ଭେଟିବ ବୋଲି । ତେଣୁ ଯେତେବେଳେ କାମଗ୍ରନ୍‌ଙ୍କ ଯାନଟି ଯୁବତୀର ଦୃଷ୍ଟିପଥାରୂଢ଼ ହୋଇଛି, ସେ କୌତୂହଳୀ ନ ହୋଇ ରହିପାରିନାହିଁ । ସଙ୍ଗେ ସଙ୍ଗେ ସେ ତା ନିକଟରେ ଥିବା ଯନ୍ତ୍ର ସାହାଯ୍ୟରେ କାମଗ୍ରନ୍‌ଙ୍କ ଯାନଟିକୁ ନିରୀକ୍ଷଣ କରିବାରେ ଲାଗିଛି ।

ଚିହୁଁ ଚିହୁଁ ଯାନ ଦୁଇଟି ଆହୁରି ପାଖେଇ ଆସିଲା । କାମଗ୍ରନ୍ ଦୂରବୀକ୍ଷଣ ଯନ୍ତ୍ରରେ ଯାନଟିକୁ ଆହୁରି ଭଲଭାବରେ ଲକ୍ଷ୍ୟ କରୁଁ କରୁଁ ସହକର୍ମୀ ଲେବ୍‌ଦେବ୍‌ଙ୍କୁ ଡାକି କହିଲେ —ଦେଖୁଛ ଲେବ୍‌ଦେବ୍ ! ମହାଶୂନ୍ୟଯାନଟିରେ ଯୁବତୀଟି ଛଡ଼ା ଆଉ କେହି ନାହିଁ । ବଡ଼ ଆଶ୍ଚର୍ଯ୍ୟ ! କିଏ ଏଇ ଯୁବତୀ ମହାଶୂନ୍ୟର ନିର୍ଜନତା ଭିତରେ ମହାଶୂନ୍ୟପୋତ ଚଳାଇ ଚାଲିଛି ? କେଉଁ ଗ୍ରହର ସେ ନାରୀ; କି ଉଦ୍ଦେଶ୍ୟରେ ସେ ଚାଲିଛି ଏହି ନିର୍ଜନ ମହାଶୂନ୍ୟ ଭିତରେ ? ଏହିଭଳି ବହୁ ପ୍ରଶ୍ନ କାମଗ୍ରନ୍‌ଙ୍କ ମୁହଁରୁ ବାହାରିପଡ଼ିଲା ।

ଯାନଟି ଆଉ ଟିକିଏ ପାଖେଇ ଆସିବାରୁ କାମଗ୍ରନ୍ ଲକ୍ଷ୍ୟକଲେ, ଯୁବତୀଟି ଏକ ଶ୍ରେଷ୍ଠ ଯନ୍ତ୍ର ସାହାଯ୍ୟରେ ସେମାନଙ୍କ ଯାନକୁ ନିରକ୍ଷଣ କରିବାରେ ଲାଗିଛି । କାମଗ୍ରନ୍ ତାହା ଦେଖି ପାଟିକରି ଉଠିଲେ ଦେଖୁଛ ଲେବ୍‌ଦେବ୍, ସେହି ଯୁବତୀଟି କେମିତି ଆମକୁ ଲକ୍ଷ୍ୟ କରିବାରେ ବ୍ୟସ୍ତ । ଏମିତି ଏକ ନାରୀକୁ ଭେଟିବା ବୋଲି ତୁମେ କଣ କେବେ କଳ୍ପନା କରିଥିଲ ଲେବ୍‌ଦେବ୍ ?

—ଆମର ବୈଜ୍ଞାନିକମାନେ ଯାହା କହୁଥିଲେ, ଏହି ବିଶ୍ୱର ବହୁ ଗ୍ରହ-ଉପଗ୍ରହରେ ଆମଭଳି ଶିକ୍ଷିତ ମଣିଷସମାଜ ଅଛି, ଏହା କଣ ତାର ପ୍ରମାଣ ନୁହେଁ କାମଗ୍ରନ ?

—ନିଶ୍ଚୟ, ନିଶ୍ଚୟ; ଏଥିରେ ସନ୍ଦେହ କରିବାର କଣ ଅଛି । ଆମ ସୌରଜଗତର

ପୃଥିବୀ ଓ ଚନ୍ଦ୍ରଲୋକରେ ଯଦି ମଣିଷସମାଜ ଅଛି, ଅନ୍ୟ କୋଟି କୋଟି ନକ୍ଷତ୍ରର ଜଗତରେ ଥିବା ଅସଂଖ୍ୟ ଗ୍ରହ-ଉପଗ୍ରହରେ ମଣିଷସମାଜ ବା କାହିଁକି ନଥିବ । ସେହି ଯୁବତୀଟି ଯେ ଏହାର ପ୍ରମାଣ, କେହି ଅସ୍ୱୀକାର କରିବେ ନାହିଁ ।

ଦୂରବୀକ୍ଷଣରେ ଯାନଟିକୁ ଲକ୍ଷ୍ୟ କରୁ କରୁ କାମରାନ୍ ଦେଖିଲେ,ଯୁବତୀଟି ତା ଯନ୍ତ୍ରରେ ଲକ୍ଷ୍ୟ କରିବା ଗୁଡ଼ି ଖାଲିଆଖିରେ ସେମାନଙ୍କ ଆଡ଼କୁ ଅନାଇ ରହିଛି । କାମରାନ୍ ଚନ୍ଦ୍ରଲୋକରେ ବହୁ ସୁନ୍ଦରୀ ଯୁବତୀ ଦେଖିଛନ୍ତି; କିନ୍ତୁ କେହି ସୌନ୍ଦର୍ଯ୍ୟରେ ଏହି ଯୁବତୀଟିର ସମକକ୍ଷ ହେବେ ନାହିଁ । ତାଙ୍କର ମନେହେଉଥାଏ ଯେମିତି ସାରା ବିଶ୍ୱର ସବୁ ସୌନ୍ଦର୍ଯ୍ୟ ଠୁଳ ହୋଇଛି ଏହି ମହାଶୂନ୍ୟଚାରିଣୀଠାରେ ।

କାମରାନ୍‌ଙ୍କ ମହାଶୂନ୍ୟଯାନଟିକୁ ଦେଖି ଯୁବତୀର ମନରେ ବହୁ ଆଶଙ୍କା ଉର୍ମିମାଳ ଉଠୁଥାଏ—ଏତେ ଦିନ ଧରି ଆତଯାତ ହେଉଥିବା ମହାଶୂନ୍ୟରେ ଏହି ନିର୍ଜନ ଅଞ୍ଚଳରେ ସେ କେବେ ତ ଏମିତି ପୋତ ଦେଖି ନଥିଲା; ହଠାତ୍ ଏ ପୋତଟିର ଆବିର୍ଭାବ କାହିଁକି ? ଯୁବତୀଟିର ଆଶଙ୍କାଜଡ଼ିତ ମୁଖମଣ୍ଡଳରୁ କାମରାନ୍ ଏହିଭଳି ବହୁ ପ୍ରଶ୍ନ ଯୁବତୀଟିର ମନ ଭିତରେ କେମିତି ଚେଇଁଉଠୁଛି, ଅନୁମାନ କରିପାରୁଥିଲେ । କାମରାନ୍‌ଙ୍କ ମନ ଭିତରେ ମଧ୍ୟ ଅସଂଖ୍ୟ ପ୍ରଶ୍ନମାଳାରେ ଉଦ୍‌ବେଳିତ !—କିଏ ଏହି ନାରୀ ? କା'ର ସେ ଲଳନା ? ନିର୍ଜନ ମହାଶୂନ୍ୟରେ ସଙ୍ଗୀହୀନା ହୋଇ ଏକାକିନୀ କାହିଁକି ? କାହିଁକି ସେ ଘୂରିବୁଲୁଛି ଏହି ନିର୍ଜନତା ଭିତରେ, କିଣ ପାଇବା ଆଶାରେ ?

ପ୍ରଶ୍ନଗୁଡ଼ିକ କାମରାନ୍‌ଙ୍କ ମନକୁ ଏତେ ବିବ୍ରତ କରୁଥିଲା ଯେ, ସେ ସହକର୍ମୀମାନଙ୍କ ଆଲୋଚନା କରିବେ କଅଣ, ଦୂରବୀକ୍ଷଣଯନ୍ତ୍ର ଭିତରେ କେବଳ ଯୁବତୀଟିକୁ ଅନାଇ କେତେ କଣ ଭାବିଯାଉଥିଲେ । ଯୁବତୀଟିକୁ ନେଇ ନାନାପ୍ରକାର ଚିନ୍ତା ବଡ଼ ବିବ୍ରତ କରି ପକାଉଥିଲା ତାଙ୍କ ମନକୁ !

କାମରାନ୍ ଯୁବତୀଟିକୁ ସଙ୍କେତ ଦେଲେ, ତାଙ୍କର ଆହୁରି ନିକଟତର ହେବାପାଇଁ । ଯୁବତୀଟି ସମ୍ପର୍କରେ ଆହୁରି ଅଧିକ ଜାଣିଲେ ସେ ଖୁସି ହେବେ ବୋଲି କିଛି ସଙ୍କେତ ଦେଲେ ।

ବଡ଼ ଆଶ୍ଚର୍ଯ୍ୟ, ଯୁବତୀଟି କାମରାନ୍‌ଙ୍କ ଇସାରାକୁ ବୁଝିପାରି ନିଜ ଯାନଟିକୁ ଆହୁରି ପାଖେଇ ଆଣିଲା । ଯୁବତୀଟି ତାର ଯାନ ନେଇ ପାଖେଇଆସିବା ଦେଖି କାମରାନ୍ ଓ ତାଙ୍କର ସହଯାତ୍ରୀମାନେ ଚଞ୍ଚଳ ହୋଇଉଠିଲେ ।

କାମରାନ୍ ସଙ୍ଗେ ସଙ୍ଗେ ନିଜ ଯାନଟିକୁ ଅନ୍ୟ ଯାନପାଖକୁ ନେବାପାଇଁ ନିର୍ଦ୍ଦେଶ ଦେଲେ; କିନ୍ତୁ ସେହି ନିର୍ଦ୍ଦେଶ ପାଳିତ ପୂର୍ବରୁ ତାଙ୍କ ସହକର୍ମୀ ଲେବ୍‌ଦେବ୍ କାମରାନ୍‌ଙ୍କୁ ସତର୍କ କରାଇ କହିଲେ—ମହାଶୂନ୍ୟର ସେହି ପୋତ ସମ୍ବନ୍ଧରେ ବିଶେଷ କିଛି ନଜାଣି ତାହାର ପାଖକୁ ଯିବା ଆମର ଉଚିତ ହେବ ନାହିଁ କାମରାନ୍ ! ଆମେ ଏପର୍ଯ୍ୟନ୍ତ ଜାଣିନାହେଁ ସେହି ଯୁବତୀଟି କିଏ, କି ଉଦ୍ଦେଶ୍ୟରେ ସେ ଏହି ମହାଶୂନ୍ୟରେ ଘୂରିବୁଲୁଛି,

କେଉଁ ଗ୍ରହର ସେ ଅଧିବାସିନୀ, କେଉଁ ଗ୍ରହ ଅଭିମୁଖେ ସେ ଧାବମାନା ଏଇ ମହାଶୂନ୍ୟ ଭିତରେ; ପୁଣି ଏକାକିନୀ କାହିଁକି ? ତା ସମ୍ବନ୍ଧରେ ଆମେ ଏସବୁ ନ ଜାଣିଲା ପର୍ଯ୍ୟନ୍ତ ତାର ଯାନ ପାଖକୁ ଯିବା ମୁଁ ଉଚିତ ମନେ କରୁନାହିଁ ।

---ଏହି ସବୁ ପ୍ରଶ୍ନର ଉତ୍ତର ପାଇବାପାଇଁ ଆମେ ସେ ସେହି ଯୁବତୀଟି ଯଥାସମ୍ଭବ ପାଖକୁ ଯିବା ଉଚିତ, ଏ କଥା ତୁମେ ଭୁଲିଯାଉଛ ଲେବ୍‌ଦେବ୍ !

ଗୁହୁଁ ଗୁହୁଁ ଆହୁରି ପାଖେଇ ଆସିଲା ଦୁଇଟିଯାକ ଯାନ । ଯୁବତୀଟି ସହିତ ସମ୍ପର୍କ ସ୍ଥାପନ ପାଇଁ କାମରାନ୍ ଚେଷ୍ଟା କଲେ; କିନ୍ତୁ କେହି କାହା ଭାଷା ବୁଝିବାକୁ ଅକ୍ଷମ । ଯୁବତୀଟି ହଠାତ୍ କଣ ଭାବିଲା କେଜାଣି ଏକ ସାଙ୍କେତିକ ଭାଷାର କାର୍ଡ଼ କାମରାନ୍‌ଙ୍କ ଆଡ଼କୁ ଦେଖାଇ ଧରିଲା । ସଙ୍କେତ କାର୍ଡ଼ଟିରେ ଭାଷା ନାହିଁ; କେତେଗୁଡ଼ିଏ ସାଙ୍କେତିକ ଚିହ୍ନ ଏମିତିଭାବରେ ଦିଆଯାଇଛି, କାର୍ଡଟିକୁ ଦେଖିଲେ ପୋଟିଟି ସମ୍ବନ୍ଧରେ ଅନେକ କିଛି ଜାଣିହେବ । କାମରାନ୍ ଓ ତାଙ୍କ ସହକର୍ମୀ ଲେବ୍‌ଦେବ୍ ଦୂରବୀକ୍ଷଣ ସାହାଯ୍ୟରେ କାର୍ଡ଼ଟିକୁ ଲକ୍ଷ୍ୟ କରିବାକୁ ଲାଗିଲେ । ସେହି ସାଙ୍କେତିକ ଭାଷାରୁ ଯାହା ଧାରଣା କଲେ, ଦଳର ଅନ୍ୟମାନଙ୍କୁ ବୁଝାଇଦେଲେ ।

ସାଙ୍କେତିକ ଭାଷାରୁ ଜଣାପଡ଼ିଲା, ଯୁବତୀଟି ଗ୍ଲାସ୍କୃପଥ ନୀହାରିକାର ଲୋକ ନୁହେଁ । ସେ ହେଉଛି ଏଣ୍ଡ୍ରୋମେଡ଼ା ନୀହାରିକା ନିକଟବର୍ତ୍ତୀ ଆଉ ଏକ ନୀହାରିକାର ଅଧିବାସିନୀ । ସେ ଯାତ୍ରା କରୁଛି 'କେ-ଏମ୍-ବି-୧୧' ଗ୍ରହ ଅଭିମୁଖେ । ସେ ଏକ ଦୂତଭାବରେ ଯାଉଛି ସେହି ଗ୍ରହକୁ ଏକ ଜରୁରୀ ଓ ଅତ୍ୟନ୍ତ ଗୁପ୍ତ ସମ୍ବାଦ ନେଇ । ତା ଛଡ଼ା ସେ ଏହି ପଥ ସହିତ ବେଶ୍ ଭଲଭାବରେ ପରିଚିତ । ତାର ସେଥିପାଇଁ ଭୟ ନାହିଁ । ସେ ଯେଉଁଠାକୁ ଯାଉଛି, ସେଠି ତାର ନିଜର ଲୋକ ଅଛନ୍ତି; ତେଣୁ ସେ ପୂରାପୂରି ନିର୍ଭୟ !

ସାଙ୍କେତିକ କାର୍ଡ଼ରୁ କାମରାନ୍ ଯୁବତୀଟି ସମ୍ପର୍କରେ ଏତେଗୁଡ଼ିଏ କଥା ଜାଣିପାରିବାରୁ ଆଶ୍ୱସ୍ତ ହେଲେ । ସେ ନିଜ ଦଳ ସମ୍ପର୍କରେ ଯୁବତୀଟିକୁ ଜଣାଇ ଦେବାପାଇଁ ନିଜର ବ୍ୟକ୍ତବ୍ୟକୁ ସେହିଭଳି ସାଙ୍କେତିକ ଭାଷାରେ ଲେଖି କାର୍ଡ଼ଟିକୁ ଯୁବତୀ ଆଡ଼କୁ ଦେଖା ଧରିଲେ । ଯୁବତୀଟି ନିଜ ଯନ୍ତ୍ର ସାହାଯ୍ୟରେ ସେହି କାର୍ଡ଼ଟିକୁ ପଢ଼ି ବୁଝିପାରିବାରୁ ତା ମୁହଁ ମଧ୍ୟ ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା । ସେ ଅତ୍ୟନ୍ତ ଖୁସି ହୋଇ ହାତ ହଲାଇ ଆଶ୍ୱାସ ଦେଲା—ତା'ହେଲେ ଆମେ ଗୋଟିଏ ପଥର ପଥିକ । ଆମେ ଏଥର ସାଙ୍ଗ ହୋଇ ଗୋଟିଏ ଦିଗକୁ ଯିବା ।

କାମରାନ୍ ଯୁବତୀଟିକୁ ଅଭିପ୍ରେତ ଗ୍ରହ ସମ୍ପର୍କରେ ସଠିକ ଜ୍ଞାନ ଅର୍ଜନ କରିବା ପାଇଁ ପଚାରିପକାଇଲେ -- ଅଭିପ୍ରେତ ଗ୍ରହ ଆଉ କେତେ ଦୂରରେ ରହିଲା ?

ସଙ୍ଗେ ସଙ୍ଗେ ଉତ୍ତର ଆସିଲା—ଅଢେଇ ହଜାର ଆଲୋକବର୍ଷ ପାଖାପାଖି ।

କାମରାନ୍ ନିଜ ଅଭିପ୍ରେତ ଗ୍ରହର ଦୂରତ୍ୱ କେତେ, ସଙ୍ଗେ ସଙ୍ଗେ ଗଣନା କରି ଦେଖିଲେ । ଏହା ପ୍ରାୟ ତା'ର ପାଖାପାଖି । ତେଣୁ ସେ ନିଶ୍ଚିତ ହୋଇଗଲେ ଯୁବତୀଟି

ଯାଉଛି ସେହି ଗ୍ରହକୁ ; ଯେଉଁଠାକୁ ସେମାନେ ଯାଉଛନ୍ତି । ଗୋଟିଏ ଗ୍ରହକୁ ସେମାନେ ଯାଉଥିବାରୁ କାମଗ୍ରାନଙ୍କ ଆନନ୍ଦ କହିଲେ ନ ସରେ । ନିଜ ଦଳକୁ ସେହି କଥା ଜଣାଇ ଦେଇ ସେ ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ ।

କାମଗ୍ରାନ୍ ତାଙ୍କ ନିଜ ଯାନକୁ ଛୁଟାଇଚାଲିଛନ୍ତି, ହଠାତ୍ ତାଙ୍କ ଯାନର ସତର୍କ ବିପଦଘଣ୍ଟି ବାଜିଉଠିଲା । ସେ ଘଣ୍ଟି ଶବ୍ଦ ଶୁଣି ଦୌଡ଼ିଲେ ଯନ୍ତ୍ର ପାଖକୁ । ଘଣ୍ଟି ପାଖରେ ଥିବା ନିର୍ଦ୍ଦେଶକ ଯନ୍ତ୍ରକୁ ଲକ୍ଷ୍ୟ କରି ଦେଖିଲେ ଯେ, ତାଙ୍କ ଯାନର ବେଶ୍ ପାଖାପାଖି କୌଣସି ଏକ ସ୍ଥାନରେ ପ୍ରତିବସ୍ତୁ ରହିଛି । ଏହି ଅଜଣା ପ୍ରତିବସ୍ତୁ ସହିତ ବାଧା ପାଇଲେ ମହାଶୂନ୍ୟପୋତ ଧ୍ୱଂସ ପାଇଯିବାର ଆଶଂକା କରି ସତର୍କ-ଘଣ୍ଟିଟି ବାଜିଉଠୁଛି ବିପଦର ସଙ୍କେତ ଦେଇ । କାମଗ୍ରାନ୍ କିଞ୍ଚିତ୍ ଭୟବିହ୍ୱଳ ହୋଇ ଦୂରବୀକ୍ଷଣ ଯନ୍ତ୍ରରେ ଚାରିଆଡ଼କୁ ଲକ୍ଷ୍ୟ କରିବାରେ ଲାଗିଗଲେ; କିନ୍ତୁ କେଉଁଠାରେ କିଛି ଦେଖିବାକୁ ନ ପାଇ ବଡ଼ ବିରକ୍ତ ହୋଇପଡ଼ିଲେ । ପୁଣି ସତର୍କ-ଘଣ୍ଟି ଏତେ ଘନ ଘନ ବାଜୁଥାଏ ଯେ, କାମଗ୍ରାନ୍ ଯୁବତୀଟିକୁ ନିରୀକ୍ଷଣ କରିବାରେ ବାଧା ଜନ୍ମାଉଥାଏ । କେଉଁଆଡ଼େ କିଛି ନ ଦେଖି, ବଡ଼ ବିରକ୍ତ ହୋଇ ସତର୍କ-ଘଣ୍ଟିର ତାରକୁ କାଟି ସେ ଘଣ୍ଟିଟିକୁ ଅଚଳ କରିଦେଲେ । ତାଙ୍କ ଧାରଣା—ଯନ୍ତ୍ରଟା ମିଛଟାରେ ଖାଲି ଗୋଳମାଳ ସୃଷ୍ଟି କରୁଛି । ସବୁ ସମୟପାଇଁ ଘଣ୍ଟିଟି ଅଚଳ ହୋଇଯାଇ ତାର ବେଦନ ବନ୍ଦ କଲା ।

ଯୁବତୀଟିକୁ ଦେଖିଲାବେଳୁ କାମଗ୍ରାନ୍ ଏମିତିଭାବରେ ମୁଗ୍ଧ ହୋଇଯାଇଥିଲେ ଯେ, ଯୁବତୀଟିକୁ ନିରୀକ୍ଷଣ କରିବା ଛଡ଼ା ତାଙ୍କର ଆହୁରି ଢେର୍ କାମ ଏହି ମହାଶୂନ୍ୟରେ କରିବାକୁ ଅଛି, ସେକଥା ସେ ପୂରାପୂରି ଭୁଲିଯାଇଥିଲେ । ସେ କେଉଁଠାର ଲୋକ, କୁଆଡ଼କୁ ଯାଉଛନ୍ତି, କି ଉଦ୍ଦେଶ୍ୟ ନେଇ ଏହି ମହାଶୂନ୍ୟ ଅଭିଯାନରେ ବାହାରିଛନ୍ତି—ସବୁ କିଛି ସେ ଭୁଲିଯାଇଥାନ୍ତି ଯୁବତୀଟିକୁ ଦେଖିଲାବେଳୁ । କେତେ ବଡ଼ ଦାୟିତ୍ୱ ନେଇ ସେ ଯେଉଁ ବିରାଟ ଅଭିଯାନରେ ଆସିଛନ୍ତି, ଯେଉଁ ଅଭିଯାନ ଉପରେ କୋଡ଼ିଏ କୋଟି ଚନ୍ଦ୍ରଲୋକ ଅଧିବାସୀଙ୍କ ଭବିଷ୍ୟତ ନିର୍ଭର କରୁଛି, କାମଗ୍ରାନ୍ ସେସବୁ ଭୁଲିଯାଇ କେବଳ ଏହି ମହାକାଶଚାରିଣୀଟିର ଚିନ୍ତାରେ ମଜ୍ଜିଯାଇଥାନ୍ତି । ବଡ଼ ଦୁଃଖ କାମଗ୍ରାନଙ୍କର ଯେ, ସେ ଯୁବତୀଟିର ଭାଷା ବୁଝିବାକୁ ଅକ୍ଷମ; ନହେଲେ ସେ ଏହି ନିର୍ଜନ ମହାଶୂନ୍ୟରେ ଯୁବତୀଟି ସହିତ ମଧୁର୍ ଆଳାପ କରି ସମୟ କଟାଇଦିଅନ୍ତେ ।

ଯୁବତୀଟି କାମଗ୍ରାନ୍‌ଙ୍କୁ ଦେଖି ବିଭୋର ହେଲାଭଳି ତାର ଆଖିରୁ ଜଣାପଡୁଥାଏ । ସେ କାମଗ୍ରାନ୍‌ଙ୍କୁ ଦୁଇ ଚାରି ଥର କଣ ଇସାରା ଦେଲା, କାମଗ୍ରାନ୍ ତାର ଅର୍ଥ ଧରିପାରିଲେ ନାହିଁ । କାମଗ୍ରାନ୍ ଯେତେବେଳେ ଦେଖିଲେ ଯୁବତୀଟି ଇସାରା ଦେବା ପରେ ପରେ ମହାଶୂନ୍ୟ ପୋଷାକ ପିନ୍ଧି ମହାଶୂନ୍ୟରେ ବିହାର ପାଇଁ ଯାନ ଭିତରୁ ବାହାରିଆସୁଛି, କାମଗ୍ରାନ୍ ନିଜକୁ ସମ୍ଭାଳି ରଖିପାରିଲେ ନାହିଁ । ସେ ସଙ୍ଗେ ସଙ୍ଗେ ନିଜ ମହାଶୂନ୍ୟ ପୋଷାକ ପିନ୍ଧି ମହାଶୂନ୍ୟ ଭିତରକୁ ବାହାରି ପଡ଼ିବାକୁ ତିଆରି । ଏଥର ସେ

ଭଲରୂପେ ବୁଝିପାରିଥିଲେ ଯେ ଯୁବତୀଟି ତାଙ୍କୁ ଇସାରା ଦେଇଥିଲା ମହାଶୂନ୍ୟ ଭିତରକୁ ବୁଲିଯିବା ପାଇଁ । ଯୁବତୀଟିକୁ କିଛି ଦୂରରେ ମହାଶୂନ୍ୟ ଭିତରେ ପହଁରିଲା ଭଳି ଖେଳୁଥିବାର ଦେଖି କାମରାନ୍ ଅସ୍ଥିର ହୋଇପଡ଼ିଲେ । ପୋଷାକ ପିନ୍ଧି ବାହାରକୁ ଯିବାପାଇଁ ସେ ଯାନର ଦୁଆର ଖୋଲିବାକୁ ଯାଉଛନ୍ତି, ସହକାରୀ ଲେବ୍‌ଦେବ ତାଙ୍କୁ ବାଧାଦେଇ କହିଲେ—ତୁମେ କଣ ସେଇ ଯୁବତୀଟି ସହିତ ମହାଶୂନ୍ୟରେ ବିହାର କରିବାକୁ ଯାଉଛ କାମରାନ୍ ?

କାମରାନ୍ ଲେବ୍‌ଦେବ୍‌ଙ୍କ ପ୍ରଶ୍ନର କିଛି ଉତ୍ତର ନ ଦେଇ ଗୁଣୁଗୁଣୁ ସ୍ୱରରେ ଗୀତ ଗାଇ ମହାଶୂନ୍ୟଯାନର ଦୁଆର ଖୋଲିବାରେ ବ୍ୟସ୍ତ ।

ପୁଣି ଥରେ ଲେବ୍‌ଦେବ୍ ସେହି ପ୍ରଶ୍ନ ପଚାରିବାରୁ ବଡ଼ ବିରକ୍ତ ହୋଇ ସେ କହିଲେ—ତୁମେ ତ ଦେଖିପାରୁଛ, ଆଉ ପଚାରି ଲାଭ କଣ ?

—ହଁ ଦେଖୁଛି ସତ; କିନ୍ତୁ ସେଇ ଯୁବତୀଟି ପାଖକୁ ଯିବା ପୂର୍ବରୁ ଆଗ ପଛ କିଛି ଭାବିପାରୁଛ କାମରାନ୍ ! ସେ ଯୁବତୀଟି କି ପ୍ରକାର ଯୁବତୀ, ତାର ଉଦ୍ଦେଶ୍ୟ କଣ, ଏସବୁ ନଜାଣି ତା ସହିତ ସମ୍ପର୍କ ସ୍ଥାପନ କରିବା କେତେ ବିପଜ୍ଜନକ, ତା ତ ତୁମେ ଅନୁମାନ କରିପାରୁଥିବ ନିଶ୍ଚୟ ।

ଲେବ୍‌ଦେବ୍‌ଙ୍କ ଭାଗିଦ୍‌ରେ ବଡ଼ ବିରକ୍ତ ହୋଇଉଠିଲେ କାମରାନ୍ । ବିରକ୍ତ ହୋଇ କହିଉଠିଲେ—ସେ ଯୁବତୀଟି କ୍ଷେତ୍ର ନା ଡକାୟତ ଯେ, ତା ସହିତ ସମ୍ପର୍କ ସ୍ଥାପନ ପାଇଁ ଏତେ ସାବଧାନ ହେବାକୁ ପଡ଼ିବ ! ଏତେ ସୁନ୍ଦର ଅଳ୍ପବୟସର ସରଳା ଝିଅଟି ପ୍ରତି ତୁମର କି ସନ୍ଦେହ ହୋଇପାରେ ଲେବ୍‌ଦେବ୍ ?

—ମୁଁ କଣ ଚୋର ଡକାୟତ କଥା କହୁଛି । ସେହି ଝିଅଟିଠାରୁ କଣ ଆଉ କିଛି ବିପଦର ଆଶଙ୍କା ନାହିଁ ?

କାମରାନ୍ ହସି ହସି କହିଲେ—ତୁମ କଥା ଶୁଣି ମୋତେ ହସ ମାଡ଼ୁଛି । ଏତେ ନିରୀହା ଏତେ ସରଳା; ପୁଣି ମହାକାଶରେ ଏକାକିନୀ ଏଇ ଝିଅଟିଠାରୁ ତୁମେ ଆଉ କି ବିପଦ ଆଶଙ୍କା କରିପାର ଲେବ୍‌ଦେବ୍ ? ତୁମେ ତ ଦେଖୁଛ ସେ ଏକାକିନୀ, ସେ ବି ତ ଜାଣିଛି ଆମେ ଏଠାରେ ଏତେଗୁଡ଼ିଏ ଲୋକ; ଏଭଳି ଅବସ୍ଥାରେ ତା'ଠାରୁ ଆମେ କି ବିପଦ ଆଶଙ୍କା କରିବା କହିଲ ?

—ମୁଁ ସେ କଥା କହୁନାହିଁ କାମରାନ୍ ! ମୋର କହିବାର ଉଦ୍ଦେଶ୍ୟ ହେଉଛି, ସେ ଝିଅଟିକୁ ଭଲଭାବରେ ପର୍ଯ୍ୟବେକ୍ଷଣ ନ କରି ମହାଶୂନ୍ୟରେ ତାର ନିକଟବର୍ତ୍ତୀ ହେବା ଉଚିତ କି ? ହୁଏତ ସେ କୌଣସି ଅଜଣା ବିପଦର ମୂର୍ତ୍ତିମନ୍ତ ରୂପ ହୋଇଥାଇପାରେ ।

"ଅଜଣା ବିପଦର ମୂର୍ତ୍ତିମନ୍ତ ରୂପ ?" କାମରାନ୍‌ଙ୍କ ମୁହଁରେ ବିସ୍ମୟର ଭାବ—"ତୁମେ ଯେ କଣ କହିବାକୁ ଚାହୁଁଛ, ମୁଁ ବୁଝିପାରୁନି ଲେବ୍‌ଦେବ୍ ! ଏହା କହୁଁ କହୁଁ କାମରାନ୍ ଦୁଆର ଖୋଲିବାକୁ ଉଦ୍ୟତ ହେଉଥିଲେ ।

—ତୁମେ ଭୁଲିଯାଉଛ କାମରାନ୍ ! ମହାଶୂନ୍ୟରେ ଯେକୌଣସି ଲୋକକୁ ଦେଖିଲେ ଆମର ଆଗେ ତା ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ତଦନ୍ତ କରିବା ଦରକାର । ଭଲଭାବରେ ତଦନ୍ତ ନ କରି ଆମେ କୌଣସି ଆଗନ୍ତୁକ ସହିତ ସମ୍ପର୍କସ୍ଥାପନ କରିବା ଏକାନ୍ତ ଅନୁଚିତ ।

—ଆଉ କି ତଦନ୍ତ ଆବଶ୍ୟକ ଏଠି ? ମୁଁ ବୁଝିପାରୁନି ଲେବ୍‌ଦେବ୍ ! ସେ ଯୁବତୀଟି ସମ୍ପର୍କରେ ଆମେ ସବୁ କଥା ତ ଜାଣିସାରିଲେଣି । ସେ କେଉଁଠୁ ଆସିଛି, କେଉଁଠାକୁ ଯାଉଛି, ତାର ମହାଶୂନ୍ୟଯାତ୍ରାର ଉଦ୍ଦେଶ୍ୟ କଣ, ସବୁ ଜାଣିସାରିବା ପରେ ଆଉ ଯେ କି ତଦନ୍ତ ଦରକାର, ମୁଁ ବୁଝିବାକୁ ଅକ୍ଷମ ଲେବ୍‌ଦେବ୍ !

ଯୁବତୀଟି ଯଦି କୌଣସି ପ୍ରତିଗ୍ରହର ମଣିଷ ହୋଇଥାଏ, ସେଭଳି ସ୍ଥଳେ ତା ସହିତ ମିଳାମିଶା କରିବା ବିପଜ୍ଜନକ ନୁହେଁ କି ?—ଲେବ୍‌ଦେବ୍‌ଙ୍କ ଭାଷାରେ କଠୋରତାର ଚିହ୍ନ ।

—ତୁମେ କଣ ଭାବୁଛ ଲେବ୍‌ଦେବ୍, ମୁଁ ସେହି ଆଶଙ୍କାଟି ସମ୍ପର୍କରେ ଅନୁସନ୍ଧାନ ନ କରିଛି ବୋଲି ? ଯେହେତୁ ଯୁବତୀଟି ଆମେ ଯାଉଥିବା ଗ୍ରହକୁ ଯାଉଛି, ସେ ପରିସ୍ଥିତିରେ ତାକୁ ପ୍ରତିଗ୍ରହ-ଜଗତ୍‌ର ଅଧିବାସିନୀ ବୋଲି ଭାବିବା କଣ ପ୍ରମାଦଯୁକ୍ତ ନୁହେଁ ? ସେ ଯଦି ପ୍ରତିଗ୍ରହଜଗତ୍‌ର ତରୁଣୀ ହୋଇଥାନ୍ତା, ତେବେ ସେ ଆମେ ଯାଉଥିବା ଗ୍ରହକୁ ଯାଆନ୍ତା ନାହିଁ । ଆମ ଅଭିପ୍ରେତ 'କେ-ଏମ୍-ବି-୧୧' ଗ୍ରହ ତ ପ୍ରତିଗ୍ରହ ନୁହେଁ ? ତେଣୁ ସେଭଳି ଅବସ୍ଥାରେ ତାକୁ ପ୍ରତିବସ୍ତୁଜଗତ୍‌ର ନାରୀ ବୋଲି ଭାବିବାରେ କି ଯୁକ୍ତିଯୁକ୍ତତା ଅଛି ?

କାମରାନ୍‌ଙ୍କ କଥାରେ ଲେବଦେବ୍ ନିରୁତ୍ତର ହେଲେ ତାଙ୍କ ମନ ମୋଟେ ମାନିବାକୁ ନାହିଁ । ତାଙ୍କର ମତ ଯୁବତୀଟି ପ୍ରତିବସ୍ତୁଜଗତ୍‌ର ନାରୀ ନୁହେଁ ବୋଲି ସ୍ପଷ୍ଟଭାବରେ ନ ଜାଣିଲି ପର୍ଯ୍ୟନ୍ତ ତା ସହିତ ସମ୍ପର୍କ ସ୍ଥାପନ କରିବା ମୋଟେ ଉଚିତ ନୁହେଁ । ମାତ୍ର ଦଳପତି କାମରାନ୍ ସେ ପ୍ରସ୍ତାବ ଗ୍ରହଣ କରିବାକୁ ମୋଟେ ରାଜି ନୁହନ୍ତି ।

ମହାଶୂନ୍ୟଯାନର ଦୁଆର ଖୋଲୁ ଖୋଲୁ କାମରାନ୍ କହିଲେ—ତୁମେ ସେଥିପାଇଁ ଚିନ୍ତା କରନି ଲେବ୍‌ଦେବ୍ ! ମୁଁ ଅଳ୍ପ ସମୟ ପାଇଁ ମାତ୍ର ବାହାରକୁ ଯାଉଛି; ସଙ୍ଗେ ସଙ୍ଗେ ଫେରିଆସିବି । ମୋ ଅନୁପସ୍ଥିତିରେ ତୁମେ ଏହି ଦଳର ଦଳପତି ହେବ ।"

ଏହା କହୁଁ କହୁଁ ମହାଶୂନ୍ୟଯାନର ଝରକା ଦେଇ ସେ ମହାଶୂନ୍ୟର ଘନ ଅନ୍ଧକାର ଭିତରକୁ ଡେଇଁପଡ଼ିଲେ । ନିଜ ପୋଷାକ ସହିତ ଲାଗିଥିବା ନାନାଦି ଯନ୍ତ୍ରପାତି ସାହାଯ୍ୟରେ ବାହି ବାହି ସେ ଯୁବତୀଟି ଆଡ଼କୁ ଧାବମାନ ହେଲେ । ବାତାୟନ ଦେଇ ଲକ୍ଷ୍ୟ କରୁଥିଲେ ସହକାରୀ ଲେବ୍‌ଦେବ୍ ଓ ତାଙ୍କ ଦଳ । ଏକ ଅଜଣା ବିପଦର ଆଶଙ୍କା କରି ସେମାନେ ଥରକୁ ଥର ଶିହରି ଉଠୁଥାନ୍ତି ।

ଅଦୂରରେ ଯୁବତୀଟି କ୍ରୀଡ଼ାରତ । ମହାଶୂନ୍ୟଯାନଠାରୁ ଅଳ୍ପ ଦୂରରେ ସେ ମହାଶୂନ୍ୟରେ ପହଁରି ପହଁରି ଖେଳିବାରେ ଲାଗିଛି । ମନେହେଉଥାଏ, ସତେ ଯେମିତି ସେ ଏହି ଧରଣର କ୍ରୀଡ଼ାରେ ଧୁରନ୍ଧର ଓ ମହାଶୂନ୍ୟ ଭିତରେ ବହୁବାର ଖେଳି ସେ ଭୟଶୂନ୍ୟ

ହୋଇଯାଇଛି । ମହାଶୂନ୍ୟର ଗୃଢ଼ଆଉ ଘନ ଅନ୍ଧକାରରେ ଗ୍ରହ ହେଲାବେଳେ କେଡ୍-ଏଇଚ୍-ଏକ୍ସ-୧୯ ସୂର୍ଯ୍ୟର ଉଜ୍ଜ୍ୱଳ ଆଲୋକରେ ସେହି ଅଞ୍ଚଳ ବେଶ୍ ଉଦ୍ଭାସିତ । ଚନ୍ଦ୍ରଲୋକରେ ଆଲୋକ ବିକିରଣ କରୁଥିବା ସୂର୍ଯ୍ୟ ବହୁ ଦୂରରୁ ଏକ କ୍ଷୁଦ୍ର ଦୀପ୍ତିହୀନ ତାରକା ଭାବରେ ମହାଶୂନ୍ୟର କେଉଁ କୋଣରେ ଲୁଚିଗଲାଣି । ମନେହୁଏ ଏହି ଅଞ୍ଚଳର ସୂର୍ଯ୍ୟର ମହମାମୟ ଦୀପ୍ତିରେ ଲଜ୍ଜିତ ହୋଇ ଚନ୍ଦ୍ରଲୋକର ସୂର୍ଯ୍ୟ ଆତ୍ମଗୋପନ କରିଛି । ମହାଶୂନ୍ୟର ଏହି ଅଞ୍ଚଳକୁ ଅନାଇଲାବେଳକୁ ଘନ ଅନ୍ଧକାର ଭିତରେ ଅସଂଖ୍ୟ ତାରା ବେଶ୍ ଜୁଳୁ ଜୁଳୁ ଦିଶୁଥାନ୍ତି । ସେହି ଅନ୍ଧକାର ଭିତରେ ସୂର୍ଯ୍ୟର ଆଲୋକରେ ଉଦ୍ଭାସିତ ମାତ୍ର ଛଟୋଟି ଜିନିଷ—ଯୁବତୀଟି, ତାର ମହାଶୂନ୍ୟଯାନ ଓ ଯୁବତୀଟି ଆଡ଼କୁ ଆସୁଥିବା କାମରାନ୍ । ଅନ୍ଧକାର ଭିତରେ ଏମାନଙ୍କୁ ଆଲୋକଦ୍ୱାରା ଉଦ୍ଭାସିତ ଦେଖି ଲେବ୍‌ଦେବ୍ ଓ ତାଙ୍କ ଦଳ ଚଞ୍ଚଳ ହୋଇ ଉଠିଥାନ୍ତି । ଝରକା ଦେଇ ସେମାନେ ଲକ୍ଷ୍ୟ କରୁଥାନ୍ତି କାମରାନ୍ କେମିତି ବେଶ୍ ଜୋର୍‌ରେ ଯୁବତୀଟି ଆଡ଼କୁ ଆଗେଇଚାଲିଛନ୍ତି । ଯୁବତୀଟି କ୍ରୀଡ଼ାରତ ଥିଲାବେଳେ ତାର ଯୁବତୀସୁଲଭ ଆକର୍ଷଣୀୟ ଭଙ୍ଗୀରେ ବେଶ୍ ସୁନ୍ଦର ଓ ଦୀପ୍ତିମୟ ଦିଶୁଥାଏ । ଦେଖିଲେ ମନେହେବ ଯେ କେହି ଲୋକ ତା ଆଡ଼କୁ ଆକୃଷ୍ଟ ହୋଇପଡ଼ିବା ବିଚିତ୍ର ନୁହେଁ ।

ଯୁବତୀଟି ଆଡ଼କୁ କାମରାନ୍ ଯେତେ ଆଗଉଥାନ୍ତି, ଯୁବତୀଟି ତାଙ୍କୁ ଆହୁରି ସୁନ୍ଦର ଓ ଆକର୍ଷଣୀୟ ଦିଶୁଥାଏ । ଯୁବତୀଟି ଯେ ତାଙ୍କ ସହିତ ମିଳିତ ହେବାକୁ ଆପତ୍ତି କରିବ, ସେ କଥା ତାଙ୍କ ଭାବନାରେ ସ୍ଥାନ ପାଇ ନ ଥାଏ । ସେ ଯୁବତୀଟି ପ୍ରତି ଯେପରି ଆକୃଷ୍ଟ, ଯୁବତୀଟି ଯେ ତାଙ୍କୁ ପାଇବା ପାଇଁ ସେପରି ପାଗଳ, ଏହାର କିଛି ପ୍ରମାଣ ନ ପାଇ ମଧ୍ୟ ସେ ମନେ ମନେ ତାହା ସତ ବୋଲି ଧରିନେଇଥାନ୍ତି । ଯୁବତୀଟିର ରୂପ, ଆକର୍ଷଣୀୟ କ୍ରୀଡ଼ାଭଙ୍ଗୀ, ହସ୍ୟଭରା ବଦନ, କଟାକ୍ଷ ଚାହାଣି ସତେ ଯେମିତି କାମରାନ୍‌ଙ୍କୁ ସଙ୍କେତ ଦେଉଥାଏ ଯେ ସେ ସେହି ମଧୁମୟ ମୁହୂର୍ତ୍ତିଟିର ଅପେକ୍ଷାରେ ରହିଛି ।

ପାଖକୁ ପାଖ କିଛି ସମୟ ସନ୍ତରଣ କରିବା ପରେ ଦୁହେଁ ଦୁହିଙ୍କୁ ବେଶ୍ ଭଲଭାବରେ ନିରୀକ୍ଷଣ କରିବାର ସୁବିଧା ପାଇଲେ । ଯୁବତୀଟିର ସୌନ୍ଦର୍ଯ୍ୟରେ କାମରାନ୍ ଯେତିକି ମୁଗ୍‌ଧ ହେଲେ, ଯୁବତୀଟି କାମରାନଙ୍କୁ ନିକଟରେ ଦେଖି କମ୍ ମୁଗ୍‌ଧ ହେଲାଭଳି ଜଣାପଡ଼ିଲା ନାହିଁ । ସେମାନେ ଉପଲବ୍‌ଧି କଲେ, ସତେ ଯେପରି ପରସ୍ପର ପରସ୍ପରପ୍ରତି ଆକୃଷ୍ଟ ହୋଇ-ପଡ଼ୁଛନ୍ତି । ଯୁବତୀକୁ ଆହୁରି ନିକଟରେ ପାଇବାପାଇଁ କାମରାନ୍ ବ୍ୟସ୍ତ ହୋଇଉଠୁଥାନ୍ତି; କିନ୍ତୁ ବଡ଼ ବିଚିତ୍ର ଯେ ସେ ଯେତେ ପାଖେଇବାକୁ ଚେଷ୍ଟା କଲେ ମଧ୍ୟ ଯୁବତୀଟି ତାଙ୍କଠାରୁ ଦୂରେଇଯାଉଥାଏ । ବାରମ୍ବାର ଏହା ଘଟିବାର ଦେଖି କାମରାନ୍ ବିସ୍ମିତ ହୋଇଯାଉଥାନ୍ତି ଓ ତାଙ୍କ ମନ ଭିତରେ ଠିଆହେଉଥାଏ ସନ୍ଦେହର ଏକ ମୂର୍ତ୍ତିମନ୍ତ ଛାୟା । ଏ କଣ ହେଉଛି ତାଙ୍କର ? ଯୁବତୀଟି ତାଙ୍କ ମସ୍ତିଷ୍କର ଭ୍ରମଜନିତ କଳ୍ପନା ନୁହେଁ ତ ! ମହାଶୂନ୍ୟର ମରୀଚିକା ଭାବରେ ଯୁବତୀଟି ତାଙ୍କ ଆଖିଆଗରେ ଦେଖାଦେଇନାହିଁ ତ ! ସେ ଯଦି ବାସ୍ତବ

ହୋଇଥାଏ, ତେବେ ତାଙ୍କର ଏତେ ପାଖରେ ରହି ଏତେ ଦୂରରେ ରହିଲା ଭଲ ଲାଗୁଛି କାହିଁକି ? କାମରାନ୍ ଏପଟ-ସେପଟ ହୋଇ ଯୁବତୀଟିକୁ ଧରିବାକୁ ଯେତେ ଚେଷ୍ଟା କରୁଥାନ୍ତି, ଯୁବତୀଟି ତାଙ୍କଠାରୁ ସେତେ ଦୂରେଇଯାଉଥାଏ । କାମରାନ୍ ଓ ଯୁବତୀଟିର ଏହି ମହାଶୂନ୍ୟ-କ୍ରୀଡ଼ା ଦେଖିଲେ ଯେ-କେହି ଲୋକ ଧାରଣା କରିବ ଯେ, ଯୁବତୀଟି କାମରାନ୍‌ଙ୍କୁ ଖେଳାଇବାକୁ ଚେଷ୍ଟା କରୁଛି । ଯୁବତୀଟି ଜାଣିସାରିଲାଣି କାମରାନ୍ ତା' ପ୍ରତି ଆସକ୍ତ; ତେଣୁ କାମରାନ୍‌ଙ୍କ ହାତରେ ଧରାଦେବା ପୂର୍ବରୁ ତାଙ୍କୁ ଏମିତି ନ ଖେଳାଇବ କାହିଁକି ? କାମରାନ୍ ଯୁବତୀ ଦେହର ସ୍ପର୍ଶ-ସୁଖରୁ ବଞ୍ଚିତ ହେଉଥିବାରୁ ମନ ଭିତରେ ବ୍ୟଥିତ ହୋଇ ଉଠୁଥାନ୍ତି । ତାଙ୍କ ମନ ଭିତରର ଅସ୍ଥିରତା ବେଳକୁବେଳ ଏତେ ପ୍ରବଳ ହେଲା ଯେ ଯୁବତୀଟିକୁ ଧରିବାପାଇଁ ତା' ଉପରକୁ ଲମ୍ଫ ପ୍ରଦାନ କରିବାପାଇଁ ସେ ଠିକ୍ କଲେ ।

କିନ୍ତୁ କି ବିଚିତ୍ର ! ଲମ୍ଫ ଦେଇ ଯୁବତୀଟିକୁ ଧରିବାପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ଯୁବତୀଟି ପୂର୍ବଭଳି ଧରାଦେବାକୁ ନାହିଁ । ମନ ଭିତରେ ତାଙ୍କର ପ୍ରଶ୍ନର ଝଡ଼—ଯୁବତୀଟି ମାୟା ନୁହେଁ ତ ! ମନର ଏକ ଭ୍ରାନ୍ତି ଯୋଗୁଁ ସେ ଏହି ମରୀଚିକା ଦେଖୁନାହାନ୍ତି ତ ! ଯୁବତୀଟି ଯଦି ମାୟା ନୁହେଁ, ତେବେ ସେ ତାଙ୍କଠାରୁ ଖସିଯାଉଛି କେମିତି ? ପର-ମୁହୂର୍ତ୍ତରେ ପୁଣି ଚିନ୍ତା ଜାଗିଉଠିଲା—ଏସବୁ ସ୍ୱପ୍ନ ନୁହେଁ ତ ?

ନା, ନା, ସେ ତ ସ୍ୱପ୍ନ ଦେଖୁନାହାନ୍ତି । ସେ ତ ରକ୍ତମାଂସର ଶରୀର ନେଇ ମହାଶୂନ୍ୟ ଭିତରକୁ ଆସିଛନ୍ତି । ତାଙ୍କ ସାମନାରେ ରକ୍ତ-ମାଂସ ତିଆରି ଶରୀରର ଏକ ବାସ୍ତବ ଯୁବତୀ —ମହାଶୂନ୍ୟରେ ଗତିଶୀଳ ଏକ ମହାକାଶଯାନରୁ ଆସି ମହାଶୂନ୍ୟରେ କ୍ରୀଡ଼ାରତ । ଏସବୁ ତ ସ୍ୱପ୍ନ ହୋଇପାରେନା ।

କାମରାନ୍ ପୁଣି ଥରେ ଚେଷ୍ଟା କଲେ । ମନେହେଲା ଯୁବତୀଟି ତାଙ୍କ ଆଗରୁ ଖୁବ୍ ଦକ୍ଷତାର ସହିତ ଖସିଯାଉଛି; ସତେ ଯେମିତି ତା'ର ଧରାଦେବାକୁ ମୋଟେ ଇଚ୍ଛା ନାହିଁ । ସାମାନ୍ୟ ତରୁଣୀଟିଏ, ଧରାଦେବାର ସବୁ ସୁଯୋଗ ଦେଇ ପୁଣି ଖସିଯାଉଛି କାହିଁକି ? ତାଙ୍କର ମନେହେଉଥାଏ, ଉଷ୍ମ ମାଂସପେଶୀଗୁଡ଼ାକ ଯେମିତି ଶୀତଳ ହୋଇ ଦୁର୍ବଳ ହୋଇପଡ଼ୁଛି; ସ୍ନାୟୁଗୁଡ଼ିକ ଆଉ କାର୍ଯ୍ୟ କରିବାକୁ ଅକ୍ଷମ । ସେ ପୁଣି ମନ ଭିତରେ ଦମ୍ଭ ଓ ବାହୁରେ ବଳ ସଞ୍ଚୟ କରି ଆଉ ଏକ ଲମ୍ଫ ପ୍ରଦାନ କଲେ ଯୁବତୀଟି ଉପରକୁ ତାକୁ ଧରିନେବା ପାଇଁ; କିନ୍ତୁ ପୁଣି ପୂର୍ବପରି ବିଫଳ ହେଲେ ।

କାମରାନ୍ ଓ ଯୁବତୀର ମହାଶୂନ୍ୟ ସନ୍ତରଣ କ୍ରୀଡ଼ାକୁ ଖୁବ୍ ବ୍ୟଗ୍ରତାର ସହିତ ଲକ୍ଷ୍ୟ କରୁଥିଲେ ସହକାରୀ ଲେବ୍‌ଦେବ୍ ମହାକାଶଯାନରୁ । କାମରାନ୍ କେମିତି ଯୁବତୀଟିକୁ ଧରିବାପାଇଁ ଚେଷ୍ଟା କରୁଛନ୍ତି, ଯୁବତୀଟି ପ୍ରତିଥର କେମିତି ଖସିଯାଉଛି, ଧରାଦେଉନି; ଅଥଚ ପରମୁହୂର୍ତ୍ତରେ ହସି ହସି ପୁଣି ଇସାରା ଦେଉଛି ତା'ର ପାଖକୁ ଯିବାକୁ, ତାହା ଦେଖି ଲେବ୍‌ଦେବ୍ ତଟସ୍ଥ । ପ୍ରଥମେ ପ୍ରଥମେ ଭାବୁଥିଲେ, ଯୁବତୀଟି କାମରାନ୍‌ଙ୍କୁ

ଖେଳାଇବାକୁ ଯାଇ ଧରାଦେଉନାହିଁ; କିନ୍ତୁ ପରମୁହୂର୍ତ୍ତରେ କାହିଁକି ତାଙ୍କର ମନ ଏଥିରେ ମାନଲା ନାହିଁ । ଯୁବତୀଟିର ମୁଖମଣ୍ଡଳକୁ ସେ ବାରମ୍ବାର ଲକ୍ଷ୍ୟକରି ଜାଣିପାରିଲେ ଯେ, ଯୁବତୀଟି ଇଚ୍ଛାକରି କାମରାନ୍‌ଙ୍କୁ ଏମିତିଭାବରେ ଖେଳାଉ ନାହିଁ । ଯୁବତୀଙ୍କର ଧରାଦେବାକୁ ଇଚ୍ଛା ଅଛି; କିନ୍ତୁ କ'ଣ ଗୋଟାଏ କାରଣ ହେତୁ ଦୁହେଁ, ଦୁହିଁଙ୍କର ନିକଟତର ହୋଇ-ପାରୁନାହାନ୍ତି । କାମରାନ୍ ଯୁବତୀଟି ଉପରକୁ ଲମ୍ଫ ଦେଲାବେଳକୁ ଯୁବତୀଟି ମଧ୍ୟ ଚେଷ୍ଟା କରୁଥାଏ କାମରାନ୍‌ଙ୍କ ପାଖାପାଖି ହେବା ପାଇଁ । ସେ ଯଦି ପ୍ରକୃତରେ କାମରାନ୍‌ଙ୍କୁ ଖେଳାଇବାକୁ ଚେଷ୍ଟା କରୁଥାନ୍ତା, ତେବେ କାମରାନ୍ ତା' ଉପରକୁ ଲମ୍ଫ ଦେଲାବେଳକୁ ସେ ଖସିଯାଇ ଦୂରେଇଯିବାକୁ ଚେଷ୍ଟା କରନ୍ତା ! ତା' ପରିବର୍ତ୍ତରେ ସେ କାମରାନ୍‌ଙ୍କର ଆହୁରି ନିକଟତର ହେବାକୁ ଚେଷ୍ଟା କରନ୍ତା କାହିଁକି ? ସମ୍ଭବତଃ ଦୁଇଜଣଙ୍କ ଭିତରେ ନିକଟତର ହେବାରେ ବାଧା ଦେବା ପାଇଁ ଆଉ କୌଣସି ଅଦୃଶ୍ୟ ଶକ୍ତି କାର୍ଯ୍ୟ କରୁଛି । ତା' ନ ହୋଇଥିଲେ ଦୁହେଁ ଚେଷ୍ଟା କରି ମଧ୍ୟ ପରସ୍ପରକୁ ଧରିପାରୁନାହାନ୍ତି କାହିଁକି ? ଦେଖିଦେଖୁଁବେଳେ ଏହି ଘଟଣାଟି ଲେବ୍‌ଦେବ୍‌ଙ୍କ ନିକଟରେ ଆହୁରି ରହସ୍ୟମୟ ହୋଇ-ଉଠିଲା । ସେ ଏହାର କାରଣ କ'ଣ ହୋଇପାରେ ନିର୍ଣ୍ଣୟ କରିବାକୁ କ୍ଷମ ହେଲେ ନାହିଁ । ସେ ଦୁହିଁଙ୍କର ଏଭଳି କ୍ରୀଡ଼ା ଦେଖୁଛନ୍ତି, ସନ୍ଦେହଗ୍ରସ୍ତ ମନ ତାଙ୍କର ଧନ୍ଦି ହେଉଛି ଏହି ରହସ୍ୟ ନେଇ—ହଠାତ୍ ତାଙ୍କ ମୁଣ୍ଡରେ ଧାରଣା ପଶିଲା—ଯୁବତୀଟି ପ୍ରତିବସ୍ତୁଜଗତ୍‌ର ନୁହେଁ ତ ? ବସ୍ତୁ ପ୍ରତିବସ୍ତୁକୁ ଆକର୍ଷଣ କରିବା ପରିବର୍ତ୍ତରେ ବିକର୍ଷଣ କରେ; ତେଣୁ ଯୁବତୀଟି ଯଦି ପ୍ରତିବସ୍ତୁଜଗତ୍‌ର ହୋଇଥାଏ, ତେବେ କାମରାନ୍ ବସ୍ତୁଜଗତ୍‌ର ପୁରୁଷ ହୋଇଥିବାରୁ ଦୁଇଜଣଙ୍କ ଭିତରେ ବିକର୍ଷଣ-କ୍ରିୟା ଦେଖାଦେବା ସ୍ୱାଭାବିକ । ମନଭିତରର ଆକର୍ଷଣ ଯେତେ ଦୃଢ଼ ହେଲେ ମଧ୍ୟ ଶରୀର-ଶରୀରର ବିକର୍ଷଣ ସେ ଦୁହିଁଙ୍କୁ ସହଜରେ ମିଳିତ ହେବାର ସୁଯୋଗ ଦେବନାହିଁ ।

ଏହି ନୂତନ ଚିନ୍ତାରେ ଲେବ୍‌ଦେବ୍ ଚମକି ଉଠିଲେ । ତାଙ୍କ ଶରୀରରେ କ୍ଷଣକ ପାଇଁ ଏକ ବିଦ୍ୟୁତ୍ ଚମକ ଖେଳିଗଲା । ମନଭିତରେ ଆଶଙ୍କାର ଏକ ପ୍ରବଳ ଝଡ଼—ତା' ହେଲେ କ'ଣ ଏ ଯୁବତୀଟି ପ୍ରତିବସ୍ତୁଜଗତ୍‌ର ନାରୀ ? ସର୍ବନାଶ ! ତା'ହେଲେ କାମରାନ୍‌ଙ୍କ ଧ୍ୱଂସ ଅନିବାର୍ଯ୍ୟ—ତାଙ୍କ ସହ ଦୁଇଟିଯାକ ମହାଶୂନ୍ୟଯାନ ଓ ଆମ ସମସ୍ତଙ୍କର ବି ।

ଲେବ୍‌ଦେବ୍ ପାଗଳଙ୍କ ଭଳି ଇଞ୍ଜିନ୍ ରୁମ୍‌କୁ ଦୌଡ଼ିଲେ । ଦେଖିଲେ ମହାଶୂନ୍ୟକୁ ଯିବା ପୂର୍ବରୁ କାମରାନ୍ ସତର୍କ-ଘଣ୍ଟିଟିକୁ ଓ ବିପଦ-ସଙ୍କେତ ଯନ୍ତ୍ରଟିକୁ ଅଚଳ କରିଦେଇ ଯାଇଛନ୍ତି । ସେ ସଙ୍ଗେ ସଙ୍ଗେ ଯନ୍ତ୍ର ଦୁଇଟିକୁ ସଜାଡ଼ିବାରେ ଲାଗିଲେ । ଯନ୍ତ୍ର ଦୁଇଟି ସଜାଡ଼ିଦେବା ସଙ୍ଗେ ସଙ୍ଗେ ପ୍ରଚଣ୍ଡ ଶବ୍ଦ କରି ସତର୍କ-ଘଣ୍ଟି ବାଜିଉଠିଲା ମହାଶୂନ୍ୟଯାନ ଭିତରେ । ଘଣ୍ଟିର ପ୍ରବଳ ଶବ୍ଦରେ ଭୟଭୀତ ହୋଇ ମହାଶୂନ୍ୟଯାନର ଅନ୍ୟ ସହଯାତ୍ରୀ-ମାନେ ଲେବ୍‌ଦେବ୍‌ଙ୍କଠାକୁ ଦୌଡ଼ିଆସିଲେ । ବିପଦ-ସଙ୍କେତ ଯନ୍ତ୍ରକୁ ଦେଖି ସମସ୍ତେ ତଟସ୍ଥ । ସେମାନେ ପ୍ରତିବସ୍ତୁରୁ ତିଆରି କୌଣସି ପଦାର୍ଥର ଖୁବ୍ ପାଖାପାଖି ଆସିଗଲେଣି, ଏହା

ନିଶ୍ଚିତ ଓ କୌଣସି ମୁହୂର୍ତ୍ତରେ ଧ୍ୱଂସ ପାଇଯିବାର ସମ୍ଭାବନା ରହିଛି—ପ୍ରତିବସ୍ତୁଠାରୁ ଦୂରେଇ ନଗଲେ ରକ୍ଷା ନାହିଁ ।

ପ୍ରକ୍ଷେପକ ଯନ୍ତ୍ରକୁ ମହାଶୂନ୍ୟ ଭିତରକୁ ଦେଖାଇ ଜାଣିଲେ ଯେ ଅଦୂରସ୍ଥ ମହାଶୂନ୍ୟ-ଯାନଟି ଓ ମହାଶୂନ୍ୟରେ କ୍ରୀଡ଼ାରତ ଯୁବତୀଟି ପୁରାପୁରି ପ୍ରତିବସ୍ତୁରୁ ତିଆରି । ସେମାନଙ୍କ ସହିତ ଯଦି କୌଣସି ପ୍ରକାରରେ ସ୍ପର୍ଶ ଘଟେ, ତେବେ ସମସ୍ତେ ବିସ୍ଫୋରିତ ହୋଇଯିବେ ।

କ'ଣ ଯେ କରିବେ ଲେବ୍‌ଦେବ୍ ଠିକ୍ କରିପାରିଲେ ନାହିଁ । ସଙ୍ଗେ ସଙ୍ଗେ ସହଯାତ୍ରୀ ଦୁଇଜଣଙ୍କୁ ନିର୍ଦ୍ଦେଶ ଦେଇ ପଠାଇଲେ ମହାଶୂନ୍ୟ ଭିତରକୁ କାମିରାନ୍‌ଙ୍କୁ ଫେରାଇ ଆଣିବାପାଇଁ । ବେତାର ଜରିଆରେ ସେ କାମିରାନ୍‌ଙ୍କୁ ସାବଧାନ ବାଣୀ ଶୁଣାଇବାକୁ ଲାଗିଲେ ଯୁବତୀଟି ସମ୍ପର୍କରେ । ସେ ତାଙ୍କୁ ବାରମ୍ବାର ଚେତାଇବାକୁ ଲାଗିଲେ ଯେ ଯୁବତୀଟି ସାଧାରଣ ଯୁବତୀ ନୁହେଁ, ସେ ପ୍ରତିବସ୍ତୁଜଗତର ନାରୀ; ଅତ୍ୟନ୍ତ ମାରାତ୍ମକ । ତାକୁ ସ୍ପର୍ଶ କରିବାରୁ ନିବୃତ୍ତ ହୁଅନ୍ତୁ; ନହେଲେ ସମସ୍ତେ ଏଠି ଧ୍ୱଂସ ପାଇଯିବେ; କିନ୍ତୁ କାମିରାନ୍ ସେତେବେଳେ ଲେବ୍‌ଦେବ୍‌ଙ୍କ ବେତାର ତାଗିଦ ଶୁଣିବା ଅବସ୍ଥାରେ ନଥିଲେ । ଲେବ୍‌ଦେବ ତାଙ୍କୁ ବାଜେକଥା କହି ବିରକ୍ତ କରୁଛନ୍ତି ଭାବି ସେହି ବିରକ୍ତିରୁ ରକ୍ଷା ପାଇଁ ସେ ନିଜ ବେତାରଯନ୍ତ୍ରକୁ କାଟିଦେଲେ । ଯୁବତୀଟିକୁ ପାଇବାପାଇଁ କାମିରାନ୍ ସେତେବେଳେ ଏତେ ପାଗଳ ହୋଇଉଠିଥିଲେ ଯେ, ଯୁବତୀଟିକୁ ପାଇବା ଛଡ଼ା ଅନ୍ୟ କୌଣସି ଚିନ୍ତା ମନ ଭିତରେ ଆଶ୍ରୟ ଦେବାକୁ ସେ ଚାହୁଁ ନଥିଲେ ।

ଲେବ୍‌ଦେବ୍ ବେତାର ଜରିଆରେ ଯେ ତ ସାବଧାନ ବାଣୀ କାମିରାନ୍‌ଙ୍କୁ ଶୁଣାଇବାକୁ ଚେଷ୍ଟାକଲେ ହେଁ କାମିରାନ୍‌ଙ୍କଠାରେ କିଛି ପହଞ୍ଚିବାକୁ ନାହିଁ; ସବୁ କିଛି ମହାଶୂନ୍ୟରେ ମିଳାଇଯାଉଛି । ଯୁବତୀଟିକୁ ଧରିବା ପାଇଁ କାମିରାନ୍ ବେଳକୁବେଳ ଅଧିକ ଚଞ୍ଚଳ ହୋଇଉଠୁଥାନ୍ତି । ସାମାନ୍ୟ ଗୋଟାଏ ଝିଅକୁ ସେ ଧରିପାରୁନାହାନ୍ତି, ଏହି ଅପମାନ ତାଙ୍କୁ ଆଘାତ ଦେବାକୁ ଆରମ୍ଭ କରିଥାଏ; ତେଣୁ କାମିରାନ୍ ସେତେବେଳେ ହୃଦୟଙ୍ଗମ କରିବାକୁ ଅକ୍ଷମ ଯେ ଯୁବତୀଟି ଇଚ୍ଛାକରି ତାଙ୍କଠାରୁ ଦୂରେଇଯାଉନାହିଁ । ସେହି ଯୁବତୀଟିର ପାଖକୁ ଗଲାକ୍ଷଣି ବସ୍ତୁ ଓ ପ୍ରତିବସ୍ତୁର ବିକର୍ଷଣ ପ୍ରକ୍ରିୟା ହେତୁ ଯେ ମନକୁମନ ତାଙ୍କଠାରୁ ଦୂରେଇଯାଉଛି; ଏହା ତାଙ୍କ ମୁଣ୍ଡରେ ପଶୁନଥାଏ ।

ନିଜ ଶାରୀରିକ ଶକ୍ତି ଉପରୁ କାମିରାନ୍‌ଙ୍କର ଯେତେବେଳେ ବିଶ୍ୱାସ କମିଆସିଲା, ସେ ଠିକ୍ କଲେ ଦୈହିକ ଚେଷ୍ଟା ଫଳରେ ସେ ଯୁବତୀଟିକୁ ଧରିପାରିବେ ନାହିଁ । ଏଥର ସେ ନିଜ ପୋଷାକ ସହିତ ସଂଶ୍ଳିଷ୍ଟ ଯନ୍ତ୍ରର ସାହାଯ୍ୟ ନେବାକୁ ଚାହିଁଲେ । ସେ ଠିକ୍ କଲେ, ଏଥର ଏତେ ଜୋର୍‌ରେ ଯୁବତୀଟି ଆଡ଼କୁ ଧାବମାନ ହେବେ ଯେ, ଯୁବତୀଟି ଆଉ ତାଙ୍କଠାରୁ ଖସିଯିବାକୁ ବେଳ ପାଇବ ନାହିଁ; ଫଳରେ ବାଧ୍ୟହୋଇ ଧରାଦେବ ତାଙ୍କ ଠାରେ । ତା'ପରେ ଯାହା ଘଟିବ ସେହି ମଧୁର କଳ୍ପନାରେ କାମିରାନ୍ ଉଲ୍ଲସି ଉଠିଲେ ।

କାମିରାନ୍ ଏଥର ଯନ୍ତ୍ର ସାହାଯ୍ୟରେ ଯୁବତୀଟିର ନିକଟବର୍ତ୍ତୀ ହେବାକୁ ଉଦ୍ୟମ

କରୁଥିବା ନିରୀକ୍ଷଣ କରିପାରିଲେ ତାଙ୍କ ସହକର୍ମୀ ଲେବ୍‌ଦେବ୍ । ସେ ଦେଖିଲେ, ଆଉ ଅଳ୍ପ ସମୟ ଭିତରେ କାମରାନ୍ ତାଙ୍କର ଶେଷ ଅଭିଯାନ ଆରମ୍ଭ କରିଦେବେ । ତାହେଲେ ଆଉ ରକ୍ଷା ନାହିଁ । ବେତାର ଜରିଆରେ ଯେତେ ତାଗିଦ୍ କଲେହେଁ କାମରାନ୍ ଶୁଣୁନାହାନ୍ତି । ଯେଉଁ ସହକର୍ମୀ ଦୁଇଜଣଙ୍କୁ ତାଙ୍କଠାକୁ ପଠାଇଥିଲେ, ସେମାନେ କାମରାନ୍‌ଙ୍କ ପାଖରେ ପହଞ୍ଚି ପାରିନାହାନ୍ତି; ପହଞ୍ଚିବାକୁ ଆହୁରି ଢେର୍ ସମୟ ବାକି । କାମରାନ୍ ଯେତେବେଳେ ବେଶ୍ ସଜବାଜ ହେଉଥିଲେ, ଲେବ୍‌ଦେବ୍ ସେତେବେଳେ ମହାଶୂନ୍ୟଯାନରେ ବସି ପ୍ରମାଦ ଗଣୁଥିଲେ ଓ ମନେ ମନେ ଭାବୁଥିଲେ କାମରାନ୍ ତାଙ୍କ ଶେଷ ଚେଷ୍ଟା କରିବା ପୂର୍ବରୁ ସହକର୍ମୀ ଦୁଇଜଣ ତାଙ୍କଠାରେ ପହଞ୍ଚି କାମରାନ୍‌ଙ୍କୁ ପ୍ରବର୍ତ୍ତାଇ ପାରନ୍ତେ କି ! ଥରକୁ ଥର ଲେବ୍‌ଦେବ୍ କାମରାନ୍‌ଙ୍କ ଆଡ଼େ ଓ କାମରାନ୍‌ଙ୍କ ପାଖକୁ ଯାଉଥିବା ସହକର୍ମୀ ଦୁଇଜଣଙ୍କ ଆଡ଼କୁ ଅନାଇ ଶିହରି ଉଠୁଥାନ୍ତି ।

ଶେଷଥର ପାଇଁ ଯେତେବେଳେ ସେ ଦେଖିଲେ ଯେ କାମରାନ୍ ତାଙ୍କର ଶେଷ ଆକ୍ରମଣ ଆରମ୍ଭ କରିବା ଉପରେ ଓ ସହକର୍ମୀ ଦୁଇଜଣ ତାଙ୍କଠାରେ ତାହା ପୂର୍ବରୁ ପହଞ୍ଚିବାର ସମ୍ଭାବନା ନାହିଁ, ତାଙ୍କ ଦେହ ଉପରେ ଶିହରି ଉଠିଲା । କାମରାନ୍ ଯଦି ଯୁବତୀଟିକୁ ଛୁଇଁପକାନ୍ତି, ତେବେ ସେମାନଙ୍କର ଯେ କି ସର୍ବନାଶ ହେବ, ଭାବି ପାଗଳପ୍ରାୟ ହୋଇଉଠିଲେ ଲେବ୍‌ଦେବ ।

ଲେବ୍‌ଦେବ୍ ଏମିତି ଭାବୁଥିଲେଛନ୍ତି, ହଠାତ୍ ମହାଶୂନ୍ୟରେ ଦେଖାଦେଲା ଏକ ବିରାଟ ବିସ୍ଫୋରଣ । ବିସ୍ଫୋରଣର କମ୍ପନରେ ତାଙ୍କ ଯାନ କମ୍ପି ଉଠିଲା ଏବଂ ପରେ ତୀବ୍ର ଏକ ଝଲକର ସହ ଲେବ୍‌ଦେବ୍ ଓ ତାଙ୍କ ଯାନ ମହାଶୂନ୍ୟରୁ ନିଶ୍ଚିହ୍ନ ହୋଇଗଲା । କାମରାନ୍, ସେହି ଯୁବତୀ, ମହାଶୂନ୍ୟରେ କାମରାନ୍‌ଙ୍କଠାକୁ ଯାଉଥିବା ସହକର୍ମୀଦ୍ୱୟ ଓ ମହାଶୂନ୍ୟ-ଯାନ ଦୁଇଟି ସବୁଗୁଡ଼ିକ ମହାଶୂନ୍ୟରୁ ନିଶ୍ଚିହ୍ନ ହୋଇଗଲା ନିମିଷକ ମଧ୍ୟରେ ।

ଏହି ବିରାଟ ବିସ୍ଫୋରଣ ସିରସ୍ ଗ୍ରହାଣୁରେ ଥିବା ଚନ୍ଦ୍ରଲୋକର ଦୂରବୀକ୍ଷଣଯନ୍ତ୍ରର ଏକ ଚଳଚ୍ଚିତ୍ର ଫିଲମ୍ ଉପରେ ମନକୁମନ ଅଙ୍କିତ ହୋଇଯାଇଥିଲା । କାମରାନ୍ ଯେତେବେଳେ ସେହି ଯୁବତୀଟିର ଖୁବ୍ ପାଖକୁ ଆସିବାକୁ ଚେଷ୍ଟାକରୁଥିଲେ, ସେତେବେଳେ ସିରସ୍ ଗ୍ରହାଣୁରେ ଚନ୍ଦ୍ରଲୋକର ବୈଜ୍ଞାନିକମାନେ ଦୂରବୀକ୍ଷଣଯନ୍ତ୍ର ସାହାଯ୍ୟରେ ସେମାନଙ୍କୁ ଲକ୍ଷ୍ୟ କରୁଥିଲେ । ସେହି ଯୁବତୀଟି କାମରାନ୍‌ଙ୍କ ସଂସ୍ପର୍ଶରେ ଆସିଲାକ୍ଷଣି ଏମିତି ଉଭୟେ ବିରାଟ ବିସ୍ଫୋରଣ ସହିତ ଶକ୍ତିରେ ପରିଣତ ହୋଇ ବିଶ୍ୱପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବେ, ଏହା ସେମାନଙ୍କ ଧାରଣାରେ ନଥିଲା । କାମରାନ୍ ଓ ସେହି ଯୁବତୀଟି ସହିତ ଲେବ୍‌ଦେବ୍, ତାଙ୍କ ସହକର୍ମୀ ଏବଂ ମହାଶୂନ୍ୟଯାନ ଏମିତି ଭାବରେ ବିସ୍ଫୋରିତ ହୋଇ ଶକ୍ତିରେ ପରିଣତ ହୋଇଯିବ ବୋଲି ଆଶଙ୍କା କାହାରି ନଥିଲା । ସିରସ୍ ଗ୍ରହାଣୁରୁ ଏହି ବାର୍ତ୍ତା ଯେତେବେଳେ ସାରା ଚନ୍ଦ୍ରଲୋକରେ ପ୍ରସରିତ ହୋଇଗଲା, ଚନ୍ଦ୍ରଲୋକରେ ଗୁଞ୍ଜନ ଖେଳିଗଲା । ସେମାନଙ୍କ ଧ୍ୱଂସର କାରଣ ବିଶଦଭାବରେ ଜାଣିବାପାଇଁ ସମସ୍ତେ ଉତ୍ସୁକ

ହୋଇ ଅନାଇ ରହିଲେ । ଫିଲମ୍ ଉପରେ ଅଙ୍କିତ ହୋଇଥିବା ସେହି ଚଳଚ୍ଚିତ୍ରଗୁଡ଼ାକ ଯେତେବେଳେ ଚନ୍ଦ୍ରଲୋକର ଅଧିବାସୀମାନଙ୍କୁ ଦେଖାଇଦିଆଗଲା, ସେମାନେ କାମରାନ୍‌ଙ୍କ ଭଳି ଦକ୍ଷ ମହାଶୂନ୍ୟଚାରୀଙ୍କ ଦୁର୍ବଳତା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସାମାନ୍ୟ ଏକ ଯୁବତୀ ପ୍ରତି ଆକର୍ଷଣ ଯୋଗୁଁ କାମରାନ୍ ଚନ୍ଦ୍ରମଣ୍ଡଳର ଅଧିବାସୀଙ୍କ ଭବିଷ୍ୟତକୁ ଯେମିତି ଭାବରେ ନଷ୍ଟ କରିଦେଲେ, ସାରା ଚନ୍ଦ୍ରଲୋକରେ କାମରାନ୍‌ଙ୍କ ପ୍ରତି ସମସ୍ତଙ୍କ ମନ ଘୃଣାରେ ପୂରିଗଲା । ଚନ୍ଦ୍ରଲୋକର ଅଧିବାସୀମାନେ ଯେତେବେଳେ ଜୀବନ-ମରଣର ସମ୍ମୁଖୀନ, ସେତେବେଳେ ତାଙ୍କ ଉପଗ୍ରହର ଜଣେ ମହାଶୂନ୍ୟଚାରୀ ଚନ୍ଦ୍ରଲୋକ ଅଧିବାସୀଙ୍କ ପ୍ରତି ଦୃଷ୍ଟି ନଦେଇ ସାମାନ୍ୟ ଏକ ଯୁବତୀର ଆକର୍ଷଣରେ ଏତେ ବଡ଼ ଅଭିଯାନକୁ ଏମିତି ଭାବରେ ବିଫଳ କରିଦେବେ—ଏହାଠାରୁ ଅଧିକ ଲଜ୍ଜାର କଥା କ'ଣ ହୋଇପାରେ ।

## ପନ୍ଦର

ଗ୍ରହ କେ-ଏମ୍-ବି-୧୧ ଅଭିମୁଖେ ଯାଉଥିବା ଏତେବଡ଼ ବିରାଟ ଅଭିଯାନ ଧ୍ୱଂସ ପାଇଯିବା ପରେ ବୈଜ୍ଞାନିକମାନଙ୍କ ମନରେ ଚିନ୍ତା ଦେଖାଦେଲା—ପୁଣି ଅଭିଯାନ ଆରମ୍ଭ କରାଯିବ କି ନାହିଁ ? ଏଡ଼େ ବିରାଟ ଅଭିଯାନର ଧ୍ୱଂସର କାରଣ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ନହେବା ପର୍ଯ୍ୟନ୍ତ କିଏ. ବା ସହଜରେ ବାହାରିବ ପୁଣି ଥରେ ଏହି ଅଭିଯାନରେ ଯିବାପାଇଁ ? ବହୁଦିନଧରି ବୈଜ୍ଞାନିକମାନଙ୍କର ନାନାଦି ଗବେଷଣା ଫଳରେ ଜଣାପଡ଼ିଲା ଯେ କାମରାନ୍ ଯେଉଁ ଯୁବତୀଟିକୁ ମହାଶୂନ୍ୟରେ ଭେଟିଥିଲେ, ସେ ଯୁବତୀଟି ପ୍ରତିବସ୍ତୁଜଗତର ଜନୈକା ନାରୀ ଓ ତାହା ସହିତ ସ୍ପର୍ଶ ଘଟିଥିବାରୁ କାମରାନ୍‌ଙ୍କ ଅଭିଯାନ ଧ୍ୱଂସ ପାଇଗଲା । ଏକଥା ଚନ୍ଦ୍ରଲୋକରେ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ବହୁ ମହାଶୂନ୍ୟଚାରୀଙ୍କ ମନରେ ଏକ ପ୍ରବଳ ଆଶଙ୍କା ଦେଖାଦେଲା—ମହାଶୂନ୍ୟର ସେହି ଅଂଶରେ ପ୍ରତିବସ୍ତୁ ନାରୀ ଆସିଲା କେଉଁଠୁ ? ମହାଶୂନ୍ୟର ସେହି ଅଂଶରେ କେଉଁଠି ପ୍ରତିବସ୍ତୁଜଗତ ଲୁଚିରହିନାହିଁ ତ ? ତା' ଯଦି ହୋଇଥାଏ, ତେବେ ସେହି ପଥରେ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଯିବା କମ୍ ବିପଜ୍ଜନକ ନୁହେଁ !

କେନ୍ଦ୍ର ସରକାରଙ୍କର ଏକ ବିରାଟ ଆଲୋଚନା ସଭା ବସିଲା ଏ ସମ୍ପର୍କରେ କି ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ ଆଲୋଚନା କରିବାପାଇଁ । ଚନ୍ଦ୍ରଲୋକ ଅଧିବାସୀଙ୍କ ପାଇଁ ବାସୋପଯୋଗୀ ଗ୍ରହ ବା ଉପଗ୍ରହ ଅନ୍ୱେଷଣ କରିବା ନିମନ୍ତେ କି କି ବ୍ୟବସ୍ଥା ବର୍ତ୍ତମାନ କରିବାକୁ ପଡ଼ିବ, ତାହା ନିର୍ଦ୍ଧିଷ୍ଟ କରାଯିବ ଏହି ଆଲୋଚନା ସଭାରେ । କେତେକ ସଭ୍ୟ ଏକ୍‌ସ-ଏମ୍-ବି-୧୧ ଗ୍ରହ ଅଭିମୁଖେ ପୁଣିଥରେ ଅଭିଯାନ ଚଳାଇବା ପାଇଁ ମତ

ଦେଲାବେଳକୁ ଆଉ ଦଳେ ଏହା ବିରୁଦ୍ଧରେ ମତ ଦେଉଥାନ୍ତି । ବିଭିନ୍ନ ସଭା-ସମିତି ଓ ପତ୍ରପତ୍ରିକାରେ ଏହି ଅଭିଯାନ ବିଷୟରେ ଆଲୋଚନା ଦେଶରେ ଏମିତି ତୁମୁଳ ଦ୍ୱନ୍ଦ୍ୱ ଆଣିଦେଲା, ଯାହାପାଇଁ କି କେନ୍ଦ୍ର ସରକାର ବାଧ୍ୟ ହୋଇ ଏକ୍ସ-ଏମ୍-ବି-୧୧ ଗ୍ରହ ଅଭିଯାନକୁ କିଛିଦିନ ପାଇଁ ସ୍ଥଗିତ ରଖିବାକୁ ବାଧ୍ୟ ହେଲେ । ବହୁ ଆଲୋଚନା ପରେ ସ୍ଥିର ହେଲା ଏହି ଅଭିଯାନ ଏକ୍ସ-ଏମ୍-ବି-୧୧ ଗ୍ରହ ଅଭିମୁଖେ ନ ପଠାଇ ମଧ୍ୟ ନକ୍ଷତ୍ର-ମଣ୍ଡଳରେ ଥିବା କେ-ଜେଡ୍-ସି-୯ ଗ୍ରହ ଅଭିମୁଖେ ପଠାଇବା ଉଚିତ । ସେ ଗ୍ରହରେ ଜଳର ବିଶୁଦ୍ଧିତା ସମ୍ବନ୍ଧୀୟ ଯେଉଁ ତଥ୍ୟ କେତେଦିନ ତଳେ ପ୍ରକାଶ ପାଇଥିଲା, ତା' ବିପକ୍ଷରେ ଚନ୍ଦ୍ରଲୋକର ଆଉ କେତେକ ବୈଜ୍ଞାନିକ ମତ ପ୍ରଦାନ କରିବାରୁ ସେହି ଗ୍ରହକୁ ଅଭିଯାନ କରି ସେଠାକାର ପ୍ରକୃତ ଅବସ୍ଥା ପର୍ଯ୍ୟବେକ୍ଷଣ କରିବା ଉଚିତ ବୋଲି ବିବେଚିତ ହେଲା । ଏହି ଗ୍ରହଟିର ଦୂରତ୍ୱ ଚନ୍ଦ୍ରପୃଷ୍ଠରୁ ହେଉଛି ମାତ୍ର ସତୁରି ଆଲୋକ-ବର୍ଷ । ଜଳକୁ ଛାଡ଼ିଦେଲେ ଏହି ଗ୍ରହର ଆଉ ସବୁ ଅବସ୍ଥା ଚନ୍ଦ୍ରପୃଷ୍ଠର ଅବସ୍ଥା ଭଳି । ତେଣୁ ଏହାର ଜଳ ଯଦି ଭଲ ବୋଲି ଜଣାପଡ଼େ, ତେବେ ଚନ୍ଦ୍ରଲୋକର ଅଧିବାସୀଙ୍କୁ ନେଇ ଏଠାରେ ଅବସ୍ଥାନ କରିବା ବିଶେଷ ଅସୁବିଧାଜନକ ହେବନାହିଁ ।

× × ×

ସ୍ତ୍ରୀ ଶନା ଓ ଅନ୍ୟମାନଙ୍କ ବାରଣ ସତ୍ତ୍ୱେ ମୁଁ ଯାଇ ଯୋଗଦେଲି ମହାଶୂନ୍ୟ ଅଭିଯାନ ପାଇଁ ଏକ ମହାକାଶଗୃହଦଳରେ । କାମରନ୍‌ଙ୍କ ଦୁର୍ଘଟଣା ଦିନଠାରୁ ମହାଶୂନ୍ୟଗୃହୀଙ୍କ ସଂଖ୍ୟା ଦିନକୁଦିନ କମିବାରେ ଲାଗିଥାଏ । ଏଥିରେ ଯଦି ନୂଆ ନୂଆ ଲୋକ ଯୋଗ ନଦିଅନ୍ତି, ତେବେ ଲୋକେ ସାହସହୀନ ହୋଇ ପଡ଼ିବେ । ଏହି ଚିନ୍ତାରେ ମୁଁ ଅଭିଯାତ୍ରୀ-ଦଳରେ ଯୋଗଦେଲି । ଯୋଗଦେବା ସଙ୍ଗେ ସଙ୍ଗେ ମୋତେ ପଠାଇଦିଆଗଲା ନିକଟବର୍ତ୍ତୀ ଟ୍ରେନିଂ କେନ୍ଦ୍ରକୁ ମହାଶୂନ୍ୟ ଅଭିଯାନ ପାଇଁ ଶିକ୍ଷା ଗ୍ରହଣ କରିବାକୁ । ମୁଁ ଯୋଗଦେବା ଦେଖି ବହୁ ଲୋକ ମୋ ପଛେ ପଛେ ଯୋଗଦେଲେ । ପୃଥିବୀର ଜଣେ ଲୋକ ଯଦି ଚନ୍ଦ୍ରଲୋକର ଅଧିବାସୀଙ୍କ ଜୀବନ ବଞ୍ଚାଇବା ପାଇଁ ମହାଶୂନ୍ୟରେ ଗ୍ରହ ଖୋଜିବାରେ ନିଜକୁ ଉତ୍ସର୍ଗ କରିପାରେ, ଚନ୍ଦ୍ରଲୋକର ଅଧିବାସୀମାନେ କ'ଣ ଏଥିପାଇଁ ବାହାରିଆସିବା ଉଚିତ ନୁହେଁ ବୋଲି ବହୁ ଯୁବକ ଏହିଭଳି ଭାବିବାକୁ ଲାଗିଲେ । ମୋ ଯୋଗଦେବା ଫଳରେ ଆଉ ଯା କିଛି ହେଉ ବା ନହେଉ, ଏତିକି ହେଲା ଯେ ଅପ୍ରିୟ ହୋଇଆସୁଥିବା ମହାଶୂନ୍ୟ ଅଭିଯାନ ପୁଣି ଚନ୍ଦ୍ରଲୋକ ଅଧିବାସୀଙ୍କ ପାଖରେ ବେଶି ପ୍ରିୟ ହୋଇଉଠିଲା । ଦିନକୁଦିନ ଅଧିକ ସଂଖ୍ୟାରେ ଲୋକ ଆସି ଯୋଗଦେବାକୁ ଲାଗିଲେ ଏହି ଅଭିଯାତ୍ରୀଦଳରେ ।

ମୁଁ ଟ୍ରେନିଂରେ ଯିବା ପୂର୍ବରୁ ଶନାର ଏକା ଜିଦ୍, ସେ ଏକ ସନ୍ତାନର ମା' ହେବ । ମୁଁ ଯେତେବେଳେ ଦୂରଦୂରାନ୍ତର ଗ୍ରହକୁ ଯାଉଛି, ଶନା ନିଜ ପାଖରେ କି ସମ୍ପର୍କ ରଖିବ ? ନିଜ ସନ୍ତାନ ଭାବରେ ମୋର ଏକ ପ୍ରତିମୂର୍ତ୍ତି ରହିପାରିଲେ ସେ ମୋ ବିଚ୍ଛେଦକୁ ସାଧାରଣ

ସ୍ୱବରେ ସହ୍ୟ କରନେଇ ପାରବ; କନ୍ତୁ ପ୍ରଶ୍ନ ହେଉଛି ଶନା ପକ୍ଷରେ ସନ୍ତାନର ମା' ହେବା ଉଚତ ହେବ କ ? ସନ୍ତାନର ମା' ହେଲେ ଯେଉଁ ଦୁଇଟି ବପଦର ସମ୍ଭାବନା ଅଛି, ତାହା ଥରକୁଥର ପ୍ରତଧ୍ୱନତ ହେବାକୁ ଲଗିଲ ମୋ କାନପାଖରେ । ଗୋଟିଏ ପକ୍ଷରେ ଶନାର ମୃତ୍ୟୁ ଓ ଅନ୍ୟପକ୍ଷରେ ରାକ୍ଷସ-ସନ୍ତାନର ଆବର୍ଭାବ ଆଶଙ୍କା ମୋତେ ବଡ଼ ବଚଳତ କରୁଥିଲ । ଶନାକୁ ଯେତେ ବୁଝାଇଲେ ମଧ ତା'ର ଏକା ଜଦ୍ ସେ ଏକ ସନ୍ତାନର ମା' ହେବ । ଶନାର ପରବାର ଭିତରେ ଏହା ବୃଶୃଙ୍ଖଳ ଖେଳାଇଦେଇଥାଏ । ଶନା ଯଦ ମାତୃତ୍ୱର ଗୌରବ ଲଭ କରବାକୁ ଯାଏ, କେତେ ବଡ଼ ବପଦର ସମ୍ଭାବନା ! ଶାର୍ଙ୍ଗରନା, କେବଲପ୍ରାସ୍ପୃଙ୍କଠାରୁ ଆରମ୍ଭ କର ସମସ୍ତେ ଶନାକୁ ବୁଝାଇବାରେ ଲଗିଲେ ମା' ହେବା ଆକାଙ୍କ୍ଷା ପରତ୍ୟାଗ କରବା ପାଇଁ; କନ୍ତୁ ଶନା ତା' ଇଚ୍ଛାରେ ଅଟଳ ।

ଶାର୍ଙ୍ଗରନା ବଡ଼ ଅସୁବଧାରେ ପଡ଼ଲେ । ଯାନଭଉର୍ଣୀର ଏହ ଆଶାକୁ ସେ ଭାଙ୍ଗୁଛନ୍ତ ବା କେମିତ ? ନଜେ ଯେତେବେଳେ ଦୁଇ ଦୁଇଟି ସନ୍ତାନର ମା, ସେତେବେଳେ ଶନାକୁ ଏଥିରୁ ନବର୍ତ୍ତାଇବାକୁ ଚେଷ୍ଟା କରବେ କେଉଁ ବଗ୍ଭରରେ ? ହେଲେ ବେଳେବେଳେ ଆଶୁ ବପଦ କଥା ଭାବ ସେ ଶିହର ଉଠୁଥାନ୍ତ । ମୁଁ ଯେତେବେଳେ ମହାଶୂନ୍ୟ ଅଭିଯାନରେ ଯାଇ ଚନ୍ଦ୍ରଲୋକର ଅଧିବାସୀଙ୍କୁ ଅନ୍ୟ ଗ୍ରହରେ ଥଇଥାନ କରବାର ଦାୟିତ୍ୱ ବହନ କରଛି, ସେ ପରସ୍ଥିତରେ ମୋର ବଚ୍ଛେଦରେ ଶନା ଆଉ କାହା ମୁହଁ ଗ୍ଭହିଁ ଦନ କାଟିବ ? ଶାର୍ଙ୍ଗରନା ଏହ କଥା ହିଁ ସବୁବେଳେ ଭାବୁଥାନ୍ତ ।

ଶାର୍ଙ୍ଗରନାଙ୍କ ପରାମର୍ଶକ୍ରମେ ଚନ୍ଦ୍ରଲୋକର ବଶିଷ୍ଟ ଚକତ୍ସକ ଓ ଜନନବତ୍ତ୍ୱ ପୋଲେଭନ୍‌ଙ୍କ ଚକତ୍ସାଳୟକୁ ଆମକୁ ଯିବାକୁ ପଡ଼ଲ । ଚନ୍ଦ୍ରଲୋକର ବହୁ ବଶିଷ୍ଟ ଚକତ୍ସକ ଯେଉଁ ମତ ଦେଉଥିଲେ, ତାହାଠାରୁ ଭିନ୍ନ ମତ ପୋଷଣ କରୁଥିଲେ ବୈଜ୍ଞାନକ ପୋଲେଭନ୍ । ଜନନ-ବଜ୍ଞାନରେ ଜଣେ ବଶେଷଜ୍ଞ ଭାବରେ ସେ ସାର ଚନ୍ଦ୍ରଲୋକରେ ସୁଖ୍ୟାତ ଅର୍ଜନ କରଥାନ୍ତ । ଶାର୍ଙ୍ଗରନାଙ୍କଠାରୁ ବୈଜ୍ଞାନକ ମନବର୍ମର୍‌ଙ୍କ ମତ ଶୁଣି ସେ ସେହ ମତ ସହତ ଏକମତ ହୋଇପାରଲେନାହିଁ । ତତ୍କାଳୀନ ବହୁ ଜନନ-ବଶେଷଜ୍ଞ ଦେଉଥିବା ମତ ଶନାର ଡମ୍ବାଣୁ ଓ ମୋର ଶୁକ୍ରାଣୁମଧରେ ଜରାୟୁବାହାରେ କୃତ୍ରିମ ପ୍ରଜନନ କରାଇ ଶନାକୁ ମାତୃତ୍ୱର ଗୌରବ ଦେବା ସପକ୍ଷରେ ସେ ନଥିଲେ । ତା'ଛଡ଼ା ମନବର୍ମର୍‌ଙ୍କ ମତ ଭଳ ଶନାର ଜରାୟୁରେ ଡମ୍ବାଣୁକୁ କୃତ୍ରିମ ଉପାୟରେ ନଷ୍କ୍ରିୟ କର ସେହ ଡମ୍ବାଣୁକୁ ବାହାର କର ପୋଷକମାଧମରେ ବଢ଼ାଇ ସନ୍ତାନରେ ପରଣତ କରବା ମତକୁ ମଧ ସେ ପୂରାପୂର ସମର୍ଥନ କରୁନଥିଲେ । ସେ ଶନା ଓ ମୋର ଦାୟିତ୍ୱ ଗ୍ରହଣ କରବା ପୂର୍ବରୁ ଶାର୍ଙ୍ଗରନାଙ୍କୁ କହଲେ—ମୋ ଚକତ୍ସାଳୟରେ ଏମାନେ କଛିଦନ ଅବସ୍ଥାନ କରନ୍ତୁ । ମୁଁ ଏମାନଙ୍କ ସନ୍ତାନସୃଷ୍ଟିର ଦାୟିତ୍ୱ ନେବାକୁ ଅରାଜ ନୁହେଁ । ତେବେ ମୁଁ ଏ ବଷୟରେ ବହୁ ଚନ୍ତା ନକର ଓ ମୋ ସହକର୍ମୀମାନଙ୍କ ସହତ ଏ ସମ୍ପର୍କରେ ଯଥାଯଥ ଆଲୋଚନା ନକର ଏ ଉଦ୍ୟମରେ ହଠାତ୍ ଆଗେଇଯିବାକୁ ସାହସ କରୁନାହିଁ । ତା ଛଡ଼ା

ତୁମେ ତ ଜାଣିଛ—ଏମିତ ଏକ ଅଦ୍ଭୁତ ଘଟଣା ଆମ ଉପଗ୍ରହରେ ଏଇ ସର୍ବପ୍ରଥମ । ଏ ବିଷୟରେ ଆମ କାହାର ଅନୁଭୂତ ନାହିଁ । ଶାସ୍ତ୍ରଚର୍ଚ୍ଚା ଓ ବିଜ୍ଞାନଚର୍ଚ୍ଚା ବେଳେବେଳେ ଏଭଳି କେତେ ଘଟଣାରେ ବିଶେଷ ସାହାଯ୍ୟକାରୀ ହୁଏନା । ତେବେ ତୁମକୁ ମୁଁ ଏତିକି ପ୍ରତିଶ୍ରୁତି ଦେଇପାରେ ଶାର୍ଙ୍ଗଧରନା, ଏମାନଙ୍କର ସନ୍ତାନ ଉତ୍ପତ୍ତି ପାଇଁ ମୁଁ ମୋର ଯଥାସାଧ୍ୟ ଚେଷ୍ଟା କରିବି ଓ ଆଧୁନିକ ବିଜ୍ଞାନରେ ଯେକୌଣସି ବିଶେଷ ଜ୍ଞାନ ଓ ଯନ୍ତ୍ରପାତିର ସାହାଯ୍ୟ ନେବାକୁ ଭୁଲିବି ନାହିଁ । ମୁଁ ସବୁପ୍ରକାର ଚେଷ୍ଟା କରିବି ସତ; କିନ୍ତୁ ଫଳ ବିଷୟରେ ମୁଁ କିଛି ନିର୍ଭର ପ୍ରତିଶ୍ରୁତି ଦେଇ ନପାରେ । ତେବେ ବିଶେଷଜ୍ଞ ମନବର୍ମିର୍ଙ୍କ ମତକୁ ଯେ ମୁଁ ମୋ ଆଲୋଚନାକୁ ନେବି ନାହିଁ, ତା' ନୁହେଁ । ତୁମେ ନିଶ୍ଚିନ୍ତରେ ଯାଇପାର । ମୋର ମତ ଦେବାର ସ୍ଥିର କଲେ ତୁମକୁ ଖବରଦେବି । ଏମାନେ ଏଇ କିଛିଦିନ ମୋ ଚିକିତ୍ସାଳୟରେ ଅବସ୍ଥାନ କରନ୍ତୁ ।

ଚିକିତ୍ସାଳୟରେ ରହିବା ପରେ ଆମ ଶରୀରର ନାନାପ୍ରକାର ପରୀକ୍ଷା ଚାଲିଲା । ରକ୍ତ, ମାଂସ ଓ ମେଦ ସବୁର ପରୀକ୍ଷା ଚାଲିଲା । ଥରେ ନୁହେଁ, ଦୁଇଥର ନୁହେଁ, ବହୁଥର । ପ୍ରତିଦିନ କିଛି ନା କିଛି ପରୀକ୍ଷା ଆମ ଦୁହିଁଙ୍କର ଚାଲିଥାଏ । ସାଧାରଣ ରୋଗୀଙ୍କଠାରୁ ଅଲଗା ଆମେ ଥାଉଁ । ଆମର ରହିବା ପାଇଁ ବହୁକକ୍ଷବିଶିଷ୍ଟ ଏକ ବାସଗୃହ ନିର୍ଦ୍ଦିଷ୍ଟ ହୋଇଥାଏ । ଆମେ ସେହି ବାସଗୃହରେ ବେଶ୍ ଆରାମରେ ରହିଥାଉ । ବେଳେବେଳେ ପରିଚାରିକା ଓ ଡାକ୍ତରମାନେ ଆସି ଆମକୁ ଥରକୁଥର ପରୀକ୍ଷା କରୁଥାନ୍ତି ।

ଇତିମଧ୍ୟରେ ଚିକିତ୍ସକ ପୋଲେଭିନ୍ ଆମ ସମ୍ପର୍କରେ ତାଙ୍କର ସହକର୍ମୀମାନଙ୍କ ସହିତ ବହୁଥର ଆଲୋଚନା କରିସାରିଲେଣି; କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ସେ ପହଞ୍ଚି ପାରୁ-ନଥାନ୍ତି । ନାନାପ୍ରକାର ତତ୍ତ୍ୱୀୟ ଗଣନା କରାଯାଇ ଏହି ମିଳନର ଭବିଷ୍ୟତ ନିର୍ଣ୍ଣୟ କରିବାକୁ ଚେଷ୍ଟା କରାଯାଉଛି; କିନ୍ତୁ କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲା ଭଳି ଅବସ୍ଥାକୁ ଆସିପାରିନାହିଁ । ବୈଜ୍ଞାନିକ ମନବର୍ମିର୍ଙ୍କର ମତକୁ ଆଲୋଚନାକୁ ନେବା ପୂର୍ବରୁ ତାହାଙ୍କ ସହିତ ସାକ୍ଷାତ୍-ଆଲୋଚନା ଏକାନ୍ତ ଆବଶ୍ୟକ ବୋଲି ସେ ମନବର୍ମିର୍ଙ୍କ ସହିତ ସାକ୍ଷାତ କରିବା ପାଇଁ ଦିନ ନିର୍ଦ୍ଧାରଣ କଲେ ।

ଜନନବିଜ୍ଞାନର ଦୁଇଟି ପରସ୍ପର-ବିରୋଧୀ ମତର ପୃଷ୍ଠପୋଷକ ଭାବରେ ବିଶେଷଜ୍ଞ ମନବର୍ମିର୍ ଓ ବିଶେଷଜ୍ଞ ପୋଲେଭିନ୍ ସାରା ଚନ୍ଦ୍ରଲୋକରେ ପ୍ରସିଦ୍ଧ । ଚନ୍ଦ୍ରଲୋକର ଅଧେ ଜନନବିଜ୍ଞାନୀ ମନବର୍ମିର୍ଙ୍କ ମତକୁ ସମର୍ଥନ କରୁଥିଲାବେଳେ ଆଉ ଅଧେ ପୋଲେଭିନ୍ଙ୍କ ମତକୁ ସମର୍ଥନ କରୁଥାନ୍ତି । ଜନନବିଜ୍ଞାନର ବହୁ କ୍ଷେତ୍ରରେ ଦୁଇଜଣଙ୍କର ବିରୋଧୀ ମତ ବେଳେବେଳେ ବିଜ୍ଞାନୀ ରାଜ୍ୟରେ କୌତୂହଳ ସୃଷ୍ଟି କରିଥାଏ । ପ୍ରାଣୀତତ୍ତ୍ୱବିତ୍ କରବର-ଫୀଙ୍କ ପ୍ରାଣୀ-ବିବର୍ତ୍ତନ ମତକୁ ପାଞ୍ଚଶହରୁ ଊର୍ଦ୍ଧ୍ୱ ବର୍ଷ ଧରି ଚନ୍ଦ୍ରଲୋକର ସାରା ବିଜ୍ଞାନୀ-ସମାଜ ଗ୍ରହଣ କରିଆସୁଥିଲାବେଳେ ବୈଜ୍ଞାନିକ ପୋଲେଭିନ୍ ତା'ର ଏକ ଆଂଶିକ ବିରୋଧାତ୍ମକ ମତପ୍ରଦାନ କରି ସାରା ଚନ୍ଦ୍ରଲୋକରେ ଏକ ବିଶୃଙ୍ଖଳା ସୃଷ୍ଟି କରିଥାଆନ୍ତି ।

ବୈଜ୍ଞାନିକ କରିବରଗଣ ସାରା ଚନ୍ଦ୍ରଲୋକରେ ଖାଲି ଏକ ବରେଣ୍ୟ ବୈଜ୍ଞାନିକ ନୁହନ୍ତି, ସାଂଘାଣିକ ବର୍ଷିତଲେ ପ୍ରାଣୀ-ଜଗତ୍ର ବିବର୍ତ୍ତନ ନେଇ ସେ ଯେଉଁ ସ୍ପଷ୍ଟ ମତ, ବ୍ୟାଖ୍ୟା ଓ ଭବିଷ୍ୟତ୍‌ବାଣୀ କରିଥିଲେ, ତାହା ସେ ସାରା ଚନ୍ଦ୍ରଲୋକର ବୈଜ୍ଞାନିକମାନଙ୍କୁ ଜୀବସୃଷ୍ଟି ସମ୍ବନ୍ଧରେ ଏକ ସ୍ପଷ୍ଟ ଧାରଣା ଦେଇଥିଲି । ଏଥିପୂର୍ବରୁ ଚନ୍ଦ୍ରଲୋକର ବୈଜ୍ଞାନିକମାନେ ଯାହା ଭାବୁଥିଲେ ଜୀବ-ଜଗତ୍ର ସ୍ରଷ୍ଟା ହେଉଛନ୍ତି ଭଗବାନ, ତାଙ୍କର ନିର୍ଦ୍ଦେଶରେ ମଣିଷଠାରୁ ଆରମ୍ଭ କରି ସବୁ ପ୍ରାଣୀ ଓ ଉଦ୍ଭିଦର ସୃଷ୍ଟି ହୋଇଛି, ତାହା ତାଙ୍କର ପରୀକ୍ଷା ଦ୍ୱାରା ଭ୍ରମାତ୍ମକ ବୋଲି ପ୍ରତିପାଦିତ ହୋଇଥିଲା । ସେ ଏମିତି ପରୀକ୍ଷା ଓ ଜ୍ୱଳନ୍ତ ଉଦାହରଣ ଦେଇ ପ୍ରମାଣ କରିଦେଲେ ଯେ ଜୀବଜଗତ୍ର ସୃଷ୍ଟି ମୂଳରେ କେହି ନାହିଁ; ବିବର୍ତ୍ତନ ପ୍ରକ୍ରିୟା ଫଳରେ ଗୋଟିଏ ପ୍ରାଣୀରୁ ଆଉ ଏକ ପ୍ରାଣୀ ଉଦ୍ଭବ ମନକୁମନ ହୋଇଛି—ସେତେବେଳେ ଚନ୍ଦ୍ରଲୋକର ସାରା ବିଜ୍ଞାନୀସମାଜ ତାଙ୍କ ଆବିଷ୍କାରରେ ଚମତ୍କୃତ ନହୋଇ ରହିପାରି ନଥିଲା । ନିର୍ଜୀବ ଚନ୍ଦ୍ରପୃଷ୍ଠରେ ନିର୍ଜୀବ ପଦାର୍ଥଗୁଡ଼ିକରୁ କେମିତି ସର୍ବପ୍ରଥମ ଏକକୋଷୀ ଜୀବର ସୃଷ୍ଟି ହେଲା ଓ ସେହି ଏକକୋଷୀ ଜୀବରୁ ବହୁକୋଷୀ ଜୀବ ଓ ପରେ ପରେ ସମଗ୍ର ଜୀବ-ଜଗତ୍ ସୃଷ୍ଟି ହେଲା, ତହିଁର ବିଶଦ ବ୍ୟାଖ୍ୟା ଯେ ପଢ଼ିବ ସେ ତାଙ୍କ ତଥ୍ୟକୁ ସ୍ୱୀକାର ନକରି ରହିପାରିବ ନାହିଁ ।

କରିବରଗଣଙ୍କ ତଥ୍ୟ ଖାଲି ଯେ ଚନ୍ଦ୍ରଲୋକରେ ବିଜ୍ଞାନୀସମାଜଦ୍ୱାରା ଆଦୃତ ହୋଇଥିଲା ତାହା ନୁହେଁ, ଚନ୍ଦ୍ରଲୋକର ସାଧାରଣ ଲୋକେ ସେହି ତଥ୍ୟଦ୍ୱାରା ଏମିତି ଭାବରେ ପ୍ରଭାବିତ ହୋଇଥିଲେ ଯେ, ଏହି ବୈଜ୍ଞାନିକ ତଥ୍ୟ ସାଧାରଣ ଲୋକଙ୍କଠାରେ ଅତି ପ୍ରିୟ ହୋଇପଡ଼ିଥିଲା । ସେ ଏମିତି ଯୁକ୍ତିଛଳରେ ଓ ନାନାପ୍ରକାର ବୈଜ୍ଞାନିକ ପରୀକ୍ଷାରେ ଉଦାହରଣ ଦେଇ ତାଙ୍କ ତଥ୍ୟକୁ ପ୍ରତିପାଦିତ କରିଥିଲେ ଯେ, ଏହି ତଥ୍ୟ ବିରୁଦ୍ଧରେ ଜଣେ ମୁଣ୍ଡା ଲୋକ ପାଟି ଫିଟାଇ ପାରିନଥିଲେ ।

ତାଙ୍କ ତଥ୍ୟକୁ ଲୋକେ ଗ୍ରହଣ କରିସାରିବା ପରେ ଆଉ ଦଳେ ବୈଜ୍ଞାନିକ ବାହାରିଲେ, ଯେଉଁମାନେ କରିବରଗଣଙ୍କ ମତ ଉପରେ ପ୍ରତିଷ୍ଠା କଲେ ଭଗବାନବିରୋଧୀ ତଥ୍ୟ । ଜୀବଜଗତ୍ର ସ୍ରଷ୍ଟା ଯେ ଭଗବାନ୍ ନୁହନ୍ତି, ତାହା ପ୍ରଚ୍ଛନ୍ନ ଭାବରେ କରିବରଗଣଙ୍କ ତଥ୍ୟରେ ଲୁକ୍କାୟିତ ଥିଲେହେଁ ସେମାନେ ଏହାକୁ ସେଥିରୁ ବାହାରକରି ଏହାର ପ୍ରାଞ୍ଜଳ ବ୍ୟାଖ୍ୟା ସହି ଏମିତିଭାବରେ ପ୍ରଚାର କଲେ ଯେ ବୈଜ୍ଞାନିକ କରିବରଗଣଙ୍କ ତଥ୍ୟଠାରୁ ଏହା କମ୍ ଲୋକପ୍ରିୟ ହେଲାନାହିଁ । ଫଳରେ ହଜାର ହଜାର ବର୍ଷଧରି ଲୋକଙ୍କ ମନ ଭିତରେ ରାଜତ୍ୱ କରୁଥିବା ଭଗବାନ୍-ଧାରଣା ଚିରଦିନପାଇଁ ଚନ୍ଦ୍ରପୃଷ୍ଠରୁ ବିଲୁପ୍ତ ହେଲା । ଭଗବାନ୍ କିଏ, ମଣିଷ ସହିତ ଏହାଙ୍କର ସମ୍ପର୍କ କ'ଣ, ଧର୍ମ କାହାକୁ କହନ୍ତି, ଏସବୁ ପ୍ରକାର ଚିନ୍ତା ଲୋକଙ୍କ ଭିତରୁ ସବୁଦିନ ପାଇଁ ଉଭେଇଗଲା । ଲୋକମାନେ ପୁରୁପ ନୁନମିକ ଭାବରେ ଭୁଲିଗଲେ ଭଗବତ୍‌ଚିନ୍ତା । ପୃଥିବୀପୃଷ୍ଠରେ ଯେମିତି ସବୁପ୍ରକାର କର୍ମ, ଭାବନା, ଦର୍ଶନ, ସାହିତ୍ୟ ଭଗବାନ୍‌ଙ୍କୁ କେନ୍ଦ୍ରକରି ଗଢ଼ି ଉଠିଛି, ଚନ୍ଦ୍ରପୃଷ୍ଠରେ ସେମିତି ନାହିଁ । ଜନ୍ମୋତ୍ପନ୍ନ

ବୈଜ୍ଞାନିକ ଯେ ନିଜର ଗବେଷଣାଦ୍ୱାରା ଚନ୍ଦ୍ରଲୋକର କୋଡ଼ିଏ କୋଟି ଲୋକଙ୍କର ଚିନ୍ତାକୁ ପୁରାପୁରି ଏମିତିଭାବରେ ବଦଳାଇ ଦେଇପାରନ୍ତି, ଏହା ଦେଖି ବିସ୍ମିତ ନହୋଇ ରହିପାରିଲି ନାହିଁ ।

ଚନ୍ଦ୍ରଲୋକର ଶ୍ରେଷ୍ଠ ପ୍ରାଣୀତତ୍ତ୍ୱବିତ୍ କିରବିରଗଣଙ୍କ ମତକୁ ସମସ୍ତେ ପୂର୍ଣ୍ଣଭାବରେ ସମର୍ଥନ କରନ୍ତି । ମିନବିର୍ମିର୍ ତାଙ୍କର ପ୍ରଧାନ ସମର୍ଥକ ଭାବରେ ଚନ୍ଦ୍ରଲୋକରେ ପ୍ରସିଦ୍ଧ । କିନ୍ତୁ ପୋଲେଭିନ୍ କିରବିରଗଣଙ୍କ ମତକୁ ବହୁ ଅଂଶରେ ଗ୍ରହଣ କରୁଥିଲେହେଁ ତାଙ୍କର ଗୋଟିଏ ସିଦ୍ଧାନ୍ତକୁ ସେ ଗ୍ରହଣ କରିପାରୁନଥିଲେ । ବୈଜ୍ଞାନିକ କିରବିରଗଣ ଯେଉଁ ମତ ଦିଅନ୍ତି ଯେ, ପ୍ରାଣୀଜଗତର ବିବର୍ତ୍ତନକ୍ରିୟା ମଣିଷଠାରେ ଶେଷ ହୋଇଛି ଓ ଏହି ମଣିଷରୁ ଆଉ କୌଣସି ପ୍ରକାର ଭିନ୍ନ ପ୍ରାଣୀର ଉଦ୍ଭବ ହେବା ସମ୍ଭବ ନୁହେଁ, ତାହା ସ୍ୱୀକାର କରନ୍ତି ନାହିଁ ବୈଜ୍ଞାନିକ ପୋଲେଭିନ୍ । ଏହିଠାରେ ହେଉଛି ବୈଜ୍ଞାନିକ ମିନବିର୍ମିର୍ ଓ ପୋଲେଭିନ୍‌ଙ୍କ ମଧ୍ୟରେ ମତ-ପାର୍ଥକ୍ୟ । ବୈଜ୍ଞାନିକ ପୋଲେଭିନ୍ କହନ୍ତି, ମଣିଷକୁ ଯଦି ପ୍ରାକୃତିକ ପରିବେଶ ଭିତରେ ବଢ଼ିବାକୁ ଦିଆଯାଏ ଓ ତାହା ଉପରେ କୃତ୍ରିମତାର ଚାପ ଦିଆନଯାଏ, ତେବେ ମଣିଷରୁ ଅନ୍ୟ ଏକ ପ୍ରାଣୀ ଉଦ୍ଭବ ହେବା ଅସମ୍ଭବ ନୁହେଁ । ମଣିଷ ଯେଉଁ ପରିବେଶ ଭିତରେ ରହୁଛି, ପ୍ରତି ମୁହୂର୍ତ୍ତରେ ସେ ନିଜ ଚିନ୍ତାଶକ୍ତି ଓ ବୁଦ୍ଧିବଳରେ ନାନାପ୍ରକାର ପରିବର୍ତ୍ତନ ଘଟାଇ ପ୍ରଚ୍ଛନ୍ନଭାବରେ ଏହି ବିବର୍ତ୍ତନକ୍ରିୟାକୁ ପ୍ରତିରୋଧ କରୁଛି; ଫଳରେ ମଣିଷ ଭିତରୁ ଆଉ ଏକପ୍ରକାର ପ୍ରାଣୀ ଉଦ୍ଭବ ହେବା ସମ୍ଭବପର ହେଉନାହିଁ । ମଣିଷ ଭିତରେ ଯେଉଁ ବୁଦ୍ଧି ଓ ଚିନ୍ତାଶକ୍ତିର ଉଦ୍ରେକ ହୋଇଛି, ତାହାହିଁ ଉଦ୍ଭବ କ୍ରିୟାକୁ ପୁରାପୁରି ପ୍ରତିରୋଧ କରି ଦେଇଛି । ବୈଜ୍ଞାନିକ ପୋଲେଭିନ୍ କହନ୍ତି, ମଣିଷକୁ ଯଦି ଚିନ୍ତାଶକ୍ତି ଓ ବୁଦ୍ଧିରହିତ କରାଇ ପ୍ରାକୃତିକ ପରିବେଶ ଭିତରେ ବଢ଼ିବାକୁ ଦିଆଯାଏ, ତେବେ ମଣିଷ ଭିତରୁ ଆଉ ଏକ ପ୍ରାଣୀ ଉଦ୍ଭବ ହେବା ଅସମ୍ଭବ ନୁହେଁ । ବୈଜ୍ଞାନିକ ପୋଲେଭିନ୍‌ଙ୍କ କେତୋଟି ପରୀକ୍ଷା ତାଙ୍କ ପ୍ରଚାରିତ ତଥ୍ୟ ସପକ୍ଷରେ ଯାଇ ତାଙ୍କ ମତକୁ ଆହୁରି ବଳବତ୍ତର କରିଛି । ବୈଜ୍ଞାନିକ ମିନବିର୍ମିର୍ ପୋଲେଭିନ୍‌ଙ୍କ ଏହି ତଥ୍ୟକୁ ଗ୍ରହଣ କରୁ ନ ଥିବାରୁ ସେମାନଙ୍କ ମତଦ୍ୱୈଧର ଏହା ଏକ କାରଣ ।

ତା' ଛଡ଼ା ଜନନବିଜ୍ଞାନୀ ପୋଲେଭିନ୍‌ଙ୍କ ମତରେ ସ୍ତ୍ରୀଲୋକମାନେ ସନ୍ତାନ ପ୍ରସବ କରିବା ଉଚିତ ନୁହେଁ । ପ୍ରସବଦ୍ୱାରା ସେମାନଙ୍କର ବଳକ୍ଷୟ ହେଉଛି, ଶରୀର ରୁଗ୍ଣ ହେଉଛି । ଦଶମାସ କାଳ ପେଟରେ ବର୍ଦ୍ଧନ କରିବାଦ୍ୱାରା ପିଲାଟି ମା'ର ସବୁ ସାରଅଂଶତକ ଶୋଷଣ କରି ବଡ଼ ହେଉଛି; ଫଳରେ ମା'ର ଯୌବନ ସାମାନ୍ୟ କେଇଗୋଟି ସନ୍ତାନ ପ୍ରସବ ପରେ ମଉଳିଯାଉଛି । ତେଣୁ ପୋଲେଭିନ୍‌ଙ୍କ ମତ—କୌଣସି ମା'ର ଗର୍ଭରେ ସନ୍ତାନକୁ ବଢ଼ିବାକୁ ଦିଆଯିବା ଉଚିତ ନୁହେଁ ।

ଆମେ ସ୍ତ୍ରୀଲୋକମାନଙ୍କୁ ଯେ ଦୁର୍ବଳ କହୁ, ତାହା ସେମାନଙ୍କର ଏହି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ । ସ୍ତ୍ରୀଲୋକମାନଙ୍କୁ ଯଦି ସନ୍ତାନ ପ୍ରସବ କରିବାକୁ ପଡ଼ନ୍ତା ନାହିଁ, ତେବେ

ସେମାନେ ପୁରୁଷମାନଙ୍କ ଅପେକ୍ଷା ଦୁର୍ବଳ ହୁଅନ୍ତେ ନାହିଁ କିମ୍ବା ସେମାନଙ୍କ ଯୌବନ ଏତେ ଅଳ୍ପ ସମୟ ଭିତରେ ମଉଳି ପଡ଼ନ୍ତା ନାହିଁ । ବିଶେଷଜ୍ଞ ପୋଲେଭିନ୍ କହନ୍ତି, ସ୍ତ୍ରୀ'ର ଡିମ୍ବାଣୁ ଓ ପୁରୁଷର ଶୁକ୍ରାଣୁକୁ ମା'ର ଜରାୟୁରେ ବଢ଼ିବାକୁ ନଦେଇ କଳସୃଷ୍ଟ ହେବାପରେ କୃତ୍ରିମ ପୋଷକ ମାଧ୍ୟମରେ ବଢ଼ିବାକୁ ଦିଆଯିବା ଉଚିତ । ପୂର୍ଣ୍ଣଭାବରେ ବୃଦ୍ଧିପ୍ରାପ୍ତ ହେଲାପରେ ପୋଷକ ମାଧ୍ୟମରୁ ବାହାର କରି ସନ୍ତାନ ମା'କୁ ଦିଆଯାଇପାରେ । ତାଙ୍କ ମତରେ ଏହା କଲେ ପ୍ରସବବେଦନା ଭୋଗ କରିବାକୁ ପଡ଼ିବ ନାହିଁ ଓ ଦ୍ୱିତୀୟରେ ମା' ନିଜର ସ୍ୱାସ୍ଥ୍ୟ ଅତୁଟ ରଖିପାରିବ । ନିଜ ଦେହର ରକ୍ତମାଂସ ଦେଇ ପିଲାଟିକୁ ବଢ଼ାଇବା ଦାୟିତ୍ୱରୁ ରକ୍ଷାପାଇବା ହେତୁ ମା'ର ସ୍ୱାସ୍ଥ୍ୟ ଭଲ ରହିବ । ଯେଉଁଭଳି ଜାତ ସନ୍ତାନ କୌଣସି ଗୁଣରେ ମା' ପେଟରେ ବଢ଼ୁଥିବା ସନ୍ତାନଠାରୁ ଅଲଗା ହେବନାହିଁ । ମାତ୍ର ବୈଜ୍ଞାନିକ ପୋଲେଭିନ୍‌ଙ୍କ ମତକୁ ବିଶେଷଜ୍ଞ ମନବର୍ମିର୍ ମୋଟେ ଗ୍ରହଣ କରନ୍ତି ନାହିଁ । ତାଙ୍କର ମତ ହେଉଛି ଯେ ଏପରିଭାବେ ଜାତ ସନ୍ତାନଟି ଦୁର୍ବଳ ହେବ; ଫଳରେ ଅତିଶୀଘ୍ର ରୋଗାକ୍ରାନ୍ତ ହେବ ଓ ସର୍ବୋପରି ପିତାମାତାର ଅନେକ ଗୁଣ ହାସଲ କରିବାକୁ କ୍ଷମ ହେବନାହିଁ । ମନବର୍ମିରଙ୍କ ମତକୁ ଖଣ୍ଡନ କରି ବୈଜ୍ଞାନିକ ପୋଲେଭିନ୍ ନାନା ପରୀକ୍ଷାଦ୍ୱାରା ନିଜ ମତକୁ ଦୃଢ଼ଭାବରେ ଉପସ୍ଥାପିତ କଲେହେଁ ମନବର୍ମିର୍ କିମ୍ବା ତାଙ୍କ ସମର୍ଥକମାନେ ତାକୁ ଗ୍ରହଣ କରିବାକୁ ନାରାଜ ।

ବିଗତ ପ୍ରାଣୀତତ୍ତ୍ୱଜ୍ଞ ସମ୍ମିଳନୀରେ ବୈଜ୍ଞାନିକ ପୋଲେଭିନ୍ ଓ ମନବର୍ମିରଙ୍କ ଯେଉଁ ମତଭେଦ ଘଟିଥିଲା, ତାହା ସାରା ଚନ୍ଦ୍ରଲୋକରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ଚନ୍ଦ୍ର-ଲୋକର ରାଜଧାନୀ ପୀୟୂଷଧାରରେ ଯେଉଁ ପ୍ରାଣୀତତ୍ତ୍ୱ ବୈଜ୍ଞାନିକ ସମ୍ମିଳନୀ ବସିଥିଲା, ସେଥିରେ ସାରା ଚନ୍ଦ୍ରଲୋକର ସହସ୍ରାଧିକ ପ୍ରାଣୀତତ୍ତ୍ୱବିତ ଯୋଗଦେଇଥିଲେ । ସେହି ସମ୍ମିଳନୀରେ ଅନୁଷ୍ଠିତ ବିଭିନ୍ନ ଆଲୋଚନା ଓ ସମ୍ପାନ ଭିତରେ ଗୋଟିଏ ଆଲୋଚନା ଅତ୍ୟଧିକ ଚିତ୍ତାକର୍ଷକ ହୋଇଥିଲା । ସେହି ଆଲୋଚନାଟି ହେଉଛି, ପ୍ରତିବସ୍ତୁଜଗତ୍‌ର ପ୍ରାଣୀ ବା ମନୁଷ୍ୟର ରୂପ ଓ ଆକାର ନେଇ । ଏହି ସମ୍ପାନରେ ସଭାପତିର ଆସନ ଅଳଙ୍କୃତ କରିଥିଲେ ବୈଜ୍ଞାନିକ ମନବର୍ମିର୍ । ପ୍ରତିବସ୍ତୁଜଗତ୍‌ର ମଣିଷ ଓ ପ୍ରାଣୀ ବସ୍ତୁଜଗତର ମଣିଷ ଓ ପ୍ରାଣୀ ଭଳି ନା ଭିନ୍ନ; ଯଦି ଭିନ୍ନ ତା'ହେଲେ କିପରି ?—ତାହାହିଁ ଥାଏ ସମ୍ପାନର ବିଷୟବସ୍ତୁ । ଅଳ୍ପଦିନ ତଳେ କାମବାନ୍ ପ୍ରତିବସ୍ତୁଜଗତ୍‌ର ଏକ ନାରୀ-ସଂସ୍ପର୍ଶରେ ଆସି ଯେପରି ବିସ୍ଫୋରିତ ହୋଇ କ୍ଷଣକରେ ପରିଣତ ହୋଇଯାଇଥିଲେ, ସେହି ଦୁର୍ଘଟଣାକୁ ଆଖିଆଗରେ ରଖି ବୈଜ୍ଞାନିକମାନେ ଆଲୋଚନା କରୁଥାନ୍ତି । ସେହି ସମ୍ପାନର ବିବରଣୀ ପଢ଼ି ଦିନେ ମୁଁ ଆଉ ରିନା ପୋଲେଭିନ୍‌ଙ୍କ ଚିକିତ୍ସାଳୟରେ ଥିଲାବେଳେ ହସି ହସି ବେଦମ୍ ହୋଇଯାଇଥିଲୁ ।

ସମ୍ପାନର ଆରମ୍ଭରେ କେନ୍ଦ୍ର ରାଜଧାନୀ ବିଶ୍ୱବିଦ୍ୟାଳୟର ଜଣେ ପ୍ରାଣୀତତ୍ତ୍ୱବିତ୍ କେପୋଲାସ୍ତି ଆଲୋଚନାରେ ଭାଗ ନେବାକୁ ଯାଇ କହିଲେ—ଆପଣମାନେ ସମସ୍ତେ ଜାଣନ୍ତି,

ପ୍ରତିବସ୍ତୁଜଗତ୍‌ର ବସ୍ତୁ ଯେଉଁ ମୌଳିକ ବସ୍ତୁ-କଣିକାରୁ ସୃଷ୍ଟି, ବସ୍ତୁଜଗତ୍‌ର ମୌଳିକ ବସ୍ତୁକଣିକାଠାରୁ ସେଗୁଡ଼ିକ ପୃଥକ୍ । ବସ୍ତୁଜଗତ୍‌ର ମୌଳିକ କଣିକାରେ ଇଲେକ୍‌ଟ୍ରନ୍, ପ୍ରୋଟନ୍ ଓ ନିଉଟ୍ରନ ଥିଲାବେଳେ ପ୍ରତିବସ୍ତୁଜଗତ୍‌ର ମୌଳିକ ବସ୍ତୁକଣିକା ପଜିଟ୍ରନ, ଏଣ୍ଟିପ୍ରୋଟନ୍, ଏଣ୍ଟିନିଉଟ୍ରନରୁ ସୃଷ୍ଟ କଥା ଆପଣମାନଙ୍କୁ ଅବିଦିତ ନାହିଁ । ପଜିଟ୍ରନ୍‌ର ବିଦ୍ୟୁତ୍ ଆବେଶ ଇଲେକ୍‌ଟ୍ରନ୍‌ର ବିଦ୍ୟୁତ୍ ଆବେଶର ଓଲଟା; ପ୍ରୋଟନ୍‌ର ବିଦ୍ୟୁତ୍ ଆବେଶ ଏଣ୍ଟିପ୍ରୋଟନର ବିଦ୍ୟୁତ୍ ଆବେଶର ଓଲଟା । ନିଉଟ୍ରନ୍ ବିଦ୍ୟୁତ୍ ଆବେଶରୁ ମୁକ୍ତ ହୋଇଥିଲେହେଁ ଏହାର ଚୁମ୍ବକୀୟ ପ୍ରକୃତି ଏଣ୍ଟିନିଉଟ୍ରନ୍‌ର ଚୁମ୍ବକୀୟ ପ୍ରକୃତିର ଓଲଟା । ତେଣୁ ଏହି ବିପରୀତ ଧର୍ମର ମୌଳିକ କଣିକାରୁ ଯେଉଁ ପ୍ରତିବସ୍ତୁ ସୃଷ୍ଟ ହୋଇଥିବ, ସେହି ପ୍ରତିବସ୍ତୁର ସାଧାରଣ ପ୍ରକୃତି ବସ୍ତୁର ସାଧାରଣ ପ୍ରକୃତିର ନିଶ୍ଚୟ ଓଲଟା ହେବ । ଚନ୍ଦ୍ରଲୋକର ଶ୍ରେଷ୍ଠ ତତ୍ତ୍ୱୀୟ ପଦାର୍ଥବିଦ୍ୟାବିତ୍ ସମ୍ୟକ୍‌ରନ୍ଥ ପ୍ରତିବସ୍ତୁଜଗତ୍ ସମ୍ବନ୍ଧରେ ଯେଉଁ ନୂତନ ଧାରଣା ଦେଇଯାଇଛନ୍ତି, ତାହା ଆମ ସମସ୍ତଙ୍କର ପ୍ରଣିଧାନ-ଯୋଗ୍ୟ । ସେ ନାନାପ୍ରକାର ଗଣନାନୁସାରେ ପ୍ରତିପାଦନ କରିଛନ୍ତି, ପ୍ରତିବସ୍ତୁଜଗତ୍‌ର ବିଦ୍ୟୁତ୍‌ସ୍ରୋତ ଋଣାତ୍ମକ ବିଦ୍ୟୁତ୍ ଆବେଶ ନହୋଇ ଧନାତ୍ମକ ବିଦ୍ୟୁତ୍ ଆବେଶଯୁକ୍ତ ହେବ । ଏହାର ସ୍ରୋତ ସାଧାରଣ ବିଦ୍ୟୁତ୍‌ସ୍ରୋତର ଠିକ୍ ଓଲଟା ହେବ; ଅର୍ଥାତ୍ ସାଧାରଣ ବିଦ୍ୟୁତ୍‌ସ୍ରୋତ ଯେଉଁ ଦିଗକୁ ଗତି କରିବ, ଏହା ତାହାର ଓଲଟା ଦିଗକୁ ଗତି କରିବ । ଏ ଧରଣର ବିଦ୍ୟୁତ୍‌ସ୍ରୋତ ଉଚ୍ଚ ଭୋଲ୍‌ଟାଯୁକ୍ତ କେନ୍ଦ୍ରରୁ ନିମ୍ନ ଭୋଲ୍‌ଟାଯୁକ୍ତ ସ୍ଥାନକୁ ଗତି ନକରି ନିମ୍ନ ଭୋଲ୍‌ଟାଯୁକ୍ତ କେନ୍ଦ୍ରରୁ ଉଚ୍ଚ ଭୋଲ୍‌ଟାଯୁକ୍ତ କେନ୍ଦ୍ରକୁ ପ୍ରବାହିତ ହେବ । ତାହା ଯଦି ବିଦ୍ୟୁତ୍‌ସ୍ରୋତର ଧର୍ମ ହୁଏ, ତେବେ ଜଳସ୍ରୋତର ଧର୍ମ ସେହିଭଳି ଓଲଟା ହେବାର ସମ୍ଭାବନା ରହିଛି ବୋଲି ବୈଜ୍ଞାନିକ ସମ୍ୟକ୍‌ରନ୍ଥ ଆଶା ପୋଷଣ କରନ୍ତି; ଫଳରେ ଆମ ଚନ୍ଦ୍ରଲୋକରେ ଜଳ ଉଚ୍ଚ ସ୍ଥାନରୁ ନିମ୍ନ ସ୍ଥାନକୁ ଗତି କଲାବେଳେ, ପ୍ରତିବସ୍ତୁଜଗତ୍‌ରେ ଜଳ ନିମ୍ନ ସ୍ଥାନରୁ ଉଚ୍ଚ ସ୍ଥାନକୁ ଗତିକରିବ । ନଦୀଗୁଡ଼ିକର ଜଳସ୍ରୋତ ଆମ ନଦୀର ଜଳସ୍ରୋତର ଓଲଟା ଆଡ଼କୁ ପ୍ରବାହିତ ହେବ । ଏ ପରିସ୍ଥିତିରେ ନଦୀ ଯଦି ପର୍ବତରୁ ବାହାରି ସମୁଦ୍ରରେ ପଡ଼ୁଥାଏ, ତେବେ ସମୁଦ୍ରଗୁଡ଼ିକ ଦେଶରେ ସବୁଠାରୁ ଉଚ୍ଚ ସ୍ଥାନ ହୋଇଥିବ ଓ ପର୍ବତଗୁଡ଼ିକ ସବୁଠାରୁ ନିମ୍ନ ସ୍ଥାନ ହୋଇଥିବ । ନଦୀରେ ଜଳସ୍ରୋତ ଆଗକୁ ନଯାଇ ପଛକୁ ଯେବେ ଗତି କରେ, ତେବେ ଏହା ଆମକୁ କୌତୂହଳପ୍ରଦ ଜଣାପଡ଼ିଲେ ମଧ ପ୍ରତିବସ୍ତୁଜଗତ୍‌ର ଲୋକେ ଏଥିରେ ଆଶ୍ଚର୍ଯ୍ୟ ହେବାର ଦେଖାଯିବ ନାହିଁ । ସେମାନଙ୍କ ଦେଶର ପ୍ରତିଜଳର ଧର୍ମ ହେବ ତଳୁ ଉପରକୁ ଗଡ଼ିଯିବ କି ଆମ ଦେଶରେ ଯେମିତି ଜଳର ଧର୍ମ ହେଉଛି ଉପରୁ ତଳକୁ ଗଡ଼ିଯିବା । ଆପଣମାନେ ତ ଜାଣନ୍ତି, ପ୍ରତିବସ୍ତୁଜଗତ୍‌ରେ ସମୟର ଗତି କିପରି ଆଗକୁ ନହୋଇ ପଛକୁ ହୁଏ । ବୈଜ୍ଞାନିକ ଗୋଲଦେବ୍ ଏହି ତଥ୍ୟକୁ ପ୍ରତିପାଦନ କରି କେମିତି ଅମର ହୋଇଯାଇଛନ୍ତି, ତାହା ଆପଣମାନଙ୍କୁ ଭଲଭାବରେ ଜଣା । ତାଙ୍କ ତଥ୍ୟ ଅନୁସାରେ ପ୍ରତିବସ୍ତୁ ପୃଥିବୀରେ ଆଜି ପରେ ଆସନ୍ତାକାଲି

ନଆସି ଗତକାଲ୍ ଆସେ । ଏହା ଆମକୁ ଅଡ଼ୁଆ ଲାଗିଲେ ହେଁ ପ୍ରତିବସ୍ତୁଜଗତ୍‌ର ଲୋକଙ୍କୁ ଏହା କିଛି ଅଡ଼ୁଆ ଲାଗିବ ନାହିଁ । ସମୟର ଗତି ଆଗକୁ ବୋଲି ଆମେ କେମିତି ଜାଣୁ ? ଆମେ ପଛ ଘଟଣାଗୁଡ଼ିକୁ ମନେରଖିପାରୁ, ପୂର୍ବ ଘଟଣାକୁ ପାରୁନ; ତେଣୁ ଆମକୁ ଜଣାପଡ଼େ ସମୟ ଆଗକୁ ଧାଉଁଛି ବୋଲି । ପ୍ରତିବସ୍ତୁଜଗତ୍ତରେ ସମୟର ଗତି ପଛକୁ ହୋଇଥିବାରୁ ଭବିଷ୍ୟତରେ କଣ ଘଟିବ କହିଦେଇ ହେବ; ଅତୀତରେ କଣ ଘଟିଛି ହୁଏତ କହିହେବ ନାହିଁ । ଯେଉଁ ବସ୍ତୁଜଗତ୍ ଓ ପ୍ରତିବସ୍ତୁଜଗତ୍ ଭିତରେ ଏତେ ପାର୍ଥକ୍ୟ, ସେଠିକାର ଜୀବଜଗତ୍ ଭିତରେ ଯଥାଯଥ ପାର୍ଥକ୍ୟ ଯେ ଥିବ, ଏହା ଭାବିବା ସ୍ୱାଭାବିକ ।

ଆଲୋଚନା ଚାଲିଥିଲାବେଳେ ଜଣେକ ସଦସ୍ୟ ଉଠି କହିଲେ—ତାହାହେଲେ କ'ଣ ମାନ୍ୟବର ସଭ୍ୟ କହିବାକୁ ଚାହାନ୍ତି, ଆମ ଚନ୍ଦ୍ରମଣ୍ଡଳର ଲୋକେ ମୁଣ୍ଡ ଉପରକୁ ଓ ଗୋଡ଼ ତଳକୁ କରି ଚାଲୁଥିଲାବେଳେ ପ୍ରତିବସ୍ତୁଜଗତ୍ତର ଲୋକେ ଗୋଡ଼ ଉପରକୁ ଓ ମୁଣ୍ଡ ତଳକୁ କରି ଚାଲୁଥିବେ ?

ସଦସ୍ୟଙ୍କ ଏହି ଉକ୍ତିରେ ଆଲୋଚନାକକ୍ଷ ହସରେ କମ୍ପି ଉଠିଲା । ଯୁବକ ସଦସ୍ୟଙ୍କ ପ୍ରଶ୍ନରେ ସଭାପତିତ୍ୱ କରୁଥିବା ବୈଜ୍ଞାନିକ ମନବର୍ମାଁ ମଧ୍ୟ ନହସି ରହିପାରିଲେ ନାହିଁ । କିଛି ସମୟ ଧରି ଏହି ହାସ୍ୟଧ୍ୱନି ସଭାକକ୍ଷକୁ କମ୍ପାଇଦେଲା ।

ହାସ୍ୟରୋଳ ଶାନ୍ତ ପଡ଼ିବା ପରେ ଆଲୋଚନା କରୁଥିବା ବୈଜ୍ଞାନିକ ବିଶେଷ ଭାବରେ ବିବ୍ରତ ନହେଲା ଭଳି ଭଙ୍ଗୀରେ କହିଲେ—ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ମୁଁ କିମ୍ବା ଆପଣମାନେ କେହିହେଲେ ପ୍ରତିବସ୍ତୁଜଗତ୍‌ର ଲୋକ ଦେଖିନାହାନ୍ତି । ତେଣୁ ପ୍ରତିବସ୍ତୁଜଗତ୍ତର ଲୋକେ ମୁଣ୍ଡକୁ ତଳକୁ କରି ଓ ଗୋଡ଼କୁ ଉପରକୁ କରି ଚାଲିବାର କେହି ଦେଖିନାହାନ୍ତି । ଯେଉଁ ପ୍ରତିବସ୍ତୁଜଗତ୍‌ରେ ସମୟ ଆଗକୁ ନଯାଇ ପଛକୁ ଗତିକରେ, ନଦୀର ଜଳସ୍ରୋତ ନିମ୍ନକୁ ବହି ନଯାଇ ଉପରକୁ ବହିଯାଏ; ଯେଉଁ ଜଗତ୍ତରେ ସମୁଦ୍ର ହେଉଛି ସବୁଠାରୁ ଉଚ୍ଚ ସ୍ଥାନ, ପର୍ବତ ହେଲା ସବୁଠାରୁ ନିମ୍ନ ସ୍ଥାନ, ସେହି ଜଗତ୍ତରେ ଲୋକେ ଗୋଡ଼ ଉପରକୁ ମୁଣ୍ଡ ତଳକୁ କରି ଚାଲିବାରେ ଆଶ୍ଚର୍ଯ୍ୟ ଯେ କେଉଁଠି, ମୁଁ ବୁଝିପାରୁନ । ଆପଣମାନେ ଖାଲି ଭାବପ୍ରବଣତାରେ ଭସିଯାଇ ଏକ ବିରାଟ ହାସ୍ୟରୋଳ ସୃଷ୍ଟିକରି ଏହାର ଗୁରୁତ୍ୱ କମାଇଦେବା ଉଚିତ ନୁହେଁ ।

ଆଲୋଚନା-କକ୍ଷରେ ଉଠିଲା ଆଉ ଏକ ହାସ୍ୟରୋଳ । ହାସ୍ୟରୋଳରେ ସାରା କକ୍ଷଟି ଏମିତି କମ୍ପି ଉଠିଲା ଯେ, ଶେଷରେ ସଭ୍ୟମାନଙ୍କୁ ଅଧିକ ସଂଯତ ହେବାପାଇଁ ସଭାପତି ମନବର୍ମାଁ ଅନୁରୋଧ କରିବାକୁ ବାଧ୍ୟ ହେଲେ ।

ଆଲୋଚନାରେ ଭାଗନେବାକୁ ଯାଇ ଆଉ ଜଣେ ଯୁବକ ବୈଜ୍ଞାନିକ ଉଠି କହିଲେ —ବୈଜ୍ଞାନିକ କୋଟପଲସ୍କି ପ୍ରତିବସ୍ତୁଜଗତ୍‌ରେ ମଣିଷର ପ୍ରକୃତି ନେଇ ଯେଉଁ ତଥ୍ୟ ଉପସ୍ଥାପିତ କଲେ ତାହା ବେଶ୍ କୌତୂହଳପୂର୍ଣ୍ଣ ହୋଇଥିଲେ ହେଁ ପ୍ରକୃତ ସତ୍ୟଠାରୁ ଦୂରେଇଗଲା ଭଳି ବୋଧହେଉଛି । ମହାକାଶଗବେଷୀ କାମରାନ୍‌ଙ୍କ ଦଳ ମହାଶୂନ୍ୟରେ

ଦେଖିଥିବା ପ୍ରତିବସ୍ତୁଜଗତ୍ର ସେହି ଯେଉଁ ମହିଳା କଥା ବର୍ଣ୍ଣନା କରିଯାଇଛନ୍ତି ଓ ଯାହା ଲିପିବଦ୍ଧ ହୋଇ ରହିଛି, ସେଥିରୁ ତ ମୋଟେ ଜଣାପଡ଼ୁନି ଯେ ସେହି ମହିଳାଟି ମୁଣ୍ଡ ତଳକୁ କରି ଗୋଡ଼ ଉପରକୁ କରି ଗତି କରୁଥିଲେ ? ଏହା ବର୍ତ୍ତମାନ ସ୍ପଷ୍ଟଭାବରେ ଗୃହୀତ ହୋଇଯାଇଛି ଯେ, ମହାକାଶଗବେଷୀ କାମେରନ୍ ମହାଶୂନ୍ୟରେ ପ୍ରତିବସ୍ତୁଜଗତ୍ର ଏକ ମହିଳାଙ୍କୁ ସାକ୍ଷାତ୍ କରିଥିଲେ ଓ ସେହି ମହିଳାଙ୍କୁ ସ୍ପର୍ଶ କରିବା ହେତୁ କାମେରନ୍ ସେ ମହିଳା ସମେତ ଉଭୟ ମହାକାଶଗବେଷୀଦଳ ବିସ୍ଫୋରିତ ହୋଇ ବିଶ୍ୱପୃଷ୍ଠରୁ ଲୀନ ହୋଇ-ଯାଇଥିଲେ । କାମେରନ୍ଙ୍କ ଦଳଦ୍ୱାରା ଲିପିବଦ୍ଧ ହୋଇଥିବା ବର୍ଣ୍ଣନାରୁ ପ୍ରତିବସ୍ତୁଜଗତ୍ର ମଣିଷ ସମ୍ପର୍କରେ ଆମେ ସେମିତି କିଛି ନିର୍ଦ୍ଦିଷ୍ଟ ବର୍ଣ୍ଣନା ନପାଇ ଏତେଦୂର କଳ୍ପନା କରିଯିବା ଉଚିତ ନୁହେଁ; ଫଳରେ ଆମେ ବାସ୍ତବତାଠାରୁ ଦୂରେଇଯାଇ କେବଳ କଳ୍ପନାରେ ହିଁ ଭାସୁଥିବା ।

ଏହି ଯୁବକ ବୈଜ୍ଞାନିକଙ୍କ ମତକୁ ଅଗ୍ରାହ୍ୟ କରି ବୈଜ୍ଞାନିକ କୋପେଲସ୍କି ଉଠି କହିଲେ—କାମେରନ୍ଙ୍କ ଦଳ କେଉଁଠି ବର୍ଣ୍ଣନା କରିଯାଇନାହାନ୍ତି, ସେହି ମହିଳା ପାଦ ତଳକୁ ରଖି କି ପାଦ ଉପରକୁ ରଖି ଗତିକରୁଥିଲେ । ମହାଶୂନ୍ୟରେ ଯେହେତୁ ଚାଲିବା ବା ବସିବା ପ୍ରଶ୍ନ ନାହିଁ, ତେଣୁ ଗୋଡ଼ ଓ ମୁଣ୍ଡ ଭିତରୁ କେଉଁଟା ତଳକୁ କେଉଁଟା ଉପରକୁ ଥିଲା ତାହା ସଠିକ ଭାବରେ କହିବା ସମ୍ଭବ ନୁହେଁ ।

ତା'ପରେ ଆଲୋଚନାରେ ଭାଗ ନେବାପାଇଁ ଉଠିଲେ ଚନ୍ଦ୍ରଲୋକର ସୁବିଖ୍ୟାତ ବୈଜ୍ଞାନିକ ପୋଲେଭିନ୍ । ବହୁ ନୂଆ ନୂଆ ଧରଣର ତଥ୍ୟର ସ୍ରଷ୍ଟାରୂପେ ସେ ସାରା ଚନ୍ଦ୍ରଲୋକରେ ପ୍ରସିଦ୍ଧ । ସେଦିନର ଆଲୋଚନାରେ ସେ ପୁଣି କି କି ନୂତନ ତଥ୍ୟ ପ୍ରଦାନ କରି ସମସ୍ତଙ୍କୁ ଚକିତ କରିବେ, ସେଇଆ ଶୁଣିବା ପାଇଁ ସମସ୍ତେ ବ୍ୟଗ୍ର ହୋଇ ତାଙ୍କୁ ଅନାଇ ରହିଲେ ।

ସେ ଆରମ୍ଭ କଲେ—ଆପଣମାନେ ପ୍ରତିବସ୍ତୁଜଗତ୍ର ପ୍ରକୃତ ମଣିଷର ରୂପ, ଚାଲିଚଳନ ସମ୍ବନ୍ଧରେ ନାନା କଥା ଶୁଣିଲେଣି । ମୁଁ ଆଉ ସେ ବିଷୟରେ କିଛି ଅଧିକା କହିବାକୁ ଯାଉନାହିଁ । ମହାକାଶଗବେଷୀ କାମେରନ୍ ପ୍ରତିବସ୍ତୁଜଗତ୍ର ନାରୀ ସମ୍ବନ୍ଧରେ ଯେଉଁ ବର୍ଣ୍ଣନା ଦେଇଯାଇଛନ୍ତି, ସେଥିପ୍ରତି ମୁଁ ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଛି । ଆମ ଜଗତ୍ରେ ନାରୀର ରୂପ ଯେମିତି, ପ୍ରତିବସ୍ତୁଜଗତ୍ର ନାରୀର ରୂପ ଯେ ସେମିତି ହେବ ଏହା କହିବାରେ କିଛି ଯୁକ୍ତିଯୁକ୍ତତା ନାହିଁ । ମୁଁ ବିଭିନ୍ନ ପ୍ରକାର ପରୀକ୍ଷାରୁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ, ମହାକାଶଗବେଷୀ କାମେରନ୍ ଯାହାଙ୍କୁ ପ୍ରତିବସ୍ତୁଜଗତ୍ର ନାରୀ ବୋଲି କହିଥିଲେ, ସେ ପ୍ରକୃତରେ ପ୍ରତିବସ୍ତୁଜଗତ୍ର ନାରୀ ନୁହଁନ୍ତି ।

"ନାରୀ ନୁହଁନ୍ତି ?" ପୋଲେଭିନ୍ଙ୍କ ବକ୍ତୃତାରେ ବାଧା ସୃଷ୍ଟିକରି ବହୁ ସ୍ୱର ଶୁଣାଗଲା —"ତେବେ ସେ କିଏ ?"

କ୍ଷଣକ ପାଇଁ ରହିଗଲେ ପୋଲେଭିନ୍ । ସାରା କକ୍ଷ ଉପରେ ଥରେ ଆଖି ବୁଲାଇ

ଆଣିଲେ । ଦେଖିଲେ ସମସ୍ତେ ତାଙ୍କଠାରୁ ଉତ୍ତର ଶୁଣିବା ଆଶାରେ ଏକଲୟରେ ତାଙ୍କୁ ଅନାଇ ରହିଛନ୍ତି । ଆରମ୍ଭ କଲେ ପୋଲେଭିନ୍—କାମସ୍କିନ୍ ଯାହାକୁ ନାରୀ ବୋଲି ଭାବି ତାଙ୍କ ଆଡ଼କୁ ଆକୃଷ୍ଟ ହୋଇପଡ଼ିଥିଲେ, ସେ ପ୍ରତିବସ୍ତୁଜଗତର ନାରୀ ନୁହଁନ୍ତି; ସେ ହେଉଛନ୍ତି ପ୍ରତିବସ୍ତୁଜଗତର ପୁରୁଷ ।

"ପୁରୁଷ ?" ସମସ୍ତଙ୍କ ମୁହଁରେ ଗଭୀର ବିସ୍ମୟର ଚିହ୍ନ । ସଙ୍ଗେ ସଙ୍ଗେ ଦୁଇ-ତିନିଜଣ ପୋଲେଭିନ୍‌ଙ୍କ ବିରୁଦ୍ଧ ପକ୍ଷ ଯୁବକ ବୈଜ୍ଞାନିକ ଉଠି ଠିଆହୋଇ କହିଲେ—ମହାକାଶଚାରୀ କାମସ୍କିନ୍ କି ତାଙ୍କ ଦଳ ପୁରୁଷ ସ୍ତ୍ରୀ ଭିତରେ ପାର୍ଥକ୍ୟ ବାଛିବାପାଇଁ ଏମିତି ଭୁଲ୍ କରି ନ ପାରନ୍ତି । ଶରୀର ଉପରେ ନାରୀସୁଲଭ ଗୁଣ ନଦେଖି କାମସ୍କିନ୍ ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଥାଆନ୍ତେ ବା କାହିଁକି ? ପୁରୁଷ ତ କେବେ ପୁରୁଷ ଆଡ଼କୁ ଆକୃଷ୍ଟ ହୋଇ ନ ପାରେ । କାମସ୍କିନ୍ ଯେହେତୁ ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଥିଲେ, ଏହା ସ୍ପଷ୍ଟଭାବରେ ପ୍ରତିପାଦିତ କରୁଛି ଯେ, ସେ ଯୁବକ ନୁହଁନ୍ତି—ଯୁବତୀ । ତା'ଛଡ଼ା କାମସ୍କିନ୍‌ଙ୍କ ଦଳ ଧ୍ୱଂସ ପାଇବା ପୂର୍ବରୁ ସେମାନଙ୍କ ବକ୍ତବ୍ୟ ସବୁ ଯାହା ଆମ ସିରସ୍ ଗ୍ରହାଣୁ ଷ୍ଟେସନରେ ଲିପିବଦ୍ଧ କରିଯାଇଛନ୍ତି, ସେଥିରୁ ଜଣାପଡ଼ୁଛି, ଅପରପକ୍ଷର ମହାକାଶଯାନର ଚାଳକ ଜଣେ ନାରୀ । ନାରୀସୁଲଭ ସମସ୍ତ ପ୍ରକାର ଗୁଣ ତାଙ୍କ ଶରୀରରେ ବିଦ୍ୟମାନ । ଏଭଳି ସ୍ପଷ୍ଟ ପ୍ରମାଣ ଉଲ୍ଲେଖ ଥିବାବେଳେ ବୈଜ୍ଞାନିକ ପୋଲେଭିନ୍ ତାଙ୍କୁ ପୁରୁଷ ବୋଲି ଅଭିହିତ କରିବା ଅର୍ଥ ଖାଲି ଯେ ପ୍ରମାଦପୂର୍ଣ୍ଣ ତା ନୁହେଁ, ଆମ୍ଭମାନଙ୍କୁ ଏକ ଭୁଲ ବାଟରେ ନେବାର ଚେଷ୍ଟା କରୁଛନ୍ତି ।

ଏହି ଯୁବକ ବୈଜ୍ଞାନିକଙ୍କ କଟୂକ୍ତି ଶୁଣି ପୋଲେଭିନ୍ ବିଚଳିତ ନହୋଇ ହସି ହସି କହିଲେ—ମୁଁ ଆପଣମାନଙ୍କ କଥାକୁ ଅଗ୍ରାହ୍ୟ କରୁନି । ମହାକାଶଚାରୀ କାମସ୍କିନ୍ ମହାଶୂନ୍ୟରେ ପ୍ରତିବସ୍ତୁଜଗତର ଏକ ନାରୀକୁ ଦେଖି ତା'ଆଡ଼କୁ ଆକୃଷ୍ଟ ହୋଇଥିବା କଥା ଓ ତାଙ୍କ ଦଳର ସମସ୍ତେ ତାଙ୍କୁ ସ୍ତ୍ରୀରୂପରେ ଦେଖିଥିବା କଥାକୁ ମୁଁ ମୋଟେ ଅସ୍ୱୀକାର କରୁନି । ତେଣୁ ଆପଣମାନଙ୍କର ବ୍ୟସ୍ତ ହେବାର କାରଣ ନାହିଁ । ବର୍ତ୍ତମାନ ପ୍ରଶ୍ନ ହେଉଛି, କାମସ୍କିନ୍ ଓ ତାଙ୍କ ଦଳ ଯାହାଙ୍କୁ ଏକ ନାରୀରୂପରେ ଦେଖିଥିଲେ, ସେ ପ୍ରକୃତରେ ନାରୀ କି ପୁରୁଷ ?

ପୋଲେଭିନ୍‌ଙ୍କ ଉକ୍ତିରେ ସାରା ଆଲୋଚନାକକ୍ଷ ପୁଣି ନିସ୍ତବ୍ଧ ହୋଇଗଲା । ସମସ୍ତେ ନୀରବ ହୋଇପଡ଼ିଲେ । ପୋଲେଭିନ୍‌ଙ୍କ ପ୍ରଶ୍ନର ଉତ୍ତର ଦେବା କାହାରି ପକ୍ଷରେ ସମ୍ଭବ ହେଲାନି । ନାରୀ-ଲକ୍ଷଣ ଥିବା ଲୋକକୁ ନାରୀ କୁହାଯିବ କି କ'ଣ, ହେଉଛି ପୋଲେଭିନ୍‌ଙ୍କ ପ୍ରଶ୍ନର ଉଦ୍ଦେଶ୍ୟ । ଏ ବି ବଡ଼ ଜଟିଳ କଥା । ଉପରୁ ଦେଖିଲେ ଅତି ସ୍ପଷ୍ଟ ନାରୀ-ଲକ୍ଷଣ ଥିବା ଲୋକ ନାରୀ ନୁହେଁ ତ ଆଉ କ'ଣ ହୋଇପାରେ ? କିନ୍ତୁ ପ୍ରତିବସ୍ତୁଜଗତର ଲୋକଠାରେ ନାରୀର ଲକ୍ଷଣ ଥିଲେହେଁ ସେ ନାରୀ ବୋଲି ଦୃଢ଼ତାର ସହିତ କିଏ ବା କହିପାରିବ ?

ଆଲୋଚନାକକ୍ଷ ନୀରବତାରେ କିଛି ସମୟ କଟିଗଲା । ପୋଲେଭିନ୍ ଚାରିଆଡ଼କୁ

ଅନାଇ ସମସ୍ତେ ନୀରବ ଦେଖି କହିଲେ—ମୁଁ ଗତ କେତେଦିନ ଧରି ନାନାପ୍ରକାର ଗବେଷଣା ଫଳରେ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛି, ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ନହୋଇ ରହିପାରିବେ ନାହିଁ । ଯେହେତୁ ପ୍ରତିବସ୍ତୁଜଗତ୍‌ର ବହୁ ପ୍ରାକୃତିକ ନିୟମ ବସ୍ତୁଜଗତ୍‌ର ପ୍ରାକୃତିକ ନିୟମଠାରୁ ଅଲଗା, ପ୍ରାଣୀ-ଜଗତ୍‌ର ପ୍ରାକୃତିକ ନିୟମ ସେହିଭଳି ଦୁଇଟି କ୍ଷେତ୍ରରେ ଅଲଗା ଅଲଗା ହେବାରେ ବିଚିତ୍ରତା କଅଣ ? ପ୍ରତିବସ୍ତୁଜଗତ୍‌ର ପୁରୁଷର ବାହ୍ୟ ଲକ୍ଷଣ ବସ୍ତୁ-ଜଗତ୍‌ର ପୁରୁଷର ବାହ୍ୟ ଲକ୍ଷଣର ବିପରୀତ ଓ ବସ୍ତୁଜଗତ୍‌ର ନାରୀର ବାହ୍ୟ ଲକ୍ଷଣ ପ୍ରତିବସ୍ତୁଜଗତ୍‌ର ନାରୀର ବାହ୍ୟ ଲକ୍ଷଣର ଯଦି ଓଲଟା ହୁଏ, ତେବେ ପ୍ରତିବସ୍ତୁଜଗତ୍‌ର ପୁରୁଷର ବାହ୍ୟ ଲକ୍ଷଣ ବସ୍ତୁଜଗତ୍‌ର ନାରୀର ବାହ୍ୟ ଲକ୍ଷଣ ସହିତ ସମାନ ହେବା ଅସମ୍ଭବ ନୁହେଁ । ସେହିଭଳି ପ୍ରତିବସ୍ତୁଜଗତ୍‌ର ନାରୀ ବସ୍ତୁଜଗତ୍‌ରେ ପୁରୁଷର ବାହ୍ୟ ଲକ୍ଷଣ ନେଇ ସୃଷ୍ଟି ହେବାରେ ବିଚିତ୍ରତା ବା କେଉଁଠି ? ମୋଟ ଉପରେ କହିବାକୁ ଗଲେ ଆମ ଦେଶର ନାରୀର ଯେଉଁସବୁ ବାହ୍ୟ ଲକ୍ଷଣ; ଯଥା—କୋମଳ ସ୍ୱର, ମୁଖର ଓ ଶରୀରର କୋମଳତା ଓ ଆକର୍ଷଣୀୟତା, ମୁହଁରେ ଲୋମ ବା ବାଳର ଅନୁପସ୍ଥିତି, ଉନ୍ନତ ଓ ମାଂସଳ ବକ୍ଷ ଓ ବକ୍ଷୋଜ ଆଦି ପ୍ରତିବସ୍ତୁଜଗତ୍‌ର ପୁରୁଷଠାରେ ଦେଖାଯାଇପାରେ ଓ ଆମ ବସ୍ତୁଜଗତ୍‌ର ପୁରୁଷର ଲକ୍ଷଣ; ଯଥା—କର୍କଶ ସ୍ୱର, ଚର୍ମର କର୍କଶତା, ମୁହଁରେ ନିଶ ଦାଢ଼ି ଆଦି ପ୍ରତିବସ୍ତୁଜଗତ୍‌ର ନାରୀଠାରେ ଦେଖାଯିବାରେ ବିଚିତ୍ରତା ନାହିଁ । ତେଣୁ ପ୍ରତିବସ୍ତୁଜଗତ୍‌ର ପୁରୁଷ ଲିଙ୍ଗ ଥାଇ ମଧ୍ୟ ଉପରୋକ୍ତ ପୁରୁଷସୁଲଭ ଲକ୍ଷଣର ଅଭାବ ହେତୁ ସେ ଆମକୁ ସ୍ତ୍ରୀ ବୋଲି ଜଣାଯାଇପାରେ । ଆପଣମାନେ କେବେ ଯଦି ମୋ ଗବେଷଣାଗାରକୁ ଯାଇ-ପାରନ୍ତି, ତେବେ ସେଠାରେ ଦେଖିବାକୁ ପାଇବେ ଏହାକୁ ପ୍ରତିପାଦିତ କଲାଭଳି କେତେଗୁଡ଼ିଏ ପରୀକ୍ଷା । ମୁଁ ଯେ ବିନା ଅଭିଜ୍ଞତାରେ ଏହି ତଥ୍ୟ ଉପସ୍ଥାପିତ କରୁଛି ତା' ନୁହେଁ, ପ୍ରତିବସ୍ତୁଜଗତ୍‌ରେ ପ୍ରାକୃତିକ ନିୟମଗୁଡ଼ିକ ଯେମିତି ଓଲଟା, ଯାହା ପୂର୍ବରୁ ଅନ୍ୟ ବକ୍ତାମାନେ ଆଲୋଚନା କରିଛନ୍ତି, ଏହି ପୁରୁଷ ସ୍ତ୍ରୀସୁଲଭ ଲକ୍ଷଣ ସୃଷ୍ଟି କରିବାରେ ଓଲଟା ପ୍ରକୃତି କାର୍ଯ୍ୟ କରିବା କିଛି ବିଚିତ୍ର ନୁହେଁ । ମୋ ମତରେ କାମରୂନ୍ ମହାକାଶ ମଧ୍ୟରେ ଯେଉଁ ନାରୀଟି ପ୍ରତି ଆକୃଷ୍ଟ ହୋଇ ନିଜକୁ ଓ ନିଜ ଦଳକୁ ଧ୍ୱଂସମୁଖକୁ ଠେଲିଦେଇଥିଲେ ସେ ଯେ ପ୍ରକୃତରେ ଜଣେ ପୁରୁଷ, ଏହା ଯଦି କାମରୂନ୍ ଜାଣିପାରିଥାନ୍ତେ ତେବେ ହୁଏତ ଆମର ଏତେବଡ଼ ଅଭିଯାନ ଓ ଆମର ଦକ୍ଷ ମହାକାଶଚାରୀଗୁଡ଼ିକ ଧ୍ୱଂସମୁଖରେ ନପଡ଼ି ରକ୍ଷା ପାଇଯାଇଥାନ୍ତେ ।

ପୋଲେଭିନ୍‌ଙ୍କ ଏହି ଯୁକ୍ତି ଶୁଣି ସମସ୍ତେ ନୀରବ ଓ ନିସ୍ତବ୍ଧ; ଯେମିତି ଜଣାପଡୁଥାଏ ଏତେବଡ଼ ଆଲୋଚନା-କକ୍ଷରେ ଜଣେ ବୁଦ୍ଧିଲୋକ ନାହିଁ ପୋଲେଭିନ୍‌ଙ୍କ ମତକୁ କାଟିଦେବ ଏତେ ସହଜରେ । କାହାର ବା ସେ ଦିଗରେ ଗବେଷଣା ଅଛି ? ପୋଲେଭିନ୍‌ଙ୍କ ଭଳି କିଏବା ସେ ଦିଗରେ ଏତେ ଚିନ୍ତା କରୁଛି ? ପୋଲେଭିନ୍‌ଙ୍କ

ବକ୍ତୃତା ପରେ ସେଦିନର ଆଲୋଚନା ପରଦିନକୁ ମୁଲତବି ରହିଲା ।

ଆଲୋଚନା-କକ୍ଷରେ ଓ ଆଲୋଚନା ପରେ ବହୁ ବୈଜ୍ଞାନିକ ଏମିତି କି ମନବର୍ମନ୍‌ଙ୍କ ଦଳରୁ କେତେକ ପୋଲେଭିନ୍‌ଙ୍କ ମତକୁ ଗ୍ରହଣ କରୁଥିଲାବେଳେ ମନବର୍ମନ୍ ଏହି ନୂତନ ଧାରଣାଟିକୁ ଗ୍ରହଣ କରିପାରୁ ନଥାନ୍ତି । ତାଙ୍କ ମନ ଭିତରେ ଦ୍ୱନ୍ଦ୍ୱ ଚାଲିଥାଏ; ବସ୍ତୁଜଗତ୍‌ର ନାରୀର ରୂପ ପ୍ରତିବସ୍ତୁଜଗତ୍‌ର ପୁରୁଷର ରୂପ ସହିତ ସମାନ, ପ୍ରତିବସ୍ତୁ-ଜଗତ୍‌ର ପୁରୁଷର ରୂପ ବସ୍ତୁଜଗତ୍‌ର ନାରୀର ରୂପ ସହିତ ସମାନ ? କାମରାନ୍ ମହାଶୂନ୍ୟରେ ଯେଉଁ ନାରୀ ଦେଖିଥିଲେ ସେ ନାରୀ ନୁହେଁ—ପୁରୁଷ ? ଅସମ୍ଭବ ! ଏ ସିଦ୍ଧାନ୍ତ ମୋଟେ ଗ୍ରହଣଯୋଗ୍ୟ ନୁହେଁ ।

## ଷୋହଳ

ଯଥାସମୟରେ ଶନାର ଅପରେସନ୍ ସମ୍ପାଦିତ ହେଲା । ଶନାର ଜରାୟୁରେ ପ୍ରାକୃତିକ ରୀତିରେ ସୃଷ୍ଟି ହୋଇଥିବା ନିଷିକ୍ତ ଡିମ୍ବାଣୁକୁ ବାହାର କରି ପରୀକ୍ଷାଗାରର କୃତ୍ରିମ ପୋଷକ ମାଧ୍ୟମରେ ରଖାଗଲା । ଡକ୍ଟର ପୋଲେଭିନ୍ ବଡ଼ ଖୁସି । ଅପରେସନ୍ ଖୁବ୍ କୃତକାର୍ଯ୍ୟ ହୋଇଛି । ନିଷିକ୍ତ ଡିମ୍ବାଣୁ ଏକ ମଣିଷ ରୂପରେ ଆତ୍ମପ୍ରକାଶ କରିବ ଅଳ୍ପଦିନ ପରେ । ପୃଥିବୀର ପୁରୁଷ ଓ ଚନ୍ଦ୍ରର ସ୍ତ୍ରୀ ଏ ଦୁହିଁଙ୍କର ମିଳନର ପ୍ରତୀକ ହେବ ଏହି ନବାଗତଟି । ଶନାଠାରୁ ଆରମ୍ଭ କରି ଚିକିତ୍ସାଳୟର ସମସ୍ତେ ଅପେକ୍ଷା କରି ରହିଲେ ସେହି ଦିନକୁ, ଯେଉଁଦିନ ନବାଗତ ଏକ ନିର୍ଜୀବ କାଚଯନ୍ତ୍ର ଭିତରୁ ଆତ୍ମପ୍ରକାଶ କରିବ ଏକ ମଣିଷଶିଶୁ ରୂପରେ ।

ଚିକିତ୍ସାଳୟରେ ଥିଲାବେଳେ ଏକ ଜରୁରୀ ବାର୍ତ୍ତା ପାଇଲି ରାଜଧାନୀରୁ—ମହାଶୂନ୍ୟ ଭ୍ରମଣ ନେଇ ଏକ ଯୋଜନାରେ ମୋତେ ଯୋଗ ଦେବାକୁ ଡାକରା । ମଧ୍ୟ ନକ୍ଷତ୍ରମଣ୍ଡଳରେ ଥିବା କେ-ଜେଡ୍-ସି-୯ ଗ୍ରହ ଅଭିମୁଖେ ଅଭିଯାନ କରିବା ପାଇଁ ବନ୍ଦୋବସ୍ତ ଚାଲିଥାଏ । ମୋତେ ଏହି ମହାକାଶଯାତ୍ରୀ ଦଳରେ ଯିବାପାଇଁ ଡାକରା ଆସିଲା । ବାର୍ତ୍ତା ପାଇଲା ମାତ୍ରେ ଚାଲିଗଲି ରାଜଧାନୀ ଅଭିମୁଖେ ।

ଶନା ପାଇଁ ମନରେ ଯେଉଁ ଭୟ ଥିଲା ତା' ତ ଚାଲିଯାଇଛି । ଏବେ ଶନାଠାରୁ ବେଶ୍ ଆନନ୍ଦରେ ବିଦାୟ ନେଇ ହେବ । ନିଷିକ୍ତ ଡିମ୍ବାଣୁଟି ଯନ୍ତ୍ର ଭିତରୁ ମଣିଷରୂପ ନେଇ ବାହାରିଲା ପର୍ଯ୍ୟନ୍ତ ଶନାକୁ ଅପେକ୍ଷା କରି ରହିବାକୁ ପଡ଼ିବ ଏହି ଚିକିତ୍ସାଳୟରେ । ମୋ ଗ୍ରହାନ୍ତର ଅଭିଯାନରେ ମୋତେ ବିଦାୟ ଦେବା ପାଇଁ ଶାର୍ଙ୍ଗରନା, କେବଲପ୍ରାୟ ଆଦି ସମସ୍ତେ ଆସିଲେ । ମୁଁ ସମସ୍ତଙ୍କଠାରୁ ଯଥାରୀତିରେ ବିଦାୟ ନେଇ ବାହାରିଲି ରାଜଧାନୀ

ଅଭିମୁଖେ । ଶନାକୁ କହିଦେଇ ଯାଇଥିଲି, ଯଦି ସୁବିଧା ହୁଏ ତେବେ ଚନ୍ଦ୍ରଲୋକ ଛାଡ଼ିବା ପୂର୍ବରୁ ଆଉ ଥରେ ଆସି ଶନାକୁ ସାକ୍ଷାତ ଦେଇଯାଇପାରେ ।

× × ×

ମଘା ନକ୍ଷତ୍ରର କେ-ଜେଡ୍-ସି-୯ ଗ୍ରହ ଅଭିମୁଖେ ଯିବାପାଇଁ ବିରାଟ ଯୋଜନା । ଏହି ଅଭିଯାନରେ ଆମେ ଚାରିଜଣ ଯିବାପାଇଁ ଠିକ୍ ହୋଇଥାଏ । ଆମ ଦଳର ଦଳପତି ହୋଇଥାନ୍ତି କାମଗ୍ରିନ୍‌ଙ୍କ ଭଳି ଜଣେ ଦକ୍ଷ ମହାକାଶଚାରୀ ରମ୍‌ଦେବ । କାମଗ୍ରିନ୍‌ଙ୍କ ପରେ ସେ ଥାଆନ୍ତି ଚନ୍ଦ୍ରଲୋକର ସବୁଠାରୁ ଦକ୍ଷ ମହାକାଶଚାରୀ । ତେଣୁ ତାଙ୍କଭଳି ଜଣେ ଅଭିଜ୍ଞ ମହାକାଶଚାରୀଙ୍କ ସଙ୍ଗେ ଅଭିଯାନରେ ଗଲେ ମହାକାଶ ସମ୍ବନ୍ଧୀୟ ବହୁତ କିଛି କଥା ଶିଖିହେବ ଜାଣି ଖୁସି ଲାଗୁଥାଏ ।

ଆମ ଅଭିଯାନପାଇଁ ଜୋର୍‌ସୋର୍‌ରେ ବନ୍ଦୋବସ୍ତ ଚାଲିଥାଏ । ପୂର୍ବଭଳି ସିରସ୍ ଗ୍ରହାଣୁରୁ ଅଭିଯାନ ଆରମ୍ଭ ହେବା କଥା । ତେଣୁ ଚନ୍ଦ୍ରଲୋକରୁ ସମସ୍ତ ଜିନିଷପତ୍ର ସିରସ୍ ଗ୍ରହାଣୁକୁ ବୁହାଯାଇ ସବୁ ଯୋଗାଡ଼ଯନ୍ତ୍ର ଚାଲିଥାଏ । ମହାକାଶଚାରୀ ରମ୍‌ଦେବ ନାନା-ପ୍ରକାର ତଥ୍ୟ ସଂଗ୍ରହରେ ଲାଗିପଡ଼ିଛନ୍ତି । ଆମ ଅଭିପ୍ରେତ ଗ୍ରହ ସଂପର୍କରେ ପ୍ରତିଦିନ ଯେଉଁସବୁ ନୂତନ ତଥ୍ୟ ସଂଗୃହୀତ ହେଉଥାଏ, ସେଗୁଡ଼ିକୁ ସଙ୍ଗେ ସଙ୍ଗେ ଯୋଗାଇ ଦିଆଯାଉଥାଏ ରମ୍‌ଦେବଙ୍କୁ । ସେଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରି ସେଥିରୁ ନାନା ତଥ୍ୟ ସେ ସଂଗ୍ରହ କରୁଥାନ୍ତି । ଆମ ଅଭିଯାନ ଆରମ୍ଭ ହେବାକୁ ଆଉ ପ୍ରାୟ ପନ୍ଦର ଦିନ ବାକିଥାଏ,ହଠାତ୍ ଶନା ପାଖରୁ ଏକ ବାର୍ତ୍ତା ପାଇଲି । ତାର ଭାରି ଜିଦ୍ ମହାକାଶକୁ ଯିବା ପୂର୍ବରୁ ମୁଁ ଯେମିତି ଥରେ ତା ପାଖକୁ ଯାଏ । ନବାଗତ ସନ୍ତାନଟି ନେଇ କଣ ଏକ ଗୋଲମାଲ ଘଟିଥିବାରୁ ତା ମନ ବିଶେଷ ଭଲ ନଥାଏ । ତେଣୁ ଏଭଳି ପରିସ୍ଥିତିରେ ମୋର ତାକୁ ସାକ୍ଷାତ୍ ନକଲେ ଉପାୟ ନାହିଁ । ମହାକାଶ ଅଭିଯାନର କର୍ତ୍ତୃପକ୍ଷଙ୍କଠାରୁ ଅନୁମତି ନେଇ ଶନା ପାଖକୁ ଆସିଲି । ଦୁଇ-ଚାରିଦିନ ଭିତରେ ଫେରିଆସିବି ବୋଲି ସେମାନଙ୍କୁ କହି ଆସିଥାଏ । ଶନା ସେତେବେଳ ପର୍ଯ୍ୟନ୍ତ ଅବସ୍ଥାନ କରୁଥାଏ ସେହି ଚିକିତ୍ସାଳୟରେ ଓ ନବାଗତ ସନ୍ତାନଟି ବଢ଼ିବାରେ ଲାଗିଥାଏ ପୋଷକ ମାଧ୍ୟମରେ । ଦଶମାସ ପୂର୍ତ୍ତିହେଲେ ଶନା ପିଲାଟିକୁ ସାଙ୍ଗରେ ନେଇ ଘରକୁ ଫେରିବ ବୋଲି ଠିକ୍ ହୋଇଥାଏ ।

ଶନା ପାଖରେ ପହଞ୍ଚି ତା'ର ବଡ଼ ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟ କଲି । ସେ ଏକ ସନ୍ତାନର ମା' ହେବାକୁ ଯାଉଛି; ସୁତରାଂ ଅତି ଆନନ୍ଦିତ ହେବା କଥା । ଏ ପୁଣି ସାଧାରଣ ମା' ହେବା କଥା ନୁହେଁ; ଯେଉଁ ସନ୍ତାନ ପାଇବାପାଇଁ ବର୍ଷ ବର୍ଷ ଧରି ଚିନ୍ତା ଦୁର୍ଭାବନା ଭିତରେ ଗତି କରିବାକୁ ପଡ଼ିଛି, ଆଜି ସେସବୁ କଟିଯାଇ ଅତି ନିରାପଦରେ ସନ୍ତାନର ମା'ହେବ—ଏହାଠାରୁ ସୁଖର କଥା ଆଉ କ'ଣ ବା ହୋଇପାରେ ? ତେଣୁ ଏଭଳି ପରି-ସ୍ଥିତିରେ ଶନା ଅତ୍ୟନ୍ତ ଖୁସି ହେବାର କଥା; ମାତ୍ର ତା'ଠାରେ ଆନନ୍ଦର କିଛିମାତ୍ର ଲକ୍ଷଣ ନଦେଖି ବଡ଼ ଚକିତ ହୋଇପଡ଼ିଲି । ଶନାକୁ ତା'ର ଦୁଃଖର କାରଣ ପଚାରିଲି । ସେ

ମୋତେ କିଛି ଉତ୍ତର ଦେବା ପୂର୍ବରୁ କହିଁକହିଁ ହୋଇ କାନ୍ଦିବାକୁ ଆରମ୍ଭ କଲା । ଅଳ୍ପ ସମୟ ଭିତରେ ଡାକ୍ତରମାନେ ଆସି ମୋ ପାଖରେ ଏକତ୍ରିତ ହୋଇଗଲେ । ବୈଜ୍ଞାନିକ ପୋଲେଭିନ୍ ସେତେବେଳେ ଚନ୍ଦ୍ରାଳୟରେ ନଥାନ୍ତି—ଏକ ଆଲୋଚନା ସଭାରେ ଯୋଗ ଦେବାପାଇଁ ଯାଇଥାନ୍ତି । ରିନାର ଦାୟିତ୍ୱ ବହନ କରିଥିବା ଚିକିତ୍ସକଙ୍କୁ ରିନାର କ'ଣ ହୋଇଛି ବୋଲି ପଚାରିଲି । ଚିକିତ୍ସକ ଏ ବିଷୟରେ ଚିନ୍ତିତ ଥିଲା ଭଳି ଜଣାପଡ଼ୁ ଥିଲେ । ପ୍ରକୃତରେ କ'ଣ ହୋଇଛି ଜଣାଇବା ପାଇଁ ବାଧ୍ୟ କଲାରୁ ସେ ମୋତେ ଡାକିନେଇଗଲେ ଗବେଷଣାଗାର ଭିତରକୁ, ଯେଉଁଠି ସେହି ନିଷିକ୍ତ ଡିମ୍ବାଣୁଟି ପୋଷକ ମାଧ୍ୟମ ଭିତରେ ବଢ଼ୁଛି । ଇତିମଧ୍ୟରେ ପ୍ରାୟ ନଅମାସ ବିତିଗଲଣି । ଆଉ ପ୍ରାୟ ମାସକ ପରେ ସନ୍ତାନଟି ପୋଷକ ମାଧ୍ୟମ ଭିତରୁ ବାହାରି ଆସିବ ଏକ ଜୀବନ୍ତ ସନ୍ତାନ ହୋଇ । ଗବେଷଣାଗାର ଭିତରକୁ ପଶିଯାଇ ଶିଶୁଟିର ଆକାର ଦେଖି ମୁଁ ତଟସ୍ଥ ହୋଇଗଲି । ନଅମାସର ପିଲା, ଗଠନର ପୂର୍ଣ୍ଣତା ଆସି ଜନ୍ମ ହେବାକୁ ଆହୁରି ପ୍ରାୟ ମାସେ ବାକି ଅଛି—ତା'ର ଉଚ୍ଚତା ହୋଇଛି ଛଅ ଫୁଟ, ଓଜନ ଦେଢ଼ଶ ପାଉଣ୍ଡ । ପୃଥିବୀର ସାଧାରଣ ପୂର୍ଣ୍ଣବୟସ୍କ ଲୋକର ଆକାର ଓ ଓଜନ ଯାହା, ଜନ୍ମ ହେବା ପୂର୍ବରୁ ଶିଶୁଟିକୁ ସେତିକି ବଡ଼ ଦେଖିଲେ କିଏ ପ୍ରକୃତରେ ଆଶ୍ଚର୍ଯ୍ୟ ନ ହେବ ? ହଠାତ୍ ଭାବିପାରିଲି ନାହିଁ—ଏ କ'ଣ ମୁଁ ଦେଖୁଚି । ଇଏ ତ ମୋର ସନ୍ତାନ । ସବୁକିଛି ଭାବିଲାବେଳକୁ ମୁଣ୍ଡ ମୋର ଗୋଳମାଳ ହୋଇ ଯାଉଥାଏ । ଜନ୍ମ ହେବାର ଏକମାସ ପୂର୍ବରୁ କୌଣସି ଶିଶୁ କେବେ କ'ଣ ଏଡ଼େବଡ଼ ହୋଇପାରେ ? ଏ ପିଲାଟି ଯଦି ମା'ର ଜରାୟୁରେ ବଢ଼ିଥାନ୍ତା, ତେବେ କେଉଁ ମା' ଏହି ଶିଶୁଟିକୁ ନିଜ ଉଦରରେ ରଖିପାରିଥାନ୍ତା ! ପାଞ୍ଚ ଫୁଟ ଉଚ୍ଚର ମା' ପେଟରେ କେବେକି ଛ'ଫୁଟ ଉଚ୍ଚର ଶିଶୁ ରହିପାରେ ?

ଫେରିଗଲି ରିନା ପାଖକୁ । ରିନା ମୁହଁ ଶୁଖାଇ ବସିଥାଏ । ଚନ୍ଦ୍ରାଳୟରେ ସନ୍ତାନର ଅଭିବୃଦ୍ଧି ନେଇ ଯେଉଁସବୁ ଅସ୍ୱାଭାବିକ ପରିବର୍ତ୍ତନ ଘଟିଛି, ସେ ମୋତେ ସବୁ ଗୋଟି ଗୋଟି କରି କହିଲା । ରିନାକୁ ବା କ'ଣ ଆଶ୍ୱାସନା ଦେବି ? ରିନାକୁ ଧରି ଆଉ ଥରେ ସେହି ଶିଶୁପାଖକୁ ଗଲି । ପୋଷକ ମାଧ୍ୟମ ଭିତରେ ଶିଶୁଟି ବେଶ୍ ଆରାମରେ ବଢ଼ିବାରେ ଲାଗିଛି । ଶିଶୁଟିକୁ ଦେଖି ରିନା ଧୈର୍ଯ୍ୟ ଧରି ରହିପାରିଲା ନାହିଁ । ମୋତେ କୁଣ୍ଢାଇ ଧରି ପୁଣି କହିଁକହିଁ ହୋଇ କାନ୍ଦିବାକୁ ଲାଗିଲା । ଶିଶୁଟି ପୁରୁଷ ସନ୍ତାନ ହେବାର ସବୁ ଲକ୍ଷଣ ଦେଖାଗଲଣି, ଠିକ୍ ଅବିକଳ ମୋର ରୂପ ନେଇଛି । କି ଅଦ୍ଭୁତ ଆକାର, ଏହି ଅବସ୍ଥାର ମଧ୍ୟ ଉଚ୍ଚତା ଓ ଓଜନରେ ମୋଠାରୁ କିଛି କମ୍ ନୁହେଁ ।

ପୃଥିବୀର ବୀଜ ଚନ୍ଦ୍ରଲୋକରେ ଗୁପ୍ତ ହୋଇ ଅଦ୍ଭୁତ ଧରଣର ଫଳ ହେଲାଭଳି ଏ ଶିଶୁଟିର ଭବିଷ୍ୟତ ସମ୍ବନ୍ଧରେ ଡାକ୍ତରମାନେ ମୂଳରୁ ସନ୍ଦେହ କରିପାରୁ ନଥିଲେ । ଏହି ଆଶଙ୍କାକୁ ଦୂର କରିବାପାଇଁ ସେମାନେ ଯେଉଁ ବ୍ୟବସ୍ଥା ଗ୍ରହଣ କଲେ, ତା' ପ୍ରମାଦଯୁକ୍ତ ବୋଲି ଏବେ ଜଣାପଡ଼ିଲା । ଡାକ୍ତର ପୋଲେଭିନ୍ ସ୍ୱୀକାର କଲେ, ଏହା

ତାଙ୍କ ଅଭିଜ୍ଞିୟାର ପ୍ରଧାନ ଭୁଲ । ଦୁଇଟି ଅଲଗା ଅଲଗା ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ ନେଇ ସେ ଯେଉଁ ଧାରଣା ପୋଷଣ କରୁଥିଲେ ତା ପୁରାପୁରି ପ୍ରମାଦଯୁକ୍ତ । ଆଜି ସେ ପ୍ରମାଦଯୁକ୍ତ ଅଭିଜ୍ଞିୟାର ଫଳ ଭୋଗକରିବାକୁ ପଡୁଛି ଶନାକୁ । ଉଦ୍ଭିଦ-ଜଗତରେ ଯେଉଁ ଅବସ୍ଥା କଚ୍ଛାଦନ ତଳେ ହୋଇଥିଲା, ପ୍ରାଣୀ-ଜଗତରେ ତା ହୁଏତ ହୋଇ ନପାରେ, ପୋଲେଭିନ୍‌ଙ୍କ ଏହି ଆଶା ଧୂଳିସାତ୍ ହୋଇଛି । ଏହାକୁ ବାଧା ଦେବାପାଇଁ ସେ ଯେତେ ପ୍ରକାର ବ୍ୟବସ୍ଥା ଗ୍ରହଣ କରିଛନ୍ତି, ସବୁ ପଣ୍ଡ ହୋଇଛି । ଶନା ଆଜି ମା' ହେବାକୁ ଯାଉଛି ଏକ ସାଧାରଣ ସନ୍ତାନର ନୁହେଁ, ଏକ ରାକ୍ଷସସନ୍ତାନର; ଯେଉଁ ସନ୍ତାନ ଜନ୍ମଲାଭ କଲେ ଶନାର ଖାଲି ସମସ୍ୟା ଯେ ବଢ଼ିଯିବ ତା ନୁହେଁ, ଏହି ରାକ୍ଷସ-ସନ୍ତାନଟିକୁ ନେଇ ସାରା ଚନ୍ଦ୍ରଲୋକରେ ସମସ୍ୟା ଦେଖାଦେବ । ଶନାକୁ କ'ଣ କହି ଆଶ୍ୱାସନା ଦେବ କିଛି ଭାବିପାରୁ ନ ଥାଏ । ହଠାତ୍ ଗୃହ ଭିତରକୁ ପଶିଆସିଲେ ପୋଲେଭିନ୍‌ଙ୍କ ପ୍ରଧାନ ସହକାରୀ । ଆସୁ ଆସୁ କହିଲେ, "ଦେଖ ଉତ୍କଳାବର୍ତ୍ତୀ, ଆମମାନଙ୍କ ବିରାଟ ଅଭିଜ୍ଞିୟା ଅକୃତକାର୍ଯ୍ୟ ହୋଇଛି । ସେଥିପାଇଁ ଆମେମାନେ ବଡ଼ ଦୁଃଖିତ । ଶନାକୁ ଏକ ସାଧାରଣ ସନ୍ତାନର ମା' ହେବାର ଗୌରବ ଆମେ ଦେଇପାରିଲୁ ନାହିଁ । ଏମିତି ଏକ ରାକ୍ଷସ-ସନ୍ତାନକୁ ଶନା ହାତରେ ଦେବାକୁ ଆମେ କେହି ରାଜି ନୋହୁଁ । ତେଣୁ ପୋଲେଭିନ୍‌ଙ୍କ ଇଚ୍ଛା ଏହି ରାକ୍ଷସ-ସନ୍ତାନଟି ଜନ୍ମ ହେବା ପୂର୍ବରୁ ତାଙ୍କୁ ନଷ୍ଟ କରିଦେବା ଭଲ ହେବ ।"

ଏହା ଶୁଣି ଚମକି ଉଠିଲା ଶନା । କହିଲା—ନା, ନା ଡାକ୍ତର ! ଆପଣ ଏମିତି କଥା ମୁହଁକୁ ଆଣନ୍ତୁ ନାହିଁ । ସେ ରାକ୍ଷସ-ପୁତ୍ର ହେଉ ପଛକେ ମୁଁ ତାର ମା' । ମୁଁ ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ । ପୁତ୍ରଟିର ପ୍ରତି ଅଙ୍ଗେ ଅଙ୍ଗେ ଫୁଟିଉଠୁଛି ଉତ୍କଳାବର୍ତ୍ତୀଙ୍କ ରୂପ । ଜନ୍ମଲାଭ ପରେ ସେ ରାକ୍ଷସ ହେଉ ବା ଅନ୍ୟ କିଛି ହେଉ, ମୁଁ ତାକୁ ପାଳନ କରିବାକୁ ପ୍ରସ୍ତୁତ । ତାକୁ ରାକ୍ଷସ କହି ଚନ୍ଦ୍ରଲୋକର ସମସ୍ତେ ଘୃଣା କରନ୍ତୁ ପଛକେ, ମୁଁ ତା'ର ମା' ଭାବରେ ଲାଳନପାଳନ କରିବାକୁ ପଛାଇବ ନାହିଁ । ଆପଣ ଦୟାକରି ଶିଶୁଟିକୁ ନଷ୍ଟ କରିବାର ନାଁ ଧରନ୍ତୁ ନାହିଁ । ସମସ୍ତ ପ୍ରକାର ଯନ୍ତ୍ରସହକାରେ ଶିଶୁଟିକୁ ଜନ୍ମ ଦେବାକୁ ଚେଷ୍ଟା କରନ୍ତୁ । ଶିଶୁଟିକୁ କୋଳରେ ଧରିବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ ହେଁ ସନ୍ତାନର ମା' ହେବାର ସୌଭାଗ୍ୟରୁ ମୋତେ ବଞ୍ଚିତ କରନ୍ତୁ ନାହିଁ ଡାକ୍ତର !

କିନ୍ତୁ ସେ ଶିଶୁଟି ଦୀର୍ଘାୟୁ ହେବନାହିଁ ଶନା ! ସାଧାରଣ ମନୁଷ୍ୟର ଆୟୁ ଯେତେ, ତା'ର ଛ' ଭାଗରୁ ଭାଗେ ବୟସରେ ସେ ଇହଧାମ ତ୍ୟାଗ କରିବ ।—ଡାକ୍ତର କହିଲେ ।

—ଯେତେ ଅଳ୍ପାୟୁ ହେଲେ ମଧ୍ୟ ମୋତେ ମାତୃତ୍ୱର ଗୌରବରୁ ବଞ୍ଚିତ କରନ୍ତୁ ନାହିଁ ଡାକ୍ତର ! ଯେତେଦିନ ପର୍ଯ୍ୟନ୍ତ ସେ ଜୀବିତ ଥିବ ସେତେଦିନ ପର୍ଯ୍ୟନ୍ତ ମୁଁ ତାକୁ ଚାହିଁ ମାତୃତ୍ୱର ଗୌରବ ଅନୁଭବ କରୁଥିବ ।

—ତୁମେ ଜାଣିଛ ଶନା—ଡାକ୍ତର କହିଲେ, ଏ ଶିଶୁଟି ଯେତେବେଳେ ଯୁବକ ହେବ

ତା'ର ଉଚ୍ଚତା ହେବ ଚାଳିଶ ଫୁଟ ପାଖାପାଖି । ଏମିତ ଏକ ମଣିଷକୁ ରଖିବାପାଇଁ ସ୍ୱତନ୍ତ୍ର ଗୃହ ପ୍ରସ୍ତୁତ କରିବାକୁ ପଡ଼ିବ । ସାଧାରଣ ରାସ୍ତାଘାଟରେ ସେ ଯାଇଆସି ପାରିବ ନାହିଁ, ସାଧାରଣ ଯାନବାହନ ତାକୁ ନେଇ-ଆଣି ପାରିବ ନାହିଁ । ସମାଜରେ ତାକୁ ସମସ୍ତେ ରାକ୍ଷସ କହି ଘୃଣା କରିବେ, ଏହିସବୁ ଅସୁବିଧା ଓ ଘୃଣାକୁ ତୁମେ ସହ୍ୟ କରିପାରିବ ତ ? ଏ ପୁଅଟିକୁ ଲାଳନପାଳନ କରିବାକୁ ଯାଇ ତୁମେ ତୁମର ଜୀବନକୁ ଖାଲି ହନ୍ତସନ୍ତ କରିବ ସିନା ?

—ନା, ନା ଡାକ୍ତର ! ସେମିତି ଭାବନ୍ତୁ ନାହିଁ । ମୁଁ କଷ୍ଟସହି ପାରିବି । ତା'ପାଇଁ ସ୍ୱତନ୍ତ୍ର ଘର, ସ୍ୱତନ୍ତ୍ର ସାଜ-ସରଞ୍ଜାମ, ସ୍ୱତନ୍ତ୍ର ଯାନବାହନ କରିବାକୁ ମୁଁ ପ୍ରସ୍ତୁତ ଅଛି ।

× × ×

—ଯଥାସମୟରେ ଆମେମାନେ ଚନ୍ଦ୍ରଲୋକ ଛାଡ଼ିଲୁ ଗ୍ରହାଣୁ ସିରସ୍ ଅଭିମୁଖେ । ଆମ ଦଳରେ ମୋତେ ମିଶାଇ ଚାରିଜଣ । ଏକ ସାଧାରଣ ମହାଶୂନ୍ୟଯାନରେ ଆମେ ସିରସ୍‌କୁ ଆସିଲୁ । ସିରସ୍‌ରେ କିଛିଦିନ ଅବସ୍ଥାନ କରିବା ପରେ ଆମ ଅଭିଯାନ ଚାଲିବ ମଘା ନକ୍ଷତ୍ର ଅଭିମୁଖେ ।

ସିରସ୍‌ର ଅତିଥି ଭବନରେ ଦିନେ ମୁଁ ବିଛଣାରେ ଶୋଇ ରିନା କଥା ଭାବୁଛି— ବିସ୍ୱସ୍ତି କି ହଇରାଣ ନ ହେଉଛି ମୋତେ ବିବାହ କରି ? ମୋ ପାଇଁ ସିନା ତା'ର ଏହି ରାକ୍ଷସ-ପୁତ୍ରଲାଭ ! ମୋତେ ବିବାହ ନ କରି ସେ ଯଦି ଆଉ କାହାକୁ ବିବାହ କରିଥାନ୍ତା, କି ସୁଖରେ ସେ ଦିନ କାଟି ନଥାନ୍ତା ସତେ ? ନବାଗତ ଏ ରାକ୍ଷସ-ପୁତ୍ରକୁ ନେଇ ଜୀବନରେ ସେ ଯେ କି ହନ୍ତସନ୍ତ ହେବ, ଭାବି ଭାବି ମୁଁ ଥଳକୂଳ ପାଇଲିନି । ମା'ର ଉଚ୍ଚତା ପାଞ୍ଚଫୁଟ ଥିଲାବେଳେ ପୁଅର ଉଚ୍ଚତା ଯଦି ଚାଳିଶ ଫୁଟ ହୁଏ, ସେଭଳି ପୁଅର ମା' ହୋଇ ରିନା ଯେ କି ଗୌରବ ପାଇବ ମୁଁ ଭାବିପାରିଲି ନାହିଁ । ରାକ୍ଷସ-ପୁତ୍ରର ମା' ବୋଲି ଲୋକେ ତାକୁ କେତେ ଘୃଣା କରିବେ, ଛି ଛିକାର କରିବେ । କି ହତଭାଗିନୀ ସେ ? କେତେ କଷ୍ଟରେ ତା ଜୀବନ କଟିବ ! ମୋରି ପାଇଁ ସିନା ? ପୃଥିବୀ ଛାଡ଼ି ମୁଁ ଚନ୍ଦ୍ରଲୋକକୁ କାହିଁକି ଆସିଲି ? ଆସିଲି ଯଦି ଏଠିକାର ମାୟା-ମମତାରେ ପଡ଼ିଲି ବା କାହିଁକି ? ଚନ୍ଦ୍ରଲୋକରେ କିଛିଦିନ କଟାଇ ମୁଁ ତ ପୃଥିବୀକୁ ଫେରିଯାଇଥାନ୍ତି । କି ଅଶୁଭ ମୁହୂର୍ତ୍ତରେ ମୋର ରିନା ସହିତ ଦେଖାହେଲା କେଜାଣି, ବିସ୍ୱସ୍ତିର ଜୀବନ ମୋ'ରି ପାଇଁ ନଷ୍ଟ ହୋଇଗଲା । ଏସବୁ ଭାବିଲାବେଳକୁ ମୋ ଆଖିରେ ଲୁହ ଭରିଯାଉଥାଏ । ଭାବୁ ଭାବୁ କେତେବେଳେ ମୁଁ ଶୋଇପଡ଼ିଲି ମୋର ଖିଆଲ ନାହିଁ ।

ସ୍ୱପ୍ନରେ ଦେଖିଲି ଚିକିତ୍ସାଳୟରୁ ପୁଅଟିକୁ ନେଇ ରିନା ଫେରିଯାଉଛି ନିଜ ଘରକୁ । ଶିଶୁଟି ଠିଆହୋଇ ପାରୁନି, କଥା କହିପାରୁନି, ପରିଷ୍କାର ଅନାଇ ପାରୁନି; କିନ୍ତୁ ପିଲାଟିକୁ ଦେଖିଲାବେଳକୁ ପୂର୍ଣ୍ଣବୟସ୍କ ଲୋକର ଆକାର । ଏମିତ ଏକ ରାକ୍ଷସ-ପୁତ୍ର ଜନ୍ମହେବା ଖବର ସାରା ଚନ୍ଦ୍ରଲୋକରେ ବ୍ୟାପିଗଲା । ଚନ୍ଦ୍ରଲୋକର ପ୍ରତ୍ୟେକ ଅଂଶରୁ ଶହ ଶହ ଲୋକ

ଧାଇଁଲେ ଏ ପିଲାଟିକୁ ଦେଖିବାପାଇଁ । ପିଲାଟି ଦିନକୁ ଦିନ ଅସମ୍ଭବ ଆକାରରେ ବଢ଼ିଲା । ଶନା ତା ପାଇଁ ଘରଦ୍ୱାର, ଶେଯ, ପୋଷାକପତ୍ର ଯାହା ତିଆରି କରୁଛି, ସବୁ ଅଳ୍ପ କେଇ-ଦିନ ଭିତରେ ଚ୍ଛୋଟିଆ ହୋଇଯାଉଛି । ଶନା ଏତେ କରି କରି ମଧ୍ୟ ବିରକ୍ତ ହେବାକୁ ନାହିଁ, ଅଥଚ ଲୋକେ ଦେଖି ଦେଖି ବିବ୍ରତ ହୋଇପଡ଼ିଲେଣି । ପିଲାଟି ଚାଲି ଶିଖିଲାବେଳକୁ ତା'ର ଉଚ୍ଚତା କୋଡ଼ିଏ ଫୁଟରୁ କମ୍ ନୁହେଁ । କଥା କହି ଶିଖିଲାବେଳକୁ ସେ ପୂର୍ବାପେକ୍ଷା ଆହୁରି ବଡ଼ । ଶନାକୁ ସେ ଯେତେବେଳେ ମା' ମା' ଡାକି ପାଖକୁ ଧାଇଁଆସେ, ଯେ କେହି ଲୋକ ଦେଖିଲେ ଭୟ ପାଇଯିବ । ପିଲାଟା ଦାଣ୍ଡକୁ ବାହାରିପଡ଼ିଲେ, ପିଲାମାନେ 'ରାକ୍ଷସ ଆସିଲା ରାକ୍ଷସ ଆସିଲା' ଚିତ୍କାର କରି ଭୟରେ ଘର ଭିତରକୁ ପଳାଇଯାଆନ୍ତି । ସ୍ୱପ୍ନରେ ଦେଖିଲି ପିଲାଟି ଦାଣ୍ଡରେ ଖେଳୁଛି, ହଠାତ୍ ଦୁଇଟି ପିଲା ଆସି ତାକୁ 'ରାକ୍ଷସ ରାକ୍ଷସ' କହି ଢେଲା ପକାଇବାକୁ ଆରମ୍ଭ କଲେ । ସେ ଦୁଇଟିଯାକ ପିଲାଙ୍କୁ ଟେକି ନେଇ କଚାଡ଼ି ଦେବାକୁ ଯାଉଛି, ଘର ଭିତରୁ ଶନା 'ହାଁ ହାଁ' କହି ଦୌଡ଼ିଆସିଲା । ଶନାର 'ହାଁ ହାଁ' ଶବ୍ଦରେ ହଠାତ୍ ମୋ ନିଦ ଭାଙ୍ଗିଗଲା । ଦେଖିଲି ପାଖରେ କେହି ନାହିଁ । ଏ ଭିତରେ ମୋତେ ନିଦ ଲାଗିଯାଇଛି, ତାରି ଭିତରେ ଏସବୁ ସ୍ୱପ୍ନ । ଆମର ଭାବୀ ସନ୍ତାନ ନେଇ ବିଚାରୀ ଶନାର ଯେ ଦୁଃଖ କେତେ ବଢ଼ି ଯାଇଥିବ, ଭାବି ଭାବି ମୁଁ ବଡ଼ ବିବ୍ରତ ହୋଇପଡ଼ିଲି ସେତେବେଳେ ।

× × ×

ଆଉ ଚବିଶ ଘଣ୍ଟା ପରେ ଆମର ସିରସ୍ ଗ୍ରହାଣୁ ଛାଡ଼ି ମଘାନକ୍ଷତ୍ର ଅଭିମୁଖେ ଯିବା କଥା । ଆମର ଦଳପତି ରମ୍‌ଦେବ ଅଭିଯାନର ସମସ୍ତ ବନ୍ଦୋବସ୍ତ କରି ସାରିଲେଣି । ମଘା ନକ୍ଷତ୍ରରୁ ଯେଉଁସବୁ ତଥ୍ୟ ସଂଗ୍ରହ କରିବାର କଥା, ଯେଉଁଗୁଡ଼ିକ ଆମ ଅଭିଯାନବେଳେ ଖୁବ୍ ସାହାଯ୍ୟକାରୀ ହେବ, ସେଗୁଡ଼ିକ ଯଥାଯଥ ଭାବରେ ସଂଗୃହୀତ ହୋଇଥିବାରୁ ଆମର ବେଶି ଚିନ୍ତା ନ ଥାଏ । କାମରାନ୍ ତାଙ୍କ ଅଭିଯାନବେଳେ ଯେଉଁ ବିଶ୍ୱଯାନ ବ୍ୟବହାର କରିଥିଲେ, ସେହିଭଳି ଆଉ ଏକ ବିଶ୍ୱଯାନ ଆମ ଅଭିଯାନ ପାଇଁ ନିର୍ଦ୍ଦିଷ୍ଟ ହୋଇଥାଏ । ଏହି ଯାନର ବେଗ କିଛି କମ୍ ନୁହେଁ—ଆଲୋକବେଗର ପାଖାପାଖି । ଏତେ ଦ୍ରୁତଗାମୀ ଯାନକଥା ଭାବିଲାବେଳକୁ ମନ ଭୟରେ ଶଙ୍କି ଯାଉଥାଏ । ହେଲେ ଆମ ଦଳପତି ପୂରାପୂରି ନିର୍ଭୟ । ସେ ଏଭଳି ଯାନରେ କେତେଥର ଦୂରଦୂରାନ୍ତରକୁ ଯାଇ ଫେରିଆସିଛନ୍ତି । ସେ ବେଳେବେଳେ ଆମକୁ ଅଭୟ ବାଣୀ ଶୁଣାଇ ଉତ୍ସାହିତ କରୁଥାନ୍ତି ।

ଯଥାସମୟରେ ଆମ ବିଶ୍ୱଯାନ ଛାଡ଼ିଲା ସିରସ୍‌ର ମହାଶୂନ୍ୟଘାଟି । ବିଶ୍ୱଯାନର ଚାଳକ ରମ୍‌ଦେବ ନିଜେ । ଆମ ଅଭିଯାନକୁ ଚନ୍ଦ୍ରଲୋକର ସବୁ ଦୂରବୀକ୍ଷଣ କେନ୍ଦ୍ରରୁ ଲକ୍ଷ୍ୟ କରିବା ଠିକ୍ ହୋଇଥାଏ । ମଘା ନକ୍ଷତ୍ରର ଦୂରତ୍ୱ କିଛି କମ୍ ନୁହେଁ—ଚନ୍ଦ୍ରଠାରୁ ସତୁରି ଆଲୋକବର୍ଷ । ଆମ ଯାନ ଆଲୋକବେଗର ପାଖାପାଖି ବେଗରେ ଯାଉଥିବାରୁ ଆମେ ତିନିବର୍ଷ ଭିତରେ ମଘା ନକ୍ଷତ୍ରରୁ ସମସ୍ତ ତଥ୍ୟ ସଂଗ୍ରହ କରି ଫେରିଆସି ପାରିବୁ

ବୋଲି ମୁଁ ରନାକୁ ଜଣାଇ ଦେଉଥାଏ । ମଘା ନକ୍ଷତ୍ରମଣ୍ଡଳର କେ-ଜେଡ଼-ସି-୯ ଗ୍ରହଠାରେ ପହଞ୍ଚିବାକୁ ଦେଢ଼ବର୍ଷ ପାଖାପାଖି ଲାଗିବ, ତେଣୁ ମନରେ ବେଶି ଚିନ୍ତା ନ ଥାଏ । ଯାତ୍ରା ଆରମ୍ଭରୁ ବେଶ୍ ଖୁସି ଲାଗୁଥାଏ । ମନେ ମନେ ଭାବୁଥାଏ—କାହିଁ ପୃଥିବୀ; କାହିଁ ମୁଁ ! ପୃଥିବୀର ଲୋକମାନେ ଯେତେବେଳେ ଅଜ୍ଞାନ ଅନ୍ଧକାରରେ ସଢ଼ୁଛନ୍ତି, ସେତେବେଳେ ମୁଁ ଚନ୍ଦ୍ରଲୋକ, ମଘା ନକ୍ଷତ୍ର କେତେ କ'ଣ ଘୂରିବୁଲୁଛି । ପୃଥିବୀର ଅଜ୍ଞ ଲୋକେ ଯଦି ଆଜି ଦେଖନ୍ତେ ମୋର ଗ୍ରହଗ୍ରହାନ୍ତର ଅଭିଯାନ କଥା, କେତେ ଆଶ୍ଚର୍ଯ୍ୟ ନ ହୁଅନ୍ତେ ସତେ ? ଏ କଥା ମୁଁ ଭାବଗ୍ଭଲିଛି, ହଠାତ୍ ମୋ ଆଖି ସାମନାରେ ଭାସିଉଠିଲା ବହୁଦିନ ତଳର ଦୃଶ୍ୟ । ଅଦୃଶ୍ୟ ଅକ୍ଷିପଟରେ ଦେଖାଦେଲେ ମହର୍ଷି ଭୃଗୁପତି, ମହର୍ଷି ତପୋବନଗ୍ଭରି ଆଦି ପୃଥିବୀର ବୈଜ୍ଞାନିକମାନେ । ସେଥିସହିତ ସ୍ମୃତିପଟରେ ଜାଗିଉଠିଲା ସେମାନଙ୍କର ଅଜ୍ଞତାର ବାଣୀ—ବାୟୁ ଏକ ପଦାର୍ଥ ସେମାନେ ଜାଣନ୍ତି ନାହିଁ; ବାୟୁ ଯେ ତରଳ କି କଠିନ ହୋଇପାରେ, ସେମାନଙ୍କର ଧାରଣା ନାହିଁ; ପୃଥିବୀ ଗ୍ଭରିପାଖରେ ସୂର୍ଯ୍ୟ ଘୂରୁଛି;—କି ବିଚିତ୍ର ଧାରଣା ସେମାନଙ୍କର । ଏହିଭଳି ମୁଁ ଭାବଗ୍ଭଲିଛି, ହଠାତ୍ ମୋର ଚିନ୍ତାର ଖିଅ ଛିଡ଼ିଗଲା ଓ ମନରେ ଚେଇଁଉଠିଲା ରନା ଓ ସେହି ରାକ୍ଷସ-ପୁତ୍ରର ରୂପ । ଏମିତି ଏକ ସନ୍ତାନକୁ ନେଇ ରନା ଯେ କେମିତି ତା'ର ସଂସାର ଚଳାଉଥିବ ଭାବିପାରିଲି ନାହିଁ ।

ହଠାତ୍ ଇଞ୍ଜିନ୍‌ରୁମ୍‌ରୁ ଦଳପତି ରମ୍‌ଦେବ ଚିତ୍କାର କରି ଉଠିଲେ—ଦେଖୁଛ, ଦେଖୁଛ, ଉଲ୍କାଲାବର୍ତ୍ତି ! ବହୁ ଦୂରରେ ଏକ ମହାଶୂନ୍ୟଯାନ ଦେଖାଯାଉଛି, ସେହି ପୁନର୍ବସୁ ନକ୍ଷତ୍ରରେ ଯାନଟି ଧାବମାନ ହେଉଛି ।

ଏଁ, ମହାକାଶଯାନ ?—ଚମକିପଡ଼ିଲି । ସଙ୍ଗେ ସଙ୍ଗେ ଦୂରବୀକ୍ଷଣ ଯନ୍ତ୍ରରେ ଆଖି ଲଗାଇ ପୁନର୍ବସୁ ନକ୍ଷତ୍ରକୁ ଲକ୍ଷ୍ୟ କରି କହିଲି—

ହଁ, ସତେ ତ, ମହାକାଶଯାନଟାଏ ! ବେଗରୁ ମଧ୍ୟ ଜଣାପଡ଼ୁଛି ଆମ ବେଗର ପାଖାପାଖି । ଆମେ ଯାଉଥିବା ମଘା ନକ୍ଷତ୍ର ଆଡ଼େ ଏହା ଯାଉନାହିଁ ତ ? ଆମେ ଏକଥା ସିରସ୍ କେନ୍ଦ୍ରକୁ ଜଣାଇଦେବା ଉଚିତ ନୁହେଁ କି ? ରମ୍‌ଦେବଙ୍କୁ ପଗ୍ଭରିଲି ।

—ହଁ ଜଣାଇଦିଅ ଉଲ୍କାଲାବର୍ତ୍ତି ! ମୁଁ ଆମ ଯାନଟିକୁ ସେହି ଯାନର ପାଖକୁ ନେବାପାଇଁ ଚେଷ୍ଟା କରୁଛି, ତାହାହେଲେ ଆମେ ଆହୁରି ଭଲଭାବେ ଲକ୍ଷ୍ୟ କରିପାରିବା ।

ସଙ୍ଗେ ସଙ୍ଗେ ବେତାର ଫୋନ୍‌ଦ୍ୱାରା ସିରସ୍‌କୁ ଏହି ଖବର ଜଣାଇ ପୁନର୍ବସୁ ନକ୍ଷତ୍ରରେ ଯାଉଥିବା ସେ ମହାଶୂନ୍ୟଯାନକୁ ଲକ୍ଷ୍ୟ କରିବାପାଇଁ କହିଲି । କିଛି ସମୟ ପରେ ସିରସ୍ ବେତାର ଫୋନ୍‌ରୁ ଉତ୍ତର ଆସିଲା, ସେମାନେ କିଛି ଦେଖିପାରୁନାହାନ୍ତି ପୁନର୍ବସୁ ନକ୍ଷତ୍ରରେ । ସିରସ୍‌ରୁ ଏହି ଖବର ପାଇ ଚମକିପଡ଼ିଲି । ହଠାତ୍ ମୋର ମନେପଡ଼ିଗଲା ଆମେ ଏଠାରେ ଯାହାକୁ ପୁନର୍ବସୁ ନକ୍ଷତ୍ରରେ ଦେଖୁଛୁ, ସେମାନେ ସିରସ୍‌ରୁ ତାହା ସେତି ଦେଖିପାରିବେ ନାହିଁ । ତେଣୁ ସଙ୍ଗେ ସଙ୍ଗେ ଗଣନା କରି ବସିଲି । ଆମେ ଏଠାରୁ ଯାହାକୁ

ପୁନର୍ବସୁ ନକ୍ଷତ୍ରରେ ଦେଖୁଛୁ, ସିରସ୍‌ରୁ ତାହା କେଉଁ ନକ୍ଷତ୍ରମଣ୍ଡଳରେ ଦର୍ଶିବ, ଗଣନାରେ ଜଣାପଡ଼ିଲା । ସେମାନେ ଏହି ମୁହୂର୍ତ୍ତରେ ଅଜ୍ଞାତ ମହାକାଶଯାନଟିକୁ ଦେଖିବାକୁ ପାଇବେ ପୂର୍ବାଷାଢ଼ା ନକ୍ଷତ୍ରମଣ୍ଡଳରେ ।

ସଙ୍ଗେ ସଙ୍ଗେ ଏକଥା ସିରସ୍‌କୁ ଜଣାଇଦେଲି । ବେତାର ଫୋନ୍ କିଛି ସମୟ ପାଇଁ ନୀରବ ରହିଗଲା । ଅଳ୍ପ ସମୟ ପରେ ଶୁଭିଲା—ହଁ, ଉତ୍କଳାବର୍ତ୍ତି, ଆମେ ଏଠାରୁ ବର୍ତ୍ତମାନ ଦେଖିପାରିଲୁ ସେହି ମହାଶୂନ୍ୟଯାନଟିକୁ । ତୁମେ କହିଲାପରେ ମହାଶୂନ୍ୟଯାନଟି ଗତି କରୁଛି ପୂର୍ବାଷାଢ଼ା ନକ୍ଷତ୍ରମଣ୍ଡଳରେ । କିନ୍ତୁ ଦେଖ ଉତ୍କଳାବର୍ତ୍ତି, ତୁମକୁ ଓ ରମ୍‌ଦେବଙ୍କୁ ଆମେ ସାବଧାନ କରାଇ ଦେଉଛୁ, ତୁମେମାନେ ଏହା ପଛରେ ଧାଆଁ ନାହିଁ । କାମରାନ୍ ଯେଉଁ ଭୁଲ କରିଥିଲେ ସେ କଥା ମନେରଖ । ସେ ଅଜ୍ଞାତ ମହାଶୂନ୍ୟଯାନର ପିଛା କରିବା ଆଦୌ ଉଚିତ ନୁହେଁ ।

ମୁଁ ଉତ୍ତର ଦେଲି—କିନ୍ତୁ ରମ୍‌ଦେବଙ୍କର ଇଚ୍ଛା ଆମ ଯାନ ସେହି ଯାନଟିର ପିଛା କରୁ । ସେଥିପାଇଁ ଆମ ଯାନଟିକୁ ଅନୁଧାବନ କରିବାପାଇଁ ଚଳାଇଦେଲେଣି ।

ସର୍ବନାଶ, ତୁମ୍ଭମାନଙ୍କୁ ପୁଣି ଏ ଦୁର୍ବୁଦ୍ଧି କିଏ ଦେଲା ?—ବେତାର ଫୋନ୍ ଉପରେ ବ୍ୟସ୍ତତାର ସ୍ୱର । ଦେଖ ଉତ୍କଳାବର୍ତ୍ତି ! ରମ୍‌ଦେବଙ୍କୁ ନିବର୍ତ୍ତାଅ । ସେହି ଯାନଟି ଯଦି ପ୍ରତିବସ୍ତୁଜଗତ୍ତର ଯାନ ହୋଇଥାଏ, ତେବେ ତୁମ୍ଭମାନଙ୍କ ଅବସ୍ଥା କ'ଣ ହେବ ଜାଣିଛ !— ଆଚ୍ଛା—ରମ୍‌ଦେବଙ୍କୁ ସଙ୍ଗେ ସଙ୍ଗେ ବେତାର ଫୋନ୍ ପାଖକୁ ଟିକିଏ ଡାକିଦିଅ ତ ।

ମୋର ଅନୁରୋଧକ୍ରମେ ରମ୍‌ଦେବ ବେତାର ଫୋନ୍ ପାଖକୁ ଆସିଲେ । ଚନ୍ଦ୍ରଲୋକର ମହାଶୂନ୍ୟ ଅଭିଯାନର ସଭାପତି ଆମର ଅଜ୍ଞାତ ଯାନଟି ପଛରେ ଅନୁଧାବନ କରିବା କଥା ଶୁଣି କେମିତି ବ୍ୟସ୍ତ ହୋଇପଡ଼ିଛନ୍ତି, ତାଙ୍କୁ ଶୁଣାଇ ଦେଇଥାଏଁ ।

ରମ୍‌ଦେବ ଫୋନ୍ ଧରି କହିଲେ—ହଁ, ମୁଁ ରମ୍‌ଦେବ, କ'ଣ କହୁଛନ୍ତି ଆପଣ ?

—ଦେଖ ରମ୍‌ଦେବ । ଉତ୍କଳାବର୍ତ୍ତିଙ୍କଠାରୁ ଶୁଣିଛି ତୁମେ ସେହି ମହାଶୂନ୍ୟଯାନଟିର ଅନୁଧାବନ କରୁଛ । କାମରାନ୍‌ଙ୍କ ଦୁର୍ଦ୍ଦଶା କଥା କ'ଣ ତୁମେ ଭୁଲିଗଲଣି ? ତୁମମାନଙ୍କର ସେହି ଯାନଟିର ଅନୁଧାବନ କରିବା କ'ଣ ଦରକାର ? ତୁମେ ତୁମ ବାଟରେ ଯାଅ; ସେମାନେ ସେମାନଙ୍କ ବାଟରେ ଯାଆନ୍ତୁ । ତୁମେମାନେ କେମିତି ତୁମ ଅଭିଯାନ ସମାପ୍ତ କରି କେ-ଜେଡ୍-ସି-୯ର ଅବସ୍ଥା ଅନୁସନ୍ଧାନ କରି ଫେରିଆସ, ଏହା ସାରା ଚନ୍ଦ୍ରଲୋକ ଅଧିବାସୀଙ୍କ ଇଚ୍ଛା । ସେମାନେ ତୁମ ଅଭିଯାନକୁ ଭରସା କରି ଗୁହଁିରହିଥିବା ସ୍ଥଳେ ତୁମେ ତୁମ କୌତୂହଳ ମେଣ୍ଟାଇବା ପାଇଁ ଏତେବଡ଼ ଅଭିଯାନକୁ ବିପଦମୁହଁକୁ ଠେଲି-ଦେବାପାଇଁ ଚେଷ୍ଟା କରିବା ମୋଟେ ଉଚିତ ନୁହେଁ ।

—ଆପଣ ଏତେ ବ୍ୟସ୍ତ ହୋଇପଡ଼ନ୍ତୁ ନାହିଁ ଏଥିପାଇଁ । ଆପଣ କ'ଣ ଭାବୁଛନ୍ତି, ଆମେ ଏତେ ଦାୟିତ୍ୱଶୂନ୍ୟ ହୋଇଛୁ ଯେ ନବୁଝି ନଶୁଝି ଆମେ ନିଜକୁ ବିପଦମୁହଁକୁ ଠେଲିଦେବୁ । ଆମେ ସେହି ଯାନଟିର ଖୁବ୍ ପାଖକୁ ଯିବାକୁ ତ ଗୁହଁୁନୁ । ଆମେ ଆଉ ଟିକିଏ ପାଖକୁ

ଯାଇ ଦେଖିବାକୁ ଚାହୁଁ । ଯାନଟି କେଉଁଠୁ ଆସିଛୁ, କେଉଁଆଡ଼କୁ ଯିବ, ଏହାର ଚାଳକ କିଏ ?

—ଠିକ୍ ଯେଉଁ ଭୁଲ କାମରାନ୍ କରିଥିଲେ, ତୁମେ ପୁଣି ସେହି ଭୁଲ କରିବାକୁ ଯାଉଛ ! ତୁମେ ସେ ଯାନର ନିକଟବର୍ତ୍ତୀ ହେବ; ସେଥିରେ ଯଦି ଜଣେ ଯୁବତୀ ଚାଳକ ଥାଏ ତେବେ ତା' ଆଡ଼କୁ ଆକୃଷ୍ଟ ହୋଇପଡ଼ିବ । ତା'ପରେ ଚାଲିବ ଇତିହାସର ପୁନରାବୃତ୍ତି, ଏମିତି ନା ?

—ଆପଣ ଆମମାନଙ୍କୁ ଏତେ ଦୁର୍ବଳ ଭାବନ୍ତୁ ନାହିଁ । କାମରାନ୍‌ଙ୍କ ଦୁର୍ଦ୍ଦଶା କଥା ଆମର ବେଶ୍ ମନେଅଛି । ସେଭଳି ଭୁଲ ହେବନାହିଁ—ଆମର ଏହି ଆତ୍ମବିଶ୍ୱାସ ମଧ୍ୟ ଅଛି ।

—ତୁମମାନଙ୍କ ବିରାଟ ଦାୟିତ୍ୱ କଥା ଆଉ ଥରେ ଚେତାଇ ଦେଲି । କୋଡ଼ିଏ କୋଟି ଚନ୍ଦ୍ରଲୋକର ଅଧିବାସୀଙ୍କ ଭବିଷ୍ୟତ ଜୀବନ ତୁମମାନଙ୍କ ଉପରେ ନିର୍ଭର କରୁଛି । ମୋର ଆଶା, ତୁମେମାନେ ସେହି କର୍ତ୍ତବ୍ୟକୁ ଭୁଲିବ ନାହିଁ । ପୁଣି ଥରେ କହୁଛି, ଯାହା କରୁଛ ବୁଝି ବିଚାରି କରୁଥିବ ।

ବେତାର ଫୋନ୍ ବନ୍ଦ ହୋଇଗଲା, ରମ୍‌ଦେବ ଇଞ୍ଜିନ୍‌ଗୃହକୁ ଫେରିଆସିଲେ । ସଙ୍ଗେ ସଙ୍ଗେ ଯାନଟିର ବେଗ ଆହୁରି ବଢ଼ାଇଦେଲେ । ତାଙ୍କର ନିର୍ଦ୍ଦେଶରେ ମୁଁ ଦୂରବୀକ୍ଷଣରେ ମୋ ଦୃଷ୍ଟିକୁ ନିବଦ୍ଧ କରିଥାଏ ସେ ଯାନଟି ଉପରେ ।

ଚାହୁଁ ଚାହୁଁ ଆମ ଯାନ ସେହି ଯାନଟିର ବେଶ୍ ପାଖେଇ ଆସିଲା । ମନରେ ଭୟ ହେଉଥାଏ, କାମରାନ୍‌ଙ୍କ ଭୁଲ୍ ଆମର ଯେମିତି ନହୁଏ । କିଛିକ୍ଷଣ ନିରୀକ୍ଷଣ କରିବା ପରେ ମୋର ଧାରଣା ହେଲା ଏହି ଅଜ୍ଞାତ ଯାନଟିର ଚାଳକ ମଧ୍ୟ ଜଣେ ସୁନ୍ଦରୀ ତରୁଣୀ ଓ ଏକାକୀ ମନ-ଆନନ୍ଦରେ ଯାନଟିକୁ ବାହି ମହାଶୂନ୍ୟ ଭିତରେ ଆଲୋକବେଗର ପାଖାପାଖି ବେଗରେ ଚାଲିଛି । ଏହା ଦେଖି ମୁଁ ମନେ ମନେ ଭୟ ପାଇଗଲି । କାମରାନ୍‌ଙ୍କ କଥା ମନେପଡ଼ିଲା । ମୋ ନିଜ ଉପରେ ମୋର ବେଶ୍ ଭରସା ଥାଏ; କିନ୍ତୁ ଭୟ ହେଉଥାଏ, ରମ୍‌ଦେବ ଯଦି ନିଜ ଉପରୁ କର୍ତ୍ତୃତ୍ୱ ହରାଇ ବସନ୍ତି ତେବେ ସବୁଠାରୁ ବେଶି ବିପଦ । ରମ୍‌ଦେବ ଯେହେତୁ ଆମର ଦଳପତି, ସେ ଯଦି କାମରାନ୍‌ଙ୍କ ଭଳି ଏହି ଯୁବତୀଟିକୁ ଦେଖି ପାଗଳ ହୋଇଉଠନ୍ତି, ତେବେ ସର୍ବନାଶ ।

ଏହି ସମୟରେ ହଠାତ୍ ମୋର ମନେପଡ଼ିଗଲା, ବୈଜ୍ଞାନିକ ପୋଲେଭିନ୍‌ଙ୍କ ବର୍ଣ୍ଣିତ ପ୍ରତିବସ୍ତୁଜଗତ୍‌ର ନାରୀର ସ୍ୱରୂପ କଥା । ଏହି ସୁନ୍ଦରୀ ତରୁଣୀଟି ଯଦି ପ୍ରତିବସ୍ତୁଜଗତ୍‌ର ମଣିଷ ହୋଇଥାଏ, ତେବେ ନାରୀରୂପ ଧାରଣ କରିଥିଲେ ହେଁ ସେ ପ୍ରକୃତରେ ଜଣେ ପୁରୁଷ । ପୋଲେଭିନ୍‌ଙ୍କ ଏହି ତଥ୍ୟ ରମ୍‌ଦେବ ଜାଣିଛନ୍ତି କି ନାହିଁ ମୋତେ ଜଣାନଥାଏ । ସେ ଯଦି ଏହି ସୁନ୍ଦରୀ ତରୁଣୀଟିକୁ ଦେଖି ଆକୃଷ୍ଟ ହୁଅନ୍ତି, ତେବେ ତାଙ୍କୁ ପୋଲେଭିନ୍‌ଙ୍କ ସେହି ତଥ୍ୟ ହୁଏତ ଚାଳକକୁ ପୁରୁଷ ବୋଲି ଚେତାଇ ଦେଇ ସେଆଡ଼କୁ ଆକୃଷ୍ଟ କରିନପାରେ । କିନ୍ତୁ ସେ ସେଇ ତଥ୍ୟକୁ ବିଶ୍ୱାସ କଲେ ତ ! ତେଣୁ ତାଙ୍କର ପାଗଳ ମନକୁ

ଆସୁଥିବାକୁ ଆଣିବା ପାଇଁ ଆଉ କ ବାଟ ମୁଁ ଧରିବ ଭାବ ବଡ଼ ଦ୍ୱନ୍ଦ୍ୱ ଭିତରେ ପଡ଼ିଲି । ରମ୍‌ଦେବଙ୍କୁ ଏହି ଯୁବତୀଟି କଥା କହିବ କ ନାହିଁ ହଠାତ୍ ଠିକ୍ କରିପାରିଲି ନାହିଁ ।

ଏହି ସମୟରେ ରମ୍‌ଦେବ ମୋତେ ପୁଣି ପଚାରିଲେ—ତୁମେ ବୋଧହୁଏ ଯାନଟିର ଚାଳକକୁ ଏଥର ବେଶ୍ ପରିଷ୍କାର ଦେଖିପାରୁଥିବ ଉତ୍କଳାବର୍ତ୍ତି ? ଯାନଟି ତ ଆମର ବେଶ୍ ପାଖାପାଖି ହୋଇଗଲାଣି ।

ରମ୍‌ଦେବଙ୍କୁ କ'ଣ ଉତ୍ତର ଦେବ ସ୍ୱବ ଠିକ୍ କରିପାରିଲି ନାହିଁ । ଯୁବତୀଟିଏ ଦେଖୁଛି କହିଲେ ତାଙ୍କର ଯଦି କାମରାନ୍‌ଙ୍କ ଅବସ୍ଥା ହୁଏ, ତେବେ ସର୍ବନାଶ ।

ତେଣୁ କିଛି ଉତ୍ତର ନଦେଇ ଚୁପ୍ ରହିଲି । ସେ ପୁଣି ଥରେ ପଚାରିଲେ । ଦେଖିଲି ଆଉ କଥାଟାକୁ ଲୁଚାଇ ହେବନାହିଁ । କହିପକାଇଲି—ହଁ, ଦେଖୁଛି ଏହାର ଚାଳକକୁ । ଏହାର ଚାଳକ ପୁରୁଷ ନୁହେଁ—ଜଣେ ତରୁଣୀ ।

ଏଁ ତରୁଣୀ ?—ଫୋନ୍ ଉପରେ ବିସ୍ମିତ ଉଦ୍‌ବେଗ । ଇଞ୍ଜିନ୍‌ରୁମ ଛାଡ଼ି ରମ୍‌ଦେବ ଦୂରବୀକ୍ଷଣଠାକୁ ଦୌଡ଼ିଆସିଲେ ।

ମୁଁ ମନେ ମନେ ପ୍ରମାଦ ଗଣି ଦୂରବୀକ୍ଷଣ ଛାଡ଼ି ଦୂରେଇଗଲି । ରମ୍‌ଦେବ ଦୂରବୀକ୍ଷଣରେ ଆଖି ଲଗାଇ ଯାନଟିକୁ ଓ ତାହାର ଚାଳକକୁ ଦେଖିବାକୁ ଲାଗିଲେ । ଦେଖୁ ଦେଖୁ କହିଲେ—ଏଭଳି ସୁନ୍ଦରୀ ତରୁଣୀକୁ ଦେଖିଲେ କିଏ ପାଗଳ ନହେବ ଉତ୍କଳାବର୍ତ୍ତି ! ମୁଁ ଏଥର ବୁଝିପାରୁଛି, କାମରାନ୍ କାହିଁକି ପାଗଳ ହୋଇଉଠିଥିଲେ ସେହି ତରୁଣୀଟିକୁ ଦେଖି । ତୁମେ କ'ଣ ଆକୃଷ୍ଟ ହେଉନ ଯୁବତୀଟି ଆଡ଼କୁ ଉତ୍କଳାବର୍ତ୍ତି ?

ନାଁ, ମୋଟେ ନୁହେଁ ।—ଉତ୍ତର ଦେଲି ।

ନାଁ, କି ଆଶ୍ଚର୍ଯ୍ୟ ?—ରମ୍‌ଦେବଙ୍କ ମୁହଁରେ ବିସ୍ମୟର ଭାବ ।

କହିଲି—ସେହି ଯାନଟି ଯଦି ପ୍ରତିବସ୍ତୁଜଗତର ଯାନ ହୋଇଥାଏ ଓ ତରୁଣୀଟି ଯଦି ପ୍ରତିବସ୍ତୁଜଗତର ମଣିଷ ହୋଇଥାଏ, ତେବେ ତରୁଣୀର ରୂପ ନେଇଥିଲେ ହେଁ ସେ ଯେ ତରୁଣୀ ନୁହେଁ, ପ୍ରକୃତରେ ଜଣେ ପୁରୁଷ; ଏହା ଆମର ଭୁଲିଯିବା ଉଚିତ ନୁହେଁ ।

ଏଁ, ପୁରୁଷ ?—ଚମକି ପଡ଼ିଲେ ରମ୍‌ଦେବ—ଅସମ୍ଭବ ତୁମ କଥା ।

—ଅସମ୍ଭବ ନୁହେଁ ରମ୍‌ଦେବ ! ଏହା ସତ୍ୟ । ତୁମେ ବୋଧହୁଏ ବୈଜ୍ଞାନିକ ପୋଲେଭିନ୍‌ଙ୍କ ଆବିଷ୍କୃତ ତଥ୍ୟ ଜାଣିନାହଁ । ତାଙ୍କ ତଥ୍ୟ ଅନୁସାରେ ବସ୍ତୁଜଗତରେ ନାରୀର ରୂପ ଯାହା, ପ୍ରତିବସ୍ତୁଜଗତର ପୁରୁଷର ରୂପ ସେଇଆ ଓ ବସ୍ତୁଜଗତର ପୁରୁଷର ରୂପ ଯାହା, ପ୍ରତିବସ୍ତୁଜଗତର ନାରୀର ରୂପ ସେଇଆ । ଏହି ତଥ୍ୟ ସପକ୍ଷରେ ପୋଲେଭିନ୍ ପରୀକ୍ଷାଜନିତ ଏତେ ପ୍ରମାଣ ସଂଗ୍ରହ କରିଛନ୍ତି ଯେ ଏହାକୁ ସହଜରେ କାଟିଦେଇ ହେବନାହିଁ ।

—ତାହେଲେ ତୁମେ କହୁଛ ଯେ, ଏ ଯେଉଁ ନାରୀ ଆମେ ଦେଖୁଛେ ସେ ଯଦି ପ୍ରତିବସ୍ତୁ-ଜଗତର ମଣିଷ ହୋଇଥାଏ, ତେବେ ନାରୀର ରୂପ ନେଇଥିଲେ ହେଁ ସେ ଆମଭଳି ଜଣେ

ପୁରୁଷ ?

—ମୋର ଏଥିରେ ପୂରା ବିଶ୍ୱାସ । ତେବେ ଆମେ ତ ଏପର୍ଯ୍ୟନ୍ତ ନିଶ୍ଚିତଭାବେ ଜାଣିନାହେଁ, ତାହା ପ୍ରକୃତରେ ବସ୍ତୁଜଗତର କି ପ୍ରତିବସ୍ତୁଜଗତର ଯାନ । ତାହା ନ ଜାଣିଲା ପର୍ଯ୍ୟନ୍ତ ଆମର ଏ ଆଶଙ୍କା କିଛି ନୁହେଁ ।

ରମ୍‌ଦେବ କହିଲେ—ମୁଁ ଭାବୁଛି ଆମେ ଆଉରି ଟିକେ ପାଖକୁ ଯିବା ଉଚିତ । ଆଉରି ପାଖେଇ ନଗଲା ପର୍ଯ୍ୟନ୍ତ ଆମ ପ୍ରତିବସ୍ତୁ-ନିର୍ଣ୍ଣୟକାରୀ ଯନ୍ତ୍ର ନିର୍ଦ୍ଧାରଣ କରିପାରିବନି ସେ ଯାନଟି ବସ୍ତୁ କି ପ୍ରତିବସ୍ତୁରୁ ତିଆରି ।

—ମୋର ସେଥିରେ ଆପତ୍ତି ନାହିଁ । ହେଲେ ପାଖେଇଯିବା ପୂର୍ବରୁ ଆଉ ଥରେ ପରୀକ୍ଷା କରିନେବା ଉଚିତ ଆମ ପ୍ରତିବସ୍ତୁ-ନିର୍ଣ୍ଣୟକାରୀ ଯନ୍ତ୍ର ଓ ବିପଦ ସଙ୍କେତ ଘଣ୍ଟି ଠିକ୍‌ କାମ କରୁଛି କି ନାହିଁ ।—ଏହା କହି ମୁଁ ଇଞ୍ଜିନରୁମକୁ ଚାଲିଗଲି ପରୀକ୍ଷା କରି ଦେଖିବାପାଇଁ । ଦେଖିଲି ଦୁଇଟିଯାକ ଯନ୍ତ୍ର ଠିକ୍ ଅଛି ।

ଧୀରେ ଧୀରେ ଆମ ଯାନଟି ଅଜ୍ଞାତ ଯାନର ଆଉରି ପାଖେଇଆସିଲା । ଦୂରବୀକ୍ଷଣଠାରେ ମୁହଁ ଲଗାଇ ରମ୍‌ଦେବ ସେହି ଯାନଟିକୁ ନିରୀକ୍ଷଣ କରିବାରେ ଲାଗିଥାନ୍ତି । ଦେଖିଲେ ମନେହେବ, ସତେ ଯେମିତି ଯୁବତୀଟି ପୁରାପୂରି ମୁଗ୍ଧ କରିଦେଇଛି ରମ୍‌ଦେବଙ୍କୁ ।

ହଠାତ୍ ଇଞ୍ଜିନ୍ ରୁମ୍‌ର ବିପଦଘଣ୍ଟି ବାଜିଉଠିଲା ତୀବ୍ରବେଗରେ । ମନେହେଲା ଯେମିତି ପ୍ରଳୟର ପହିଲି ସଙ୍କେତ । ଇଞ୍ଜିନ୍ ରୁମ୍‌କୁ ଦୌଡ଼ିଗଲି, ଦେଖିଲି ପ୍ରତିବସ୍ତୁ-ନିର୍ଣ୍ଣୟକାରୀ ଯନ୍ତ୍ର ମଧ୍ୟ ସଙ୍କେତ ଦେଉଛି ନିକଟରେ ପ୍ରତିବସ୍ତୁ ଅଛି ବୋଲି । ଚାରିଆଡ଼କୁ ପ୍ରକ୍ଷେପକ ଯନ୍ତ୍ର ଦେଖାଇ ନିର୍ଣ୍ଣୟ କରିବାକୁ ଚେଷ୍ଟା କଲି ପ୍ରତିବସ୍ତୁର ଅବସ୍ଥିତି କେଉଁଠି । ସେହି ଯାନଟି ପ୍ରତିବସ୍ତୁରୁ ତିଆରି ବୋଲି ପ୍ରମାଣ ମିଳିଗଲା । ରମ୍‌ଦେବଙ୍କୁ ଇଞ୍ଜିନ ରୁମ୍‌କୁ ଡାକିଲି । ସେ ଦୌଡ଼ିଆସିଲେ । ବିପଦ-ସଙ୍କେତ ଘଣ୍ଟି ଆମକୁ ସତର୍କ କରାଇ ଦେଇଥିଲେ ହେଁ ଆମେ ପ୍ରତିବସ୍ତୁ ସହିତ ସଂଘର୍ଷଠାରୁ ଛୋଟ୍ ଦୂରରେ ଥାଉଁ ।

ରମ୍‌ଦେବ ପୁଣି ଦୂରବୀକ୍ଷଣଠାକୁ ଦୌଡ଼ିଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଗଲି । ସେ ଦୂରବୀକ୍ଷଣରେ ଯୁବତୀଟିକୁ ଦେଖୁ ଦେଖୁ କହିଲେ—ଏଭଳି ସୁନ୍ଦରୀ ତରୁଣୀ କେବେ ପୁରୁଷ ହୋଇପାରେନା । ପୋଲେଭିନ୍‌ଙ୍କ ତଥ୍ୟକୁ ମୁଁ ମୋଟେ ବିଶ୍ୱାସ କରିପାରୁନାହିଁ ।

ମୁଁ କହିଲି—ତୁମେ ତ ଜାଣିଛ ରମ୍‌ଦେବ, ପ୍ରତିବସ୍ତୁଜଗତର ପ୍ରାକୃତିକ ନିୟମ ଆମର ପ୍ରାକୃତିକ ନିୟମଠାରୁ ସଂପୂର୍ଣ୍ଣ ଭିନ୍ନ । ପ୍ରତିବସ୍ତୁଜଗତର ସମୟ ଆଗକୁ ନଯାଇ ପଛକୁ ଗତିକରେ; ଜଳ ଉପରୁ ତଳକୁ ବହିନଯାଇ ତଳୁ ଉପରକୁ ଗତିକରେ; ନଦୀର ସ୍ରୋତ ତଳଆଡ଼ୁ ଉପରକୁ ଗତିକରେ । ସେହି ଜଗତରେ ସମୁଦ୍ର ସବୁଠାରୁ ଉଚ୍ଚସ୍ଥାନ ଓ ପର୍ବତ ସବୁଠାରୁ ନିମ୍ନସ୍ଥାନ । ଆମ ଦୁଇ ଜଗତ୍ ଭିତରେ ପ୍ରାକୃତିକ ନିୟମର ଯଦି ଏତେ ପାର୍ଥକ୍ୟ, ପୁରୁଷ ସ୍ତ୍ରୀର ବାହ୍ୟରୂପକୁ ନିୟନ୍ତ୍ରଣ କରୁଥିବା ପ୍ରାକୃତିକ ନିୟମ ସେହିଭଳି ଅଲଗା ନହେବ କାହିଁକି ? ପୁଲିଙ୍ଗ ଥାଇ ପୁରୁଷର ବାହ୍ୟଗୁଣ ଆମମାନଙ୍କ ପୁରୁଷ-ଗୁଣର

ଓଲଟା ଓ ସ୍ତ୍ରୀଲିଙ୍ଗ ଥାଇ ସ୍ତ୍ରୀର ବାହ୍ୟଗୁଣ ଆମ ନାରୀ ଗୁଣର ଓଲଟା ହେବା ଅସମ୍ଭବ ନୁହେଁ । ତେଣୁ ପ୍ରତିବସ୍ତୁଜଗତର ପୁରୁଷ ଆମ ନାରୀ ଭଳି ହେବାରେ ବିଚିତ୍ରତା କେଉଁଠି ?

—ତାହାହେଲେ ଉତ୍କଳାବର୍ତ୍ତି ! କାମରାନ୍ ଯାହାକୁ ଧରିବାପାଇଁ ପାଗଳ ହୋଇ ଧ୍ୱଂସପ୍ରାପ୍ତ ହୋଇଥିଲେ, ସେ ତା'ହେଲେ ପ୍ରକୃତରେ ନାରୀ ନୁହେଁ ପୁରୁଷ ?

—ଅସମ୍ଭବ ନୁହେଁ ରମ୍‌ଦେବ ! ମୋର ମତ ସେଇଆ ।

—ଆଃ, ତା ଯଦି ପ୍ରକୃତରେ ହୋଇଥାଏ, ବିଚାରା କାମ୍‌ରାନ କି ମିଛମାୟାରେ ପଡ଼ି ନିଜକୁ ଆହୁତି ଦେଲେ ! ପୋଲେଭିନ୍‌ଙ୍କ ତଥ୍ୟ ବି ସତ୍ୟ ହୋଇଥାଇପାରେ; କାରଣ କାମରାନ୍ ଆଉ ଆମେ ଯେଉଁ ଅଜ୍ଞାତ ମହାକାଶଯାନ ଦୁଇଟି ଦେଖିଲେ, ଉଭୟର ଚାଳକ ହେଉଛନ୍ତି ସ୍ତ୍ରୀ । ଆମେ ଯାହାକୁ ସ୍ତ୍ରୀ ବୋଲି ଦେଖିଛୁଁ ସେମାନେ ହୁଏତ ସେମାନଙ୍କ ଜଗତରେ ପୁରୁଷ । ତେଣୁ ମହାକାଶଯାନରେ ସେମାନେ ମହାଶୂନ୍ୟ ଭ୍ରମଣ ପାଇଁ ବାହାରି ଆସିଥିବା ସ୍ୱାଭାବିକ ।

× × ×

କେତେ ଦିନ ପରେ ଆମ ଯାନର ବେତାର ଫୋନ୍ ହଠାତ୍ ବାଜି ଉଠିଲା । ଦୌଡ଼ିଲି ଫୋନ୍ ଧରିବାକୁ । ଫୋନ୍‌ରେ ଏକ ଅଳ୍ପ ବୟସ୍କ ଯୁବକର ସ୍ୱର ଶୁଣି ଚମକିପଡ଼ିଲି । ସିରସ୍ ଗ୍ରହାଣୁରେ ଥିବା ଆମର ପ୍ରଧାନ ମହାଶୂନ୍ୟବିଶେଷଜ୍ଞ ଝାକ୍‌ରୁଚ ଗଲେ କୁଆଡ଼େ ? ବଡ଼ ସନ୍ଦେହ ଲାଗିଲା । ପଚାରିଲି—ଆପଣ କିଏ ?

—ମୁଁ ଝପ୍‌ଚନ, ସିରସ୍ ଗ୍ରହାଣୁସ୍ଥିତ ମହାଶୂନ୍ୟ ପର୍ଯ୍ୟବେକ୍ଷଣାଗାରର ପ୍ରଧାନ ପରିଚାଳକ ।

—ଏଁ, ପ୍ରଧାନ ପରିଚାଳକ ? ଆପଣ ? ବଡ଼ ବିସ୍ମୟ ଲାଗିଲା ମୋତେ ।

—ହଁ ହଁ, ମୁଁ ପ୍ରଧାନ ପରିଚାଳକ । ଆପଣ ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ?

—ନାଇଁ, ଆଶ୍ଚର୍ଯ୍ୟ ହେଉନାହିଁ, ଜାଣିବା ପାଇଁ ପଚାରିଲି । ପ୍ରଧାନ ପରିଚାଳକ ଝାକ୍‌ରୁଚ କୁଆଡ଼େ ଗଲେ କି ?

ଯୁବକଟି ହସି କହିଲା—ଝାକ୍‌ରୁଚ ଇତିମଧ୍ୟରେ ଇହଧାମ ତ୍ୟାଗ କରିସାରିଲେଣି ।

—ଏଁ, ଇହଧାମ ତ୍ୟାଗ କରିସାରିଲେଣି ? କଣ ହୋଇଥିଲା ତାଙ୍କର ? କଣ କିଛି ସାଙ୍ଘାତିକ ରୋଗରେ ପଡ଼ି ମୃତ୍ୟୁବରଣ କଲେ ନା କଣ ?

ଯୁବକଟି ପୁଣି ହସିଲା; କହିଲା—ନାଁ, ସେ କିଛି ରୋଗରେ ମରିନାହାନ୍ତି । ସେ ସ୍ୱାଭାବିକ ରୀତିରେ ବୁଢ଼ା ହୋଇ ମରିଛନ୍ତି । ମଲାବେଳକୁ ସେ ବେଶ୍ ବୁଢ଼ା ହୋଇଯାଇଥିଲେ ।

—ଝାକ୍‌ରୁଚ ବୁଢ଼ା ହୋଇଯାଇଥିଲେ ? କଣ କହୁଛନ୍ତି ଆପଣ ? ଆମେ ଆସିଲାବେଳେ ତାଙ୍କୁ କେତେ ବର୍ଷ ହୋଇଥିଲା କି ? ଚାଳିଶି ପଇଁଚାଳିଶିରୁ ତ ଅଧିକ ନୁହେଁ । ମହାଶୂନ୍ୟକୁ ଆସିଲାବେଳେ ସେ ଆମକୁ ବିଦାୟ ଦେଇଥିଲେ ହସ ହସ ମୁଖରେ । ତାଙ୍କର ହସ ହସ ମୁହଁ ମୋର ଏବେ ବି ମନେପଡ଼ିଯାଉଛି । ଚାଳିଶି ପଇଁଚାଳିଶି ବର୍ଷର ଲୋକଙ୍କୁ କଣ ବୁଢ଼ା କୁହାଯାଏ ?

ବେତାରଫୋନ୍‌ରେ ପୁଣି ପୂର୍ବଭଳି ହସ । ଯୁବକଟି ହସି ହସି କହିଲା—ଝାକ୍‌ବୁଢ଼ା ବୁଢ଼ା ହୋଇ ଛୟାନବେ ବର୍ଷରେ ମୃତ୍ୟୁବରଣ କଲେ । ସେ ଆଉ କେତେବର୍ଷ ବଞ୍ଚିଥାନ୍ତେ ଆପଣ ଭାବୁଛନ୍ତି ?

—ଆଁ, ଛୟାନବେ ବର୍ଷ ? ଆପଣ ଯେ କ'ଣ କହୁଛନ୍ତି ମୁଁ ବୁଝିପାରୁନ । ଆମେ ଆସିଲାବେଳେ ତାଙ୍କୁ ଚାଳିଶି, ପଇଁଚାଳିଶି ବର୍ଷ ହୋଇଥିଲା । ଆମେ ଆସିବା ପ୍ରାୟ ବର୍ଷେ ହେବ; ଇତମଧ୍ୟରେ କଣ ତାଙ୍କୁ ଛୟାନବେ ବର୍ଷ ହୋଇଗଲା ?

ଯୁବକଟି କହିଲା—ଆପଣ ବୁଝିପାରୁନାହାନ୍ତି ଉଲ୍‌କାଳାବର୍ତ୍ତି ! ମହାଶୂନ୍ୟରେ ଆପଣ-ମାନଙ୍କର ଯେ ଗୋଟିଏ ବର୍ଷ, ଆମ ଚନ୍ଦ୍ରରେ ତା ପଚିଶ ବର୍ଷ । ଆପଣ ଯାହାକୁ କହୁଛନ୍ତି ଏହି ବର୍ଷଟାଏ, ଆମର ସେ ହେଉଛି ପୁରୁଷଟାଏ । ଏଇ ଦେଖନ୍ତୁ, ମୁଁ ନଆ ହୋଇ ଏଠାରେ ଯୋଗ ଦେଇଛି । ଆପଣ ପିରସ୍‌କୁ ଫେରଆସିଲାବେଳକୁ ମୁଁ ବଞ୍ଚି ନଥିବ । ଆପଣ ଫେର ଆସିଲାବେଳକୁ ଦେଖିବେ, ଏଠି ମୋ ଜାଗାରେ ଆଉ ଜଣେ କିଏ ଥିବେ । ଆପଣଙ୍କର ତିନୋଟି ବର୍ଷ କଟିଗଲାବେଳକୁ ଆମର ଏଠି ତିନି ପୁରୁଷ କଟିଯାଉଛି । ଏକଥା ଆଉକୁ ଆପଣଙ୍କର ନଜର ବୋଧହୁଏ ନାହିଁ ।

ଏକଥା ଶୁଣି ହଠାତ୍ ମୋ ମୁଣ୍ଡରେ ବଜ୍ର ପଡ଼ିଲା ଭଳି ଜଣିଲା । ତା'ହେଲେ ଶନା କଣ ବଞ୍ଚି ନଥିବ ମୋ ଫେରଲା ପର୍ଯ୍ୟନ୍ତ ? ମୁଁ ଫେରଲାବେଳକୁ ଶନା କଣ ବୁଢ଼ୀ ହୋଇ ଇହଧାମ ତ୍ୟାଗ କରସାରଥିବ ? ଆସିଲାବେଳେ ମୁଁ ତ ଏକଥା କଳ୍ପନା କରନଥିଲି । ମୋ ଧାରଣା, ମୁଁ ତିନିବର୍ଷ ପରେ ଫେର ଶନାକୁ ପୁଣି ଦେଖିପାରିବ । ଏ କଥା ଶନା ଜାଣିଥିଲେ ହୁଏତ ମୋତେ ଛାଡ଼ି ନଥାନ୍ତା । ମୁଁ ବି ତ ଶନାକୁ ଛାଡ଼ି ଏ ଅଭିଯାନରେ ଆସିନଥାନ୍ତି । ମୋ ଫେରବା ପଥକୁ ଚାହିଁ ଶନା ବୁଢ଼ୀ ହୋଇଯାଇଥିବ । ତାହାପରେ ବି ଚାହିଁଥିବ ମୋ ପ୍ରତ୍ୟାବର୍ତ୍ତନକୁ । ପ୍ରତ୍ୟାବର୍ତ୍ତନ ଖବର ନପାଇ ବଡ଼ ମନଦୁଃଖରେ ସେ ଇହଧାମ ତ୍ୟାଗ କରଥିବ । ତାହା ସହିତ କେବଳପ୍ରାୟ, ଶାଙ୍ଗରନା ପ୍ରଭୃତି ମୋର କେହି ଆତ୍ମୀୟ ଆଉ ଇହଧାମରେ ନଥିବେ । ଓଃ, କି ନିର୍ମମ ଏ ନକ୍ଷତ୍ର ସତେ ! ତେବେ ଆଉ କାହାପାଇଁ ଚନ୍ଦ୍ରଲୋକକୁ ଫେରିବ ? ମହାଶୂନ୍ୟ ଭିତରେ ମୋର ମୃତ୍ୟୁବରଣ ହିଁ ଶ୍ରେୟସ୍କର । ଏହା ଭାବୁ ଭାବୁ ମୋ ଆଖିରୁ ଟପ୍ ଟପ୍ ହୋଇ ଲୁହ ଗଡ଼ିପଡ଼ିଲା । ହଠାତ୍ ଦଳପତି ରମ୍‌ଦେବ ମୋ ପାଖକୁ ଆସି ପଚାରିଲେ—

'ଏ କ'ଣ ଉଲ୍‌କାଳାବର୍ତ୍ତି, ତୁମେ କାନ୍ଦୁଛ ?'

କ'ଣ ଉତ୍ତର ଦେବ ଠିକ୍ କରିପାରିଲି ନାହିଁ । କେବଳ ଝରକା ଦେଇ ମହାଶୂନ୍ୟ ଆଡ଼କୁ ଅନାଇ ରହିଲି । ମହାଶୂନ୍ୟର ଘୋର ଅନ୍ଧକାର ମୋତେ ଅଦୃଶ୍ୟ ସଙ୍କେତ ଦେଉଥିଲା, ଶନା ଏବେ ମରଣର ଅପେକ୍ଷାରେ ।

ମୋ କାନ୍ଧ ଉପରେ ମୃଦୁ ଚାପ ଦେଇ ରମ୍‌ଦେବ କହିଲେ—କଣ ପୁରକଥା ମନେ

ପଡ଼ୁଛୁ ଉତ୍କଳାବନ୍ତି ? ମୁଁ ସେଥିପାଇଁ ଆମ ମହାକାଶଯାନର ପ୍ରଧାନ ପରିଚାଳକଙ୍କୁ ମନା କରୁଥିଲି ତୁମ ଭଳି ବିବାହିତ ଲୋକଙ୍କୁ ଆଣିବାପାଇଁ । ଥରେ ମହାଶୂନ୍ୟ ଅଭିଯାନରେ ଆସିଲେ ଫେରିଲାବେଳକୁ ସ୍ତ୍ରୀ ବଞ୍ଚି ନଥିବ । ଯଦି ବଞ୍ଚିଥିବ ତୁମଠାରୁ ବୟସରେ ଢେର୍ ବଡ଼ ହୋଇଥିବ; ଏମିତି କି ବୁଢ଼ୀ ହୋଇଯିବଣି । ପିଲାଛୁଆ ଯଦି ଆସିଲାବେଳେ ଥିବେ, ତୁମେ ଫେରିଲାବେଳକୁ ସେମାନେ ତୁମଠାରୁ ବୟସରେ ଢେର୍ ବଡ଼ ହୋଇସାରିବେଣି । ପଚିଶ ବର୍ଷ ବୟସ ବାପର ଯଦି ଚାଳିଶ ବର୍ଷ ବୟସର ପୁଅ ହୁଏ, ତେବେ ପାରିବାରିକ ଚଳାଚଳରେ କେତେ ଅସୁବିଧା ହେବ କହିଲ ? ଏଥିପାଇଁ ବିବାହିତ ଲୋକଙ୍କୁ ଏହି ମହାଶୂନ୍ୟ ଅଭିଯାନରେ ଆଣିବାକୁ ମୁଁ ଆଦୌ ଇଚ୍ଛୁକ ନୁହେଁ । ସାଂସାରିକ ମମତା କେତେ ଜଣ ଛାଡ଼ିଦେଇ ପାରିବେ ? ଏହି ଅଭିଯାନରେ ଆସି ସେମାନଙ୍କ ସୁଖର ସଂସାରକୁ କାଳପୋଡ଼ି ନଷ୍ଟ କରିଦେବାକୁ କେତେଜଣ ଚାହିଁବେ ? କିନ୍ତୁ ତୁମର ଆସିବାପାଇଁ ଏକାନ୍ତ ଜିଦ୍ ଯୋଗୁଁ ମୋତେ ମତ ବଦଳାଇବାକୁ ପଡ଼ିଲା; ଯାହା ଫଳରେ କି ତୁମେ ଆଜି ଏତେ ହନ୍ତସନ୍ତ ହେଉଛ ।

—କିନ୍ତୁ ଆଶଙ୍କା କରି ନଥିଲି, ରମ୍‌ଦେବ ! ମୁଁ ଫେରିଲାବେଳକୁ ରିନା ବଞ୍ଚି ନଥିବ । ତା'ଛଡ଼ା ଚନ୍ଦ୍ରଲୋକର ମୋର ସବୁ ବନ୍ଧୁବାନ୍ଧବ ମଧ୍ୟ ଇହଧାମ ତ୍ୟାଗ କରିଥିବେ । ଏ ଚିନ୍ତା ଥିଲି ମୋ ଧାରଣାର ବାହାରେ !

—ଖାଲି ସେତିକି ନୁହେଁ ଉତ୍କଳାବନ୍ତି ! ତୁମେ ଫେରିଲାବେଳକୁ ଚନ୍ଦ୍ରଲୋକରେ ପ୍ରାୟ ଦେଢ଼ଶହ ବର୍ଷ ବିତିଯାଇଥିବ । ତୁମେ କଣ ଚାହୁଁଥିଲ ରିନା ଆହୁରି ଦେଢ଼ଶହ ବର୍ଷ ବଞ୍ଚିଥାନ୍ତା ? ଆମକୁ ସିନା ତିନିବର୍ଷ ଲାଗୁଛି; କିନ୍ତୁ ଚନ୍ଦ୍ରଲୋକରେ ତିନି ପୁରୁଷ କଟି-ଯାଇଥିବ ଆମେ ଫେରିଲା ବେଳକୁ । ସେଥିପାଇଁ ଦେଖୁନାହଁ, ତୁମ ଛଡ଼ା ଆମେ ସମସ୍ତେ କେମିତି ଅବିବାହିତ, ଘର-ସଂସାର ବୋଲି କାହାର କିଛି ନାହିଁ । ସାରା ଚନ୍ଦ୍ରଲୋକର କୋଡ଼ିଏ କୋଟି ଜନତାକୁ ଆଖି ଆଗରେ ରଖି ଆମେ ମହାଶୂନ୍ୟ ଅଭିଯାନରେ ବାହାରିଛୁ ଉତ୍କଳାବନ୍ତି ! ସ୍ତ୍ରୀ, ପୁତ୍ର, କନ୍ୟା, ବାପ ଓ ମା' ଆଦିର ମୋହ ରଖିଲେ ଏ କାର୍ଯ୍ୟରେ ଆଗେଇହୁଏନି । ତୁମ ଆଗରେ ଯେଉଁ ବିରାଟ କର୍ତ୍ତବ୍ୟ ରହିଛି, ତା ଆଗରେ ସ୍ତ୍ରୀ, ପୁତ୍ର, କନ୍ୟା ପ୍ରତି ମୋହ କିଛି ନୁହେଁ—ସେ ସବୁ ଭୁଲାଇବାକୁ ପଡ଼ିବ ।

## ସତର

କେ-ଜେଡ଼୍-ସି-୯ ଗ୍ରହରୁ ନାନାଦି ତଥ୍ୟ ସଂଗ୍ରହ କରି ଆମେ ଫେରିଆସିବା ଖବର ଯେତେବେଳେ ଚନ୍ଦ୍ରଲୋକରେ ପ୍ରଚାରିତ ହୋଇଗଲା, ଚାରିଆଡ଼େ ଚାଞ୍ଚଲ୍ୟ

ଖେଳଯାଇଥିଲା ସତ; କିନ୍ତୁ ସେଥିରେ କୌଣସି ଆନନ୍ଦ କି ଉତ୍ସାହ ନଥିଲା । ଆମେ ଚନ୍ଦ୍ର ଅଧିବାସୀଙ୍କ ପାଇଁ ଯେଉଁ ବାସସ୍ଥାନ ଖୋଜିବା ଆଶାରେ ଯାଇଥିଲୁ, ତାହା ପୂରାପୂରି ବ୍ୟର୍ଥ ହୋଇଯାଇଥିଲା ସେଠାକାର ଅବସ୍ଥା ଦେଖି । ସେହି ଗ୍ରହରେ ପ୍ରାଣୀଜଗତ୍ ବଞ୍ଚିବା ପାଇଁ ସବୁପ୍ରକାର ସୁବିଧା ଥିଲେ ହେଁ; ଗ୍ରହର ପ୍ରାକୃତିକ ଜଳ ଓ ବାୟୁ ଅତ୍ୟନ୍ତ ବିଷାକ୍ତ ଥିବାରୁ ଏହି ଗ୍ରହ ଉପରୁ ଆମେ ସମସ୍ତ ଆସ୍ଥା ତୁଟାଇବାକୁ ବାଧ୍ୟ ହେଲୁ । ଆମର ଏହି ଅଭିଜ୍ଞତାର କଥା ଯେତେବେଳେ ଚନ୍ଦ୍ରଲୋକରେ ପ୍ରଚାରିତ ହେଲା, ଚାରିଆଡ଼େ ହତାଶ ଭାବ ଖେଳିଗଲା ।

ଏଥିରେ ପୁଣି ଦିନକୁଦିନ ଚନ୍ଦ୍ରର ଅବସ୍ଥା ଅସମ୍ଭାଳ । ଜଳର ଉତ୍କଟ ଅଭାବ ଦେଖାଦେଇଥାଏ ସାରା ଉପଗ୍ରହରେ । ଜଳକୁ ଯେତେ ଉପାୟରେ ନିୟନ୍ତ୍ରଣ କଲେ ହେଁ ଦିନକୁ ଦିନ ଅଭାବ ବଢ଼ୁଥାଏ । ଜଳ ଅବସ୍ଥା ଯାହା, ବାୟୁ ଅବସ୍ଥା ସେଇଆ । ଶାର୍ଙ୍ଗରନା ଓ କେବଳପ୍ରାପ୍ତଙ୍କ ଉଦ୍ୟମରେ ଯେତିକ ଜଳ ଓ ବାୟୁ ପୃଥିବୀରୁ ଅଣାଯାଇଥିଲା, ତାହା ଏତେ ବର୍ଷ ଚଳାଇନେଲା । ପୃଥିବୀକୁ ଯାଇ ଆଉ ଜଳ ଓ ବାୟୁ ଆଣିବାର ଚେଷ୍ଟା ବା କରନ୍ତେ; କିନ୍ତୁ ପୃଥିବୀରେ ଘନ ଘନ ଯୁଦ୍ଧ-ବିଗ୍ରହ ଲାଗିରହିଥିବାରୁ ଚନ୍ଦ୍ରଲୋକରୁ ପୃଥିବୀକୁ ଯିବାକୁ କେହି ସାହସ କରୁ ନ ଥିଲେ । ତା ଛଡ଼ା ଏ ତ କିଛି ସବୁଦିନିଆ ସମାଧାନ ନୁହେଁ । ବାୟୁ ଓ ଜଳ ଏମିତି ମାଗିଆଣି ଚନ୍ଦ୍ରଲୋକର କୋଡ଼ିଏ କୋଟି ଅଧିବାସୀଙ୍କୁ ସେମାନେ କେତେ ଦିନ ବା ଯୋଗାଇ ପାରିବେ !

× × ×

ଯଥାସମୟରେ ଆମ ଦଳ ସିରସ୍‌ର ମହାଶୂନ୍ୟଘାଟୀରେ ପହଞ୍ଚିଲା । ଆମକୁ ସ୍ୱାଗତ କରିବାପାଇଁ ଯେଉଁମାନେ ଆସିଲେ, ସେମାନଙ୍କ ଭିତରୁ କାହାରିକୁ ଚିହ୍ନିଲାଭଳି ମନେ ହେଉ ନ ଥାଏ । ହଠାତ୍ ମନେ ପଡ଼ିଗଲା—ଆମେ ଏଠାରୁ ମହାଶୂନ୍ୟକୁ ଯାଇଥିଲୁ ଦେଢ଼ଶହ ବର୍ଷତଳେ । ଏତେ ବର୍ଷ କିଏ ବା ବଞ୍ଚିଥାନ୍ତା ଆମକୁ ସ୍ୱାଗତ କରିବାପାଇଁ ! କିନ୍ତୁ ଆମ ଅଭିଯାନ ବିଶେଷ ଫଳପ୍ରଦ ହୋଇ ନ ଥିବାରୁ କାହାରି ମନରେ ବିଶେଷ ସୁଖ ନଥାଏ ।

ସିରସ୍‌ରେ ବେଶି ସମୟ ଅପେକ୍ଷା ନ କରି ଆସିଲୁ ଚନ୍ଦ୍ରଲୋକକୁ । ଚନ୍ଦ୍ରର ମହାଶୂନ୍ୟଘାଟୀଟିକୁ ଦେଖି ଚିହ୍ନିପାରିଲୁ ନାହିଁ । ମନେ ହେଲା, ଏ ଯେମିତି ଆମ ପୂର୍ବପରିଚିତ ମହାଶୂନ୍ୟଘାଟୀ ନୁହେଁ । ଇତିମଧ୍ୟରେ ପରିବର୍ତ୍ତନର ବହୁ ଝଡ଼ ବହିଯାଇଛି ଏ ମହାଶୂନ୍ୟଘାଟୀଟି ଉପରେ । ମନେ ପଡ଼ିଲା—ଆମପାଇଁ ମାତ୍ର ତିନିବର୍ଷ ତଳର କଥା—ଏହି ମହାଶୂନ୍ୟଘାଟୀରୁ ଗଲାବେଳେ କେତେ ଲୋକ ମୋତେ ବିଦାୟ ଦେବାକୁ ଆସିଥିଲେ । ଶାର୍ଙ୍ଗରନା, କେବଳପ୍ରାପ୍ତ, ଶାର୍ଙ୍ଗରନା—ସମସ୍ତଙ୍କଠାରୁ କେଡ଼େ ଖୁସିରେ ବିଦାୟ ନେଇ ଯାଇଥିଲି ମହାଶୂନ୍ୟ ଭିତରକୁ; କିନ୍ତୁ ଆଜି ସେମାନେ କେହି ନାହାନ୍ତି । ଏହା ଭିତରେ

ଦେଢ଼ଶହ ବର୍ଷ ବିତିଯାଇଛି । ଶାଙ୍ଗରିନା, ଶାଙ୍ଖରିନା ଓ କେବଳପ୍ରାପ୍ତ କେଉଁ ଦିନରୁ ଏଇ ଚନ୍ଦ୍ରପୃଷ୍ଠରୁ ବିଦାୟ ନେଲେଣି, ତାର ହିସାବ କେହି ରଖିଥିବେ କି ନାହିଁ ସନ୍ଦେହ । ବିଦାୟବେଳରେ ଶାଙ୍ଗରିନାର ବିଷାଦପୂର୍ଣ୍ଣ ମୁଖମଣ୍ଡଳ ମନେପଡ଼ିଗଲା । ନବଜାତ ରାକ୍ଷସ-ପୁତ୍ରର ମା' ଭାବରେ ସେ ଯେତେ ଶଙ୍କିତ ହେଉ ନ ଥିଲା, ତା'ଠାରୁ ଅଧିକ ଶଙ୍କିତ ହୋଇପଡ଼ିଥିଲା ମହାଶୂନ୍ୟର ବିପଦ-ଆପଦ କଥା ଭାବି । କିଛିଦିନ ପୂର୍ବେ କାମରାନ୍ଙ୍କ ଅଭିଯାନର ଯେଉଁ ଶୋଚନୀୟ ପରିଣତି ଘଟିଥିଲା, ସେକଥା ମନେ ପକାଇ ସେ ଥରିଉଠୁଥିଲା । ବିଦାୟ ବେଳର ଶେଷ କେଇ ପଦ କଥା ମୋ କାନ ପାଖରେ ପୁଣି ଗୁଞ୍ଜରି ଉଠିଲା—'ଦେଖ ପ୍ରିୟତମ, ମହାଶୂନ୍ୟରୁ ତୁମ ଖବର ଯେମିତି କିଛି ଦିନ ବ୍ୟବଧାନରେ ମୋ'ଠାକୁ ପଠାଇବାକୁ ନ ଭୁଲ । ତୁମ ଫେରିବାପଥକୁ ଚାହିଁ ବସିଥିବି ।' ଅଜାଣତରେ ଆଖିରୁ ଟପ୍ ଟପ୍ କରି କେତେ ଟୋପା ଲୁହ ଗଡ଼ିପଡ଼ିଲା । ଚନ୍ଦ୍ରାକଲି, ଏବେ ଚନ୍ଦ୍ରଲୋକରେ ଯିବି କୁଆଡ଼େ ? ଏଠି ମୋତେ ଚିହ୍ନିବ ବା କିଏ ? ମୋର ନିଜର ଲୋକ ବୋଲି ତ ଏଠି ଆଉ କେହି ନାହିଁ । ରାଷ୍ଟ୍ର ସରକାରଙ୍କ ତରଫରୁ ଯାହା ମୋତେ ସମ୍ବର୍ଦ୍ଧନା କରାଯିବ; କିନ୍ତୁ ପୁଣି ତ ମୋତେ ଦୁର୍ବିସହ ନିଃସଙ୍ଗ ଜୀବନ ଯାପନ କରିବାକୁ ପଡ଼ିବ ଏଠି । ଏମିତି ଅବସ୍ଥାରେ ମୁଁ ମହାଶୂନ୍ୟରୁ ଫେରିଲି ବା କାହିଁକି ? ସେଠାରେ ମୃତ୍ୟୁ ହୋଇଥିଲେ ଏ ଦୁଶ୍ଚିନ୍ତାରୁ ମୁକ୍ତ ହୋଇଥାନ୍ତି ।

ଏମିତି କେତେ କଣ ଭାବି ମହାଶୂନ୍ୟଘାଟୀର ସଦର ଦରଜା ଦେଇ ବାହାରକୁ ଯାଉଛି, ହଠାତ୍ ମୋ ପାଖକୁ ଦୌଡ଼ି ଆସି ମୋତେ ନମସ୍କାର ଜଣାଇଲା ଯୁବତୀଟିଏ ।

ପ୍ରତିନମସ୍କାର ଜଣାଇ ବିସ୍ମୟର ସହିତ ଅନାଇ ରହିଲି ଯୁବତୀଟିକୁ ଓ ତାହା ସହିତ ଥିବା ତାର ସଙ୍ଗିନୀ ତିନିଜଣଙ୍କୁ ।

ଯୁବତୀଟି ମୋ ପାଖକୁ ଘୁଞ୍ଚିଆସି କହିଲା—ଆପଣ ମୋତେ ଚିହ୍ନି ପାରିବେ ନାହିଁ । ମୁଁ ହେଉଛି ଶାଙ୍ଗରିନାର ପଣନାତୁଣୀ । ତାଙ୍କ ପୁଅର ପୁଅର ଝିଅ ।

—ଏଁ ତୁମେ ଶାଙ୍ଗରିନାଙ୍କ ପଣନାତୁଣୀ ? ଆଶ୍ଚର୍ଯ୍ୟରେ ମୋ ନେତ୍ର ବିସ୍ଫାରିତ ହୋଇଗଲା । ପୁଣି ଥରେ ପଚାରିଲି—କଣ କହିଲ ? ତୁମେ ଶାଙ୍ଗରିନାଙ୍କ ପଣନାତୁଣୀ ! ତାଙ୍କ ପୁଅର ପୁଅର ଝିଅ ?

ଯୁବତୀଟି ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ଯୁବତୀଟିକୁ ପାଖକୁ ଟାଣିଆଣି ତା' ପିଠିରେ ହାତମାରି ପଚାରିଲି—ତୁମେ ଶାଙ୍ଗରିନାଙ୍କ ପଣନାତୁଣୀ ? ବାଃ, ବଡ଼ ସୌଭାଗ୍ୟ ମୋର—ତୁମକୁ ଆଜି ଭେଟିଲି । ଅଜାଣତରେ ମୋ ପାଟିରୁ ବାହାରିପଡ଼ିଲା—ତୁମ 'ପଣଗୋସମା' କେମିତି ଅଛନ୍ତି ? ପ୍ରଶ୍ନଟା ପଚାରିସାରି ହଠାତ୍ ମନେପଡ଼ିଗଲା, ଆରେ କ'ଣଟାଏ ପଚାରି ଦେଲି ସତେ ! ଝିଅଗୁଡ଼ାକ ମୋତେ ପାଗଳ ଭାବିବେ ନାହିଁ ତ ?

ଝିଅଟି ସେତେବେଳକୁ ମୋତେ ବିସ୍ମିତ ହୋଇ ଅନାଇ ରହିଥିଲା । ମୋର ଏଭଳି ପ୍ରଶ୍ନ

ଶୁଣି । ତା’ ପରେ ପ୍ରକୃତିସ୍ଥ ହୋଇ କହିଲା—ମୋ ପଣଗୋସମା’ କେଉଁ ଦିନରୁ ଇହଧାମ ତ୍ୟାଗ କଲେଣି । ତାଙ୍କ ପୁଅ ମୋ ଗୋସବାପ ମଧ୍ୟ ଆଉ ଇହଧାମରେ ନାହାନ୍ତି । ତାଙ୍କ ପୁଅ, ଯେ କି ମୋ ବାପା, ଏବେ ବଞ୍ଚିଛନ୍ତି । ଆମେ ହେଉଛୁ ତାଙ୍କର ଦୁଇଟି ସନ୍ତାନ । ମୁଁ ଓ ମୋର ଗୋଟିଏ ଭାଇ । ମୁଁ ହେଉଛି ବଡ଼, ଭାଇଟି ମୋ’ଠାରୁ ସାନ । ଯୁବତୀଟିର ସାଙ୍ଗ ଛିଅ ଜଣକଣ ସେତେବେଳକୁ ଆସି ମୋ ଶଯ୍ୟାପାଖରେ ଘେରିଗଲେଣି । ଯୁବତୀଟି ମୋତେ ପଚାରିଲା—ଆପଣ ପରା ମୋ ପଣଗୋସମା’ଙ୍କ ଶାନଭଉଣୀ ସାଙ୍ଗରନାଙ୍କ ସ୍ୱାମୀ ? ମୋ ପଣଗୋସମା’ଙ୍କର କିଛି ଦିନ ଆଗରୁ ସେ ମରିଯାଇଥିଲେ । ମୋ ବାପା ମଧ୍ୟ ତାଙ୍କୁ ଦେଖିନାହାନ୍ତି ।

ରନାର ମୃତ୍ୟୁଖବର ଶୁଣି ମୋ ଆଖି ଛଳଛଳ ହୋଇଆସିଲା । କଣ୍ଠ ବାଷ୍ପରୁଦ୍ଧ ହେବାରୁ ଆଉ କିଛି ପଚାରି ପାରିଲି ନାହିଁ । କିଛି ସମୟ ପରେ ପଚାରିଲି—ତୁମ ରନା ପଣଗୋସମା’ଙ୍କ ସମ୍ପର୍କରେ ତୁମେ ଆଉ କିଛି ଶୁଣିଛ ? ତାଙ୍କର ଗୋଟିଏ ପୁଅ ଥିବା କଥା ତୁମେ ଶୁଣିଥିବ ନିଶ୍ଚୟ ।

—ଶାଙ୍ଗରନାଙ୍କ ପୁଅ ? ହଁ ହଁ, ସେହି ଯେଉଁ ରାକ୍ଷସ-ପୁଅ କଥା ତ ? ହଁ ହଁ କେତେଥର ଶୁଣିଛି ବାପାଙ୍କଠାରୁ । ଆମ ବହିରେ ବି ପଢ଼ିଛୁ ସେହି ରାକ୍ଷସ-ପୁତ୍ର କଥା । ସେ ତ ଆଜକୁ ଦେଢ଼ଶହ ବର୍ଷ ତଳର କଥା । ସେ ପରା ଆପଣଙ୍କ ପୁଅ ?

ମୁଣ୍ଡ ହଲାଇ ‘ହଁ’ କଲି ।

ଯୁବତୀଟି କହିଚାଲିଲା—ବାପା କହୁଥିଲେ, କାଳେ ସେ ପୁଅର ଉଚ୍ଚତା ଥିଲା କୋଡ଼ିଏ ଫୁଟ ଓ ଓଜନ ପ୍ରାୟ ହଜାରେ ପାଉଣ୍ଡ । ତା ରହିବା ପାଇଁ ଅଲଗା ଘର, ତା ପିନ୍ଧିବା-ପାଇଁ ଅଲଗା ପୋଷାକ ରନା ପଣଗୋସମା’ ତିଆରି କରିଥିଲେ । ପିଲାଏ କାଳେ ତାଙ୍କୁ ରାକ୍ଷସ କହି ଗୋଡ଼ାଇବେ, କି ଘୃଣା କରିବେ, ତେଣୁ ତାଙ୍କ ମା’ ତାଙ୍କୁ ବାହାରକୁ ବୁଲିବାକୁ ଛାଡ଼ୁ ନ ଥିଲେ । କିନ୍ତୁ ସେହି ପୁଅ ବେଶି ଦିନ ବଞ୍ଚିଲା ନାହିଁ । ଅଳ୍ପ କେଇ ଦିନ ପରେ ମରିଗଲା ଓ ପୁଅ ମରିଯିବାର କେଇଦିନ ପରେ ରନା ପଣଗୋସମା’ ପୁଅକଥା ଭାବି ଭାବି ମଧ୍ୟ ମରିଗଲେ । ରାକ୍ଷସ-ପୁଅ କେମିତି ଜନ୍ମ ହୁଅନ୍ତି ଓ ସେମାନେ ଜନ୍ମ ହେଲେ କାହିଁକି ବେଶି ଦିନ ବଞ୍ଚନ୍ତିନି, ସେ ସବୁ ଆମ ବହିରେ ଏବେ ପଢ଼ାହୁଏ । ଆପଣ କାଳେ ପୃଥିବୀର ଲୋକ ବୋଲି ଆପଣଙ୍କ ପୁଅ ଏମିତି ବଡ଼ ଆକାର ଧାରଣ କରିଥିଲା ।

ଯୁବତୀଟି ପୁଣି କହିଲା—ଦେଢ଼ଶହ ବର୍ଷ ତଳେ ଆପଣ ଏହି ଚନ୍ଦ୍ରଲୋକରେ ଥିଲେ । ଆମେ ଆପଣଙ୍କୁ ଚିହ୍ନି ନ ଥିବାରୁ ବାପା ଆପଣଙ୍କ ଫଟୋ ଆମକୁ ଦେଖାଇ ଆପଣଙ୍କୁ ଚିହ୍ନିବାରେ ସାହାଯ୍ୟ କରିଥିଲେ । ଚନ୍ଦ୍ରଲୋକକୁ ଫେରିଆସୁଛନ୍ତି ବୋଲି ବାପା ଆମକୁ ପଠାଇଛନ୍ତି ଆପଣଙ୍କୁ ସ୍ୱାଗତ କରିବାପାଇଁ । ବାପାଙ୍କ ଦେହ ଭଲ ନଥିବାରୁ ଡାକ୍ତରଙ୍କ ନିର୍ଦ୍ଦେଶ ଯୋଗୁଁ ସେ ଆସି ପାରିଲେ ନାହିଁ; ନୋହିଲେ ସେ ବି ଆମ ସହିତ ଏହି ମହାଶୂନ୍ୟଘାଟୀକୁ ଆସିଥାନ୍ତେ । ଆମ ଛଡ଼ା ଆପଣଙ୍କର ଏଠି ନିଜର ଲୋକ କିଏ ଅଛି ?

ତେଣୁ ବାପା ଆମକୁ ପଠାଇଛନ୍ତି ଆପଣଙ୍କୁ ସ୍ୱାଗତ କରି ଆମ ଘରକୁ ନେଇଯିବାପାଇଁ । ଏମାନେ ହେଉଛନ୍ତି ମୋର ସାଙ୍ଗ । ଆମେ ସମସ୍ତେ ଆସିଛୁ ଆପଣଙ୍କୁ ସ୍ୱାଗତ କରିବାପାଇଁ ।

ଯୁବତୀଟି ଓ ତାର ସାଙ୍ଗମାନେ ମୋତେ ଥରକୁ ଥର ଆଶ୍ଚର୍ଯ୍ୟ ହୋଇ ଅନାଉଥାନ୍ତି; ଯେମିତି କି ସେମାନଙ୍କର ସନ୍ଦେହ ମୁଁ ପ୍ରକୃତରେ ଉତ୍କଳାବର୍ତ୍ତୀ କି ନୁହେଁ । ସେମାନଙ୍କର ସନ୍ଦେହ ଯୁବତୀଟି ଯଦି ମୋତେ ଚିହ୍ନିବାରେ କିଛି ଗୋଳମାଳ କରିଥାଏ, ତେବେ ସବୁ ଓଲଟପାଲଟ ହୋଇଯିବ । ସେମାନଙ୍କ ମୁହଁକୁ ଜଣାପଡ଼ୁଥାଏ, ସେମାନେ ମୋତେ କେତେ କଣ ପଚାରିବେ ପଚାରିବେ ହେଉଥାନ୍ତି; କିନ୍ତୁ ପଚାରିପାରୁ ନଥାନ୍ତି ।

ଯୁବତୀଟିକୁ ପଚାରିଲି—ତୁମ ନାଁ ?

ସେ ହସି ହସି ତା'ର ଭ୍ରୂଲତା ଦୁଇକୁ ନଚାଇ ଉତ୍ତର ଦେଲା—ମୋ ନାଁ ଗାଙ୍ଗରିନା । ଏମାନେ ସମସ୍ତେ ମୋର ସାଙ୍ଗ । ଆମେ ସମସ୍ତେ ଗୋଟିଏ ବିଶ୍ୱବିଦ୍ୟାଳୟରେ ପଢ଼ୁଁ । ଗାଙ୍ଗରିନା ନାଁ ଶୁଣି ମୋ ଆଖିଆଗରେ ଭାସିଉଠିଲା ଶାଙ୍ଗରିନା ଓ ଶାଙ୍ଗରିନାଙ୍କ ମୁଖମଣ୍ଡଳ । ଆଉ ଯେ ସେମାନଙ୍କୁ ମୁଁ ଦେଖିପାରିବି ନାହିଁ, ଭାବିଲାବେଳକୁ ଆଖିରେ ଲୁହ ଆସୁଥାଏ । ମୋତେ ଏମିତି ବିଷଣ୍ଣ ଦେଖି ଯୁବତୀଟି କହିଲା—ଏଠି ଠିଆହୋଇ ଲାଭ କଣ, ଆସନ୍ତୁ ଆମ ଘରକୁ ଯିବା ଏଥର । ବାପା ତେଣେ ଆମ ସମସ୍ତଙ୍କୁ ଅନାଇ ବସିଥିବେ ।

ଅନ୍ୟମନସ୍କଭାବେ ଯୁବତୀମାନଙ୍କୁ ଅନୁଗମନ କଲି । ଯାଉଁ ଯାଉଁ ଗାଙ୍ଗରିନା ପଚାରିଲା —ଆପଣ ପରା ଏଡ଼େ ଚନ୍ଦ୍ରପୃଷ୍ଠରେ ଥିଲେ ଆଜକୁ ଦେଢ଼ଶହ ବର୍ଷତଳେ ? ଆପଣଙ୍କ ସାଙ୍ଗମାନେ କେତେ ଦିନରୁ ଇହଧାମ ତ୍ୟାଗ କରିସାରିଲେଣି ! ଆପଣଙ୍କୁ ତ ଆମେ କାହିଁକି ସେତେ ପରିଣତ-ବୟସ୍କ ଭଳି ଦେଖୁନାହୁଁ । ମହାଶୂନ୍ୟଘାଟୀକୁ ଆସିଲାବେଳେ ମୋର ବଡ଼ ସନ୍ଦେହ ଥିଲା ଆପଣଙ୍କୁ ଚିହ୍ନିପାରିବି କି ନାହିଁ । ଦେଢ଼ଶହ ବର୍ଷତଳେ ଆପଣଙ୍କ ରୂପ ଯାହାଥିଲା, ବର୍ତ୍ତମାନ ତା ପୁରାପୁରି ବଦଳି ଆପଣ ବାର୍ଦ୍ଧକ୍ୟର ଶେଷ ସୀମାରେ ପହଞ୍ଚିଥିବେ ବୋଲି ଆମେ ଆଶାକରିଥିଲୁ । ତେଣୁ ସେ ପରିସ୍ଥିତିରେ ମୁଁ ଆପଣଙ୍କୁ ଚିହ୍ନିପାରିବି କି କଅଣ, ବଡ଼ ସନ୍ଦିହାନ ହୋଇପଡ଼ିଥିଲି । କିନ୍ତୁ ମୁଁ ଯାହା ଦେଖୁଛି, ଆପଣଙ୍କ ଦେଢ଼ଶ' ବର୍ଷତଳର ଓ ବର୍ତ୍ତମାନର ରୂପରେ ତ କିଛି ପରିବର୍ତ୍ତନ ହୋଇନି । ଦେଢ଼ଶହ ବର୍ଷତଳେ ଯେମିତି ଦେଖାଯାଉଥିଲେ, ବର୍ତ୍ତମାନ ଠିକ୍ ସେମିତି ତ ଦେଖାଯାଉଛନ୍ତି ।

—ପରିବର୍ତ୍ତନ ଦେଖିବ କେମିତି ଗାଙ୍ଗରିନା ? ମୋର ପ୍ରକୃତ ବୟସରେ ମୋଟେ ପରିବର୍ତ୍ତନ ହୋଇଛି ତିନୋଟି ବର୍ଷ । ମୁଁ ତ ମାତ୍ର ତିନୋଟି ବର୍ଷ ପାଇଁ ଚନ୍ଦ୍ରଲୋକ ବାହାରେ ଥିଲି । ଏହା ଭିତରେ ତୁମେ ମୋ ଚେହେରାରେ କି ପରିବର୍ତ୍ତନ ଆଶା କରିପାର ? ମୋର ଯେ ତିନିବର୍ଷ, ତୁମର ଏଠି ଦେଢ଼ଶହ ବର୍ଷ ହୋଇଥିବାରୁ ତୁମକୁ ସିନା ଏତେ ସମୟ ଜଣାପଡ଼ୁଛି; ନୋହିଲେ ମୋତେ ତ କିଛି ଜଣାପଡ଼ୁନି । ହେଉ,

ସେଦିନ ତିନିବର୍ଷ ତଳେ ତୁମ ପଣଗୋସମା ଶାଙ୍ଗଶନା ଓ ଶାଙ୍ଗଶନାଙ୍କଠାରୁ ବିଦାୟ ନେଇ ଏହି ମହାଶୂନ୍ୟଘାଟୀରୁ ଫିରସ୍ ଅଭିମୁଖେ ଯାଇଥିଲି; ସେଠୁଁ ଯାଇଥିଲି ମହାଶୂନ୍ୟକୁ । କିନ୍ତୁ ସେଇ ଘଟଣାଗୁଡ଼ିକ ତୁମର ଇତିହାସର କେଉଁ ପୁରୁଣା ପୃଷ୍ଠାରେ ଯାଇ ରହିବଣି ।

ବଡ଼ ଆଶ୍ଚର୍ଯ୍ୟ ହୋଇ ମୋ କଥା ଶୁଣିଯାଉଥିଲେ ଯୁବକମାନେ । ଯାଉଁ ଯାଉଁ ଗୁଙ୍ଗଶନା କହିଲି—ଆପଣ ଯଦି ଆମ ଘରେ ରହି ନଥାନ୍ତେ ଆମେ ଖୁବ୍ ବ୍ୟଥିତ ହୋଇଥାନ୍ତୁ ସାଆନ୍ତେ ! ଆପଣ ଯେତେବେଳେ ଆମର ଆତ୍ମୀୟ, ଆମ ଘରେ ଆତିଥ୍ୟ ଗ୍ରହଣ କଲେ ଆମେ ନିଜକୁ କେତେ ଭାଗ୍ୟବାନ୍ ମଣିବୁଁ କହିଲେ ?

ଗୁଙ୍ଗଶନାଙ୍କ ଘରେ ପହଞ୍ଚିଲି ବେଳକୁ ବହୁ ଲୋକଙ୍କ ଗହଳି । ମୋତେ ସ୍ୱାଗତ କରିବାପାଇଁ ଚନ୍ଦ୍ରଲୋକର ବହୁ ବୈଜ୍ଞାନିକ, ଶାସନକର୍ତ୍ତା, ମାନ୍ୟଗଣ୍ୟ ବ୍ୟକ୍ତି ହାଜର । ଯଦିଚ ଆମ ମହାକାଶ ଅଭିଯାନ କିଛି ସୁଖର ବାର୍ତ୍ତା ବହିଆଣି ନଥିଲା ଚନ୍ଦ୍ରଲୋକ ଅଧିବାସୀଙ୍କ ପାଇଁ; ତଥାପି ଏହି ବିରାଟ ଅଭିଯାନରେ ଯାଇ ସଫଳତାର ସହିତ ଫେରିଆସିଥିବାରୁ ସମସ୍ତଙ୍କ ମନରେ ଆନନ୍ଦ । କିନ୍ତୁ ସମସ୍ତଙ୍କ ମନରେ ସେଇ ଗୋଟିଏ ପ୍ରଶ୍ନ—ଏଇ ଲୋକ ଦେଢ଼ ଶହ ବର୍ଷତଳେ ଏଠି ଥିଲା ? ଏତେ ବର୍ଷ ପରେ ମଧ୍ୟ ବାର୍ଦ୍ଧକ୍ୟ ଏହାକୁ ସ୍ପର୍ଶ କରିନାହିଁ କିପରି ? ଏହିଭଳି କେତେ ପ୍ରଶ୍ନ ଯେ ସେମାନଙ୍କ ମନକୁ ଉଦ୍‌ବେଳିତ କରୁଥିଲା, ତା'ର ଇୟତ୍ତା ନାହିଁ ।

## ଅଠର

ଗୁଙ୍ଗଶନାଙ୍କ ଘରକୁ ପଶିଗଲି—ସେଇ ପୂର୍ବ-ପରିଚିତ ଘର । ମୁଁ ଦିନେ ଅତିଥି ହୋଇ ପୃଥିବୀରୁ ଏହି ଘରକୁ ଆସିଥିଲି ଆଜିକୁ ପ୍ରାୟ ୧୫୮ ବର୍ଷ ତଳେ । ଏହି ଘରେ ମୋର ପହିଲି ସାକ୍ଷାତ ହୁଏ ଶନା ସହିତ । ଲଜ୍ଜାଶୀଳା ଶନା ମୋତେ ଦେଖି ସେଇ ଦୁଆରବାଟେ ପଳାଇଥିଲା ବାହାରକୁ । ଶାଙ୍ଗଶନା ଓ କେବଳପ୍ରାୟଙ୍କ ଆତିଥ୍ୟ, ସ୍ନେହ-ସୌହାର୍ଦ୍ଦ୍ୟ ଆଜି ପର୍ଯ୍ୟନ୍ତ ମୋ ସ୍ମୃତିପଟରୁ ଲିଭିନି । ଲିଭିବ ବା କେମିତି ? ହେଲେ ସେଦିନ ଭଳି ଜଣାପଡ଼ୁଛି ମୋତେ ।

ସେଇ ଘର କିଛି ବଦଳି ନାହିଁ; କାଲି ଭଳି ଲାଗୁଛି । ଘର ଭିତରର ସାଜସଜ୍ଜା ମନେ ହେଉଛି ଠିକ୍ ସେମିତି ଅଛି, ଯେମିତି ଦେଢ଼ଶହ ବର୍ଷତଳେ ଥିଲା । ମନେ ହେଉଥାଏ, ମୁଁ ଯେମିତି ଏଠାକୁ ନୂଆ କରି ଆସୁଛି—ଶନା ପୁଣି ଚାଲିଆସିବ ମୋ ଆଗକୁ ଓ ମୋତେ ଦେଖି ଲଜ୍ଜିତ ହୋଇ ପଳାଇବ ମୋ ସାମନାରୁ ଅନ୍ୟମନସ୍କ [illegible] ଅନାଇଲି । କାହିଁ ଶନା, କାହିଁ ଶାଙ୍ଗଶନା, କେହି ନାହାନ୍ତି [illegible] ପଡ଼ିଗଲା—ଆରେ

ମୁଁ କଣ ଭାବୁଛୁ ସତେ ? ସେମାନେ ବହୁଦିନରୁ ଏ ଘରୁ ବିଦାୟ ନେଇଗଲେଣି । ଗଲା ଆଉ ଫେରିବ ନାହିଁ । କେଉଁ ଦେଢ଼ଶହରୁ ଊର୍ଦ୍ଧ୍ୱ ବର୍ଷତଳର କଥା । ବର୍ତ୍ତମାନ ସେ ସବୁ ମନେପକାଇ ଲାଭ କଅଣ ? ଖାଲି ମନଟା ଦାହଗଞ୍ଜ ହେବା ଛଡ଼ା ଆଉ କିଛି ନୁହେଁ ।

ଡ୍ରଇଂରୁମ୍‌କୁ ପଶୁ ପଶୁ ଏମିତି କେତେ କଣ ଭାବି ଭାବି ଚାଲିଛୁ, ହଠାତ୍ ସାମନା ଦୁଆର ଦେଇ ଘରକୁ ପଶିଆସିଲେ ସାଙ୍ଗରିନାର ବୃଦ୍ଧ ପିତା । ପଶି ଆସୁ ଆସୁ ମୋତେ ସ୍ୱାଗତ କରି ନିକଟସ୍ଥ ସୋଫାରେ ବସାଇ କହିଲେ—ଆପଣ ବୋଧହୁଏ ମୋତେ ଚିହ୍ନି ପାରୁନାହାନ୍ତି । ମୁଁ ହେଉଛୁ ସାଙ୍ଗରିନାର ପିତା, ଆପଣଙ୍କର ବନ୍ଧୁ କେବଲପ୍ରାସ୍ତ ଓ ଶାଙ୍ଗରିନାଙ୍କର ନାତି, ଶାଙ୍ଗରିନାଙ୍କ ପୁଅର ପୁଅ । ଆପଣଙ୍କ ସ୍ତ୍ରୀ, ଶାଙ୍ଗରିନା ମୋର ଗୋସମା' । ତେଣୁ ଆପଣ ବି ମୋର ଗୋସବାପା ।

ରିନାର ସ୍ମୃତି ମୋ ମନକୁ ଏତେ ଆଲୋଡ଼ିତ କରିଥାଏ ଯେ ସାଙ୍ଗରିନାର ବାପାଙ୍କ କଥା ମୋ କାନ ଭିତରକୁ ପଶୁନଥାଏ । ଅନ୍ୟମନସ୍କ ଭାବରେ କହିଲି—ପ୍ରାକୃତିକ ନିୟମର ତ ଏକ ବିଚିତ୍ର କାରସାଦି ! ଯେଉଁମାନେ ମହାଶୂନ୍ୟ ଅଭିଯାନରେ ଦୂରଦୂରାନ୍ତର ଗ୍ରହକୁ ଅତିବେଗଗାମୀ ମହାଶୂନ୍ୟଯାନରେ ଯାଆନ୍ତି, ସେମାନଙ୍କ ପାଇଁ ସମୟ ଏତେ ଧୀର ବେଗରେ ଗତି କରେ ଯେ ସେମାନଙ୍କର ବର୍ଷଟାଏ ହେଲାବେଳକୁ ଏଠି ପୁରୁଷଟାଏ କଟିଯାଏ । ସେଥିପାଇଁ ଆପଣମାନଙ୍କର ଯାହା ଦେଢ଼ଶହ ବର୍ଷ, ଆମର ତାହା ମାତ୍ର ତିନି ବର୍ଷ । ଏଇ ଦେଖନ୍ତୁ, ଆମେ ମାତ୍ର ତିନି ବର୍ଷତଳେ ମହାଶୂନ୍ୟ ଅଭିଯାନରେ ଯାଇଥିଲୁ । ଫେରିଆସିଲା ବେଳକୁ ଆପଣଙ୍କର ଏଠି ଦେଢ଼ଶହ ବର୍ଷ ବିତିଯାଇଛି । ମୁଁ ଯେତେବେଳେ ଚନ୍ଦ୍ରପୃଷ୍ଠ ଛାଡ଼ିଥିଲି ମୋତେ ହୋଇଥିଲା ଅଣତିରିଶ ବର୍ଷ ! ବର୍ତ୍ତମାନ ମୋତେ ମୋଟେ ବତିଶ ବର୍ଷ । ଏଠାରେ ଥିବା ମୋର ସାଙ୍ଗମାନେ କେଉଁଦିନରୁ ବୁଢ଼ା ହୋଇ ଇହଧାମ ତ୍ୟାଗ କରିସାଲେଣି ।

ବୃଦ୍ଧ କହିଲେ—ଖାଲି ଇହଧାମ ତ୍ୟାଗ କରିନାହାନ୍ତି; ସେମାନଙ୍କ ନାତି-ନାତୁଣୀ-ମାନେ ମଧ୍ୟ ଆପଣଙ୍କଠାରୁ ବୟସରେ ବଡ଼ ହୋଇଯାଇଛନ୍ତି । ଏଇ ଦେଖନ୍ତୁ, କେବଲପ୍ରାସ୍ତ ଥିଲେ ଆପଣଙ୍କର ସାଥୁ, ତାଙ୍କ ନାତି ହେଉଛି ମୁଁ । ମୁଁ ପୁଣି ଆପଣଙ୍କଠାରୁ ବୟସରେ କେତେ ବଡ଼ ! ଆପଣଙ୍କ ବୟସ ମୋଟେ ବତିଶି ବର୍ଷ ହେଲାବେଳକୁ ମୋ ବୟସ ଷାଠିଏରୁ ଊର୍ଦ୍ଧ୍ୱ । ନ୍ୟାୟତଃ ଆପଣ ମୋ ଗୋସବାପା; ମୁଁ ଆପଣଙ୍କ ନାତି । କିନ୍ତୁ ଦେଖିଲାବେଳକୁ ମୋ ଆଗରେ ଆପଣ ପିଲା । ବଡ଼ ବିଚିତ୍ର ଏହି ସମୟର ଗତି ମହାକାଶ-ଯାତ୍ରୀଙ୍କ ପାଖରେ । କଥାରେ ଅଛି, ସମୟ କାହାରି ପାଇଁ ଅପେକ୍ଷା କରେ ନାହିଁ; କିନ୍ତୁ ଏହା ମହାକାଶଯାତ୍ରୀମାନଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ । ସମୟ ସେମାନଙ୍କ ପାଇଁ ଅପେକ୍ଷା କରେ, ସେମାନଙ୍କ ପାଇଁ ଅଟକିଯାଇପାରେ ମଧ୍ୟ ।

ହସି ହସି ସାଙ୍ଗରିନା କହିଲା—ଖାଲି ସେତିକି ନୁହେଁ ବାପା, ସେମାନଙ୍କ ପାଇଁ ସମୟ ମଧ୍ୟ ପଛକୁ ଗତି କରିପାରେ । ସେମାନେ ଯଦି ମହାଶୂନ୍ୟରେ ଆଲୋକବେଗଠାରୁ ଅଧିକ

ବେଗରେ ଗତି କରନ୍ତି, ତେବେ ସେମାନଙ୍କ ପାଇଁ ଆସନ୍ତାକାଲି ନ ଆସି ଗତକାଲି ଆସିପାରେ । ରବିବାର ପରେ ସୋମବାର ନ ଆସି ଶନିବାର ଆସେ ସେମାନଙ୍କ ପାଇଁ । ସମୟର ଗତି ପଛକୁ ହୋଇଯାଏ ଏଇମିତି ଭାବରେ ।

ବ୍ରାଙ୍ଗରିନାର କଥା ଶୁଣି ସମସ୍ତେ ଠୋ-ଠୋ ହସିଲେ । ମୁଁ ମଧ୍ୟ ନ ହସି ରହି-ପାରିଲିନି ।

× × ×

ହଠାତ୍ ମୋ କୋଠରି ଭିତରକୁ ପଶିଆସିଲା ବ୍ରାଙ୍ଗରିନା । ମୁହଁରେ ତାର ହସର ପ୍ରାଚୁର୍ଯ୍ୟ । ପଶି ଆସୁ ଆସୁ କହିଲା—ଆପଣଙ୍କୁ ଗୋଟିଏ କଥା ବହୁଦିନ ହେଲା କହିବି କହିବି ବୋଲି ଭାବୁଛି, କିନ୍ତୁ କହିପାରୁନି ସାଆନ୍ତେ ! ବାପା କହୁଛନ୍ତି, ଆପଣ ଏମିତି କେତେ ଦିନ ନିଃସଙ୍ଗ ଜୀବନଯାପନ କରିବେ ? ବାପାଙ୍କ ଇଚ୍ଛା ଆପଣ ଯଦି ଆଉ ଥରେ ବିବାହ କରନ୍ତି, ତେବେ ଆମେ ସମସ୍ତେ ଅତ୍ୟଧିକ ଖୁସି ହୁଅନ୍ତୁ । ଆପଣଙ୍କର ଏହି ଯେଉଁ ସୁଖ୍ୟାତି ଚନ୍ଦ୍ରମଣ୍ଡଳରେ ଓ ଚନ୍ଦ୍ରଲୋକର ଅଧିବାସୀଙ୍କ ଜୀବନରକ୍ଷା ପାଇଁ ଆପଣଙ୍କର ଯେଉଁ ସ୍ୱାର୍ଥତ୍ୟାଗ, ସେଥିପାଇଁ ଆପଣଙ୍କ ଭଳି ବୀର ଦେଶହିତୈଷୀଙ୍କୁ ସ୍ୱାମୀରୂପେ ପାଇବା ପାଇଁ ବହୁ ସୁନ୍ଦରୀ ଚନ୍ଦ୍ରଲଳନା ଲାଳାୟିତ ।

—ଆରେ ଦୂର ପାଗଳି, ତୁ ପୁଣି ମୋ ବିବାହ କଥା କହୁଛୁ ? ତୁମ ଭଳି ପଣନାତି, ପଣନାତୁଣୀ ଥାଉଁ ଥାଉଁ ମୋର ଆଉ ସାଂସାରିକ ଜୀବନର କି ଆବଶ୍ୟକତା ? ତୁମମାନଙ୍କ ମେଳରେ ତୁମମାନଙ୍କ ସୁଖଦୁଃଖରେ ଭାଗୀ ହୋଇ ମୁଁ କଣ ମୋର ଆଉ କେତେଟା ବର୍ଷ କଟାଇ ଦେଇପାରିବିନି ? ପୁଣି ଆଉ ଗୋଟେ ସଂସାର ଗଢ଼ିବା କଣ ଦରକାର ?—ମୁଁ କହିଲି ।

—କିନ୍ତୁ ଆପଣ ତ ଜୀବନ ଆରମ୍ଭରୁ ଅଧିକ ଦୂର ଆଗେଇ ନାହାନ୍ତି । ଏଇ ଆପଣଙ୍କ ବୟସ ତ ମୋଟେ ବତିଶ ବର୍ଷ । ଆପଣଙ୍କ ବୟସର ବହୁ ଲୋକେ ତ ଆମ ଏଠି ସାଂସାରିକ ଜୀବନ ଆରମ୍ଭ କରିନାହାନ୍ତି । ଆପଣଙ୍କର ତ ଆହୁରି ଢେର୍ ଜୀବନକାଳ ପଡ଼ିରହିଛି । ଏତେ ଅଳ୍ପ ବୟସରୁ ଏମିତି ନିଃସଙ୍ଗ ଜୀବନଯାପନ କଲେ ଆପଣଙ୍କର ଜୀବନ ପ୍ରତି ଅଳ୍ପଦିନ ଭିତରେ ମମତା କମି ଆସିବ; ଫଳରେ ଚନ୍ଦ୍ରଲୋକର ଅଧିବାସୀମାନେ ଆପଣଙ୍କଠାରୁ ଯେଉଁ ସାହାଯ୍ୟ ପାଇବାକୁ ଆଶା କରି ବସିଛନ୍ତି, ଆପଣଙ୍କର ସଂସାର ପ୍ରତି ମମତା କମିଆସିଲେ ସେମାନଙ୍କର ଆଶା ଫଳବତୀ ହେବାରେ ନିଶ୍ଚୟ ବାଧା ପଡ଼ିଥିବ । ଆମ ସମସ୍ତଙ୍କ ଇଚ୍ଛା ଆପଣ ଆଉ ଥରେ ବିବାହ କରନ୍ତୁ ସାଆନ୍ତେ !

—ରିନାକୁ ହରାଇ ଜୀବନର ସବୁ ସୁଖ-ସୋହାଗ ହରାଇଛି ବ୍ରାଙ୍ଗରିନା ! ରିନା ସହିତ ଚାଲିଯାଇଛି ମୋ ଜୀବନର ସବୁ କିଛି । ରିନାର ସ୍ମୃତିକୁ ଚିରଦିନ ମନରେ ଧରି ଏ ଜୀବନଟାକୁ କଟାଇଦେବା ମୋ ଇଚ୍ଛା । ଆଉ ଏତେବେଳେ ପୁଣି ବିବାହ କଲେ ରିନାର ସ୍ମୃତିକୁ ପାଶୋରିଦେବା ହିଁ ସାର ହେବ ସିନା ! ଆଉ ଏ ଜୀବନରେ ଶାନ୍ତି ଆସିବ

କୁଆଡ଼ୁ ? ତୁମେମାନେ ମୋ ପାଇଁ ଆଉ ଏତେ ବ୍ୟସ୍ତ ହୁଅନ । ତୁମମାନଙ୍କ ମେଳରେ ମୁଁ ମୋ ଜୀବନ ବେଶ୍ କଟାଇ ଦେଇ ପାରିବ ।

× × ×

ଗୀତାଞ୍ଜଳି, ତା'ର ପିତା ଓ ଅନ୍ୟାନ୍ୟ ଆତ୍ମୀୟଙ୍କ ଅନୁରୋଧ ମୋତେ ଦ୍ୱିତୀୟ ଥର ପାଇଁ ବିବାହ କରିବାକୁ ବାଧ୍ୟ କଲା । ଗୀତାଞ୍ଜଳିର ଏକ ସର୍ଗିମାର ପାଣିଗ୍ରହଣ କରିବାକୁ ପଡ଼ିଲା ମୋତେ । ପୁଣି ଥରେ ସାଂସାରିକ ଜଞ୍ଜାଳ । ଯେଉଁ ଯୁବତୀ ନବବଧୂ ସାଜି ସେଦିନ ଘରକୁ ଆସିଲା, ତା'ର ନାଁ ଜୟଶ୍ରୀଙ୍କ । ଜୟଶ୍ରୀଙ୍କ ଉଚ୍ଚ ଶିକ୍ଷିତା, ବୟସ ଗୀତାଞ୍ଜଳିର ବୟସର ପାଖାପାଖି । ଜୀବନର ଦାୟିତ୍ୱ ବେଶ୍ ଭଲ ଭାବରେ ହୃଦୟଙ୍ଗମ କରିବାର ଶକ୍ତି ଅଛି ତାର ।

ଦିନ କେଇଟା ଭିତରେ ଜୟଶ୍ରୀଙ୍କର ଆଦର ମୋ ପ୍ରତି ଏତେ ବଢ଼ିଗଲା ଯେ ମୁଁ ଧୀରେ ଧୀରେ ରନାର ଅଭାବକୁ ଭୁଲିଯିବାକୁ ବସିଲି । ଦିନକୁ ଦିନ ମନେ ହେଲା ସତେ ଯେମିତି ଜୟଶ୍ରୀଙ୍କ ରନାର ପ୍ରତିମୂର୍ତ୍ତି ନେଇ ଆସିଛି ମୋ ନିକଟକୁ ରନାର ଅଭାବକୁ ମେଣ୍ଟାଇବା ପାଇଁ । ରନାର ଚାଲିଚଳନ, କଥାବାର୍ତ୍ତା, ଆଚାର-ବ୍ୟବହାର, ଆଦର ସୋହାଗ ସବୁ କିଛି ଜୟଶ୍ରୀଙ୍କ ନିଜର କରିନେଇଛି ଦିନ କେଇଟା ଭିତରେ । ମୁଁ ବେଳେ-ବେଳେ ଏସବୁ ଦେଖି ଆଶ୍ଚର୍ଯ୍ୟ ହୁଏ । ଜୟଶ୍ରୀଙ୍କ ଏସବୁ ଅନୁକରଣ କରିପାରୁଛି କେମିତି ? ସେ ତ କେବେ ରନାକୁ ଦେଖିନି । ଦେଖିବ ବା କେମିତି ? କାହିଁ ଦେଢ଼ଶହ ବର୍ଷତଳର କଥା । ଜୟଶ୍ରୀଙ୍କ କେବେ ଏମିତି ମନ ମୁତାବକ ହେବ, ଆଶା କରି ନ ଥିଲି । ଜୟଶ୍ରୀଙ୍କର ସ୍ନେହ-ସୋହାଗ ଏମିତି ମୋ ମୋ ମନ ମୁତାବକ ହେଲା, ମୁଁ ଧୀରେ ଧୀରେ ଦେଢ଼ଶହ ବର୍ଷତଳର ଅବସ୍ଥାକୁ ଫେରିଆସିଲି ଭଳି ଉପଲବ୍ଧି କଲି । ବେଳେବେଳେ ଭ୍ରମ ହେଉଥିଲା, ମୁଁ ଯେମିତି ରନାକୁ ବିବାହ କରିଛି; ଜୟଶ୍ରୀଙ୍କୁ ନୁହେଁ ।

ଦେଖ ଶ୍ରୀଙ୍କ—ଦିନେ ପଚାରିଲି—ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି, ତୁମେ କେମିତି ରନାର ସମସ୍ତ ଗୁଣ ଏ ଭିତରେ ହାସଲ କରିପାରିଛ ? ଆଜିକୁ ଦେଢ଼ଶହ ବର୍ଷତଳେ ରନା ଯେମିତି ମୋ ହୃଦୟକୁ ଅଧିକାର କରିପାରିଥିଲା, ତୁମେ ରନାର ସେ ସମସ୍ତ ଗୁଣ ଦେଖାଇ ମୋ ହୃଦୟ ଅଧିକାର କରିବାକୁ ବସିଛ । ମୋତେ ଜଣାପଡ଼ୁଛି ତୁମର ସ୍ନେହସୋହାଗ ଯୋଗୁ ମୁଁ ରନାର ଅଭାବକୁ ମୋଟେ ଅନୁଭବ କରିପାରୁନି । ତୁମର ଭିତରେ ମୁଁ ରନାର ସବୁ କିଛି ଦେଖିପାରୁଛି ।

—ସେଇ ମୋ ଯଥାଯୋଗ୍ୟ ପୁରସ୍କାର ଉତ୍କଳାବର୍ତ୍ତି ! ତୁମେ ଯେ ମୋ'ର ଭିତରେ ରନାଙ୍କର ସମସ୍ତ ଗୁଣ ଦେଖିପାରିଛ, ଏହାଠାରୁ ବଳି ଆଉ ସୌଭାଗ୍ୟର କଥା କଣ ହୋଇପାରେ ? ମୋ ଜୀବନ ସାର୍ଥକ ହୋଇଛି । ମୋଠାରୁ ଅଧିକ ସୁଖୀ ଆଜି ଚନ୍ଦ୍ରମଣ୍ଡଳରେ କେହି ନାହିଁ । —କହୁଁ କହୁଁ ଜୟଶ୍ରୀଙ୍କ ଲେଟିପଡ଼ିଲା ମୋ କୋଳରେ । ଅନୁଭବ କଲି ରନା ଯେମିତି ଅଭ ଝୁପି ହୋଇଗଲେ ମୋ କୋଳରେ

ଲୋଟିପଡ଼େ, ଜୟଶ୍ରୀଙ୍କ ଠିକ୍ ସେହିଭଳି । ବିଦ୍ୟୁତ୍ ଚମକର ଏକ ଶିହରଣ ଖେଳିଗଲା ମୋର ସାରା ଶରୀରରେ । ଧୀରେ ଧୀରେ ଜୟଶ୍ରୀଙ୍କର ଅଧର ସହିତ ମିଳନ ପାଇଁ ଆଗେଇ ଆସିଲା ମୋ ଉନ୍ମୁଖ ଅଧର । କ୍ଷଣକ ପାଇଁ ଆମେ ଦୁହେଁ ଭୁଲିଗଲୁ ପରସ୍ପରକୁ । ଅନୁଭବ କଲି ସତେ ଯେମିତି ଦେଢ଼ଶହ ବର୍ଷତଳର ମୋର ମାନସୀ ରନାକୁ ମୁଁ ଚୁମ୍ବନ ଦେଇ ମୋର ବକ୍ଷ ସହିତ ଜଡ଼ିତ କରି ରଖିଛି ।

× × ×

ଦିନକୁ ଦିନ ଚନ୍ଦ୍ରଲୋକରେ ଜଳ ଓ ବାୟୁର ଅଭାବ ଉତ୍କଟ ହେବାକୁ ଲାଗିଲା । ଚନ୍ଦ୍ରଲୋକର ପ୍ରତ୍ୟେକ ଅଧିବାସୀଙ୍କ ଚିନ୍ତା—ଚନ୍ଦ୍ରକୁ ଏହି ଆଶୁ ବିପଦରୁ କେମିତି ରକ୍ଷା କରି ପାରିବେ । ଏ ଦୁଇଟିର ଯୋଗାଣ ନ ହେଲେ ଚନ୍ଦ୍ରପୃଷ୍ଠରୁ ଜନସମାଜ ଲୋପ ପାଇଯିବା କଥା । ବୈଜ୍ଞାନିକମାନଙ୍କର ଘନ ଘନ ସମ୍ମିଳନୀ ବସୁଥାଏ; କିନ୍ତୁ ଗୋଟାଏ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚି ହେଉ ନ ଥାଏ । ଗୋଟିଏ ଗ୍ରହ ଛଡ଼ା ଅନ୍ୟ ଗ୍ରହ ଉପରେ ଆସ୍ଥା ନ ଥାଏ ବୈଜ୍ଞାନିକମାନଙ୍କର । କେ-ଏମ୍-ବି-୧୧ ଗ୍ରହ ଉପରେ ବୈଜ୍ଞାନିକମାନଙ୍କର ଏକମାତ୍ର ଆଶା । ସେମାନଙ୍କର ଶେଷ ଭରସାର ସ୍ଥଳ ହେଉଛି ଏହି ଗ୍ରହଟି । ଏହି ଗ୍ରହ ଅଭିମୁଖେ ଅଭିଯାନ ଚଳାଇ କାମଗ୍ରିନ୍ ଓ ତାଙ୍କ ଦଳ ବିଶ୍ୱପୃଷ୍ଠରୁ ଲୋପ ପାଇଯାଇଥିଲେ ସୁଦ୍ଧା ଏହି ଗ୍ରହଟି ଛଡ଼ା ଆଉ ସ୍ଥାନ ନାହିଁ ବିଶ୍ୱପୃଷ୍ଠରେ, ଯାହା କି ବସତି ଯୋଗାଇ ପାରିବ ଚନ୍ଦ୍ର ଅଧିବାସୀଙ୍କୁ ।

ବୈଜ୍ଞାନିକ ତଥା ମହାକାଶଗୃଶ୍ମୀମାନଙ୍କର ଶେଷ ସମ୍ମିଳନୀରେ ପ୍ରସ୍ତାବ ଆସିଲା ଯେ କେ-ଏମ୍-ବି-୧୧ ଗ୍ରହ ଛଡ଼ା ଅନ୍ୟ ଗ୍ରହ ଚନ୍ଦ୍ର-ଅଧିବାସୀଙ୍କ ପାଇଁ ଭରସାର ସ୍ଥଳ ନୁହେଁ । ଏହି ଗ୍ରହ ଅଭିମୁଖେ ଅଭିଯାନ ଚଳାଇ ସେଠାକାର ତଥ୍ୟ ଚନ୍ଦ୍ରଲୋକ ଅଧିବାସୀଙ୍କ ପାଖକୁ ନେଇ ଆସିବାକୁ ପଡ଼ିବ । କିନ୍ତୁ ସେଇ ଗ୍ରହକୁ ଯିବା କଥା ଚିନ୍ତା କଲାବେଳକୁ ବଡ଼ ବଡ଼ ମହାଶୂନ୍ୟଗୃଶ୍ମୀ ଶଙ୍କିତ ହୋଇ ପଡ଼ୁଥାନ୍ତି । ଏହାର ପଥ ପ୍ରତିବନ୍ଧ ବଳୟ ଓ ଅନ୍ୟାନ୍ୟ ପ୍ରତିବନ୍ଧ ଗ୍ରହ-ଉପଗ୍ରହ ଯୋଗୁଁ ଅତ୍ୟଧିକ ବିପଦସଂକୁଳ । ତେଣୁ ଏହି ବିପଦସଙ୍କୁଳ ଗ୍ରହକୁ ଯାଇ ଫେରିଆସିବାର ସାହସ କାହାରି ନଥାଏ । ଚନ୍ଦ୍ରଲୋକର ମହାକାଶଗୃଶ୍ମୀମାନଙ୍କୁ ଚୁପ୍ ରହିବା ଦେଖି ପରିଶେଷରେ ଠିଆହୋଇ ମୁଁ କହିଲି—କେ-ଏମ୍-ବି ୧୧ ଗ୍ରହ ଯେହେତୁ ଚନ୍ଦ୍ର ଅଧିବାସୀମାନଙ୍କର ଏକମାତ୍ର ଭରସାର ସ୍ଥଳ, ଏହି ଗ୍ରହକୁ ଅଭିଯାନ ଆରମ୍ଭ କରିବା ଛଡ଼ା ଆମର ଅନ୍ୟ ଉପାୟ ନାହିଁ । ଆମ ଚନ୍ଦ୍ର ଲୋକର ଶ୍ରେଷ୍ଠ ମହାକାଶଗୃଶ୍ମୀ ରମ୍‌ଦେବ ଶଯ୍ୟାଶାୟୀ ଥିବାରୁ ମୁଁ ଏହି ମହାକାଶ ଅଭିଯାନର ଦାୟିତ୍ୱ ନେବାକୁ ପ୍ରସ୍ତୁତ । ମୋର ଆଶା ଆଉ କେହି ମହାକାଶଗୃଶ୍ମୀ ଯଦି ମୋ ସହିତ ଏ ଅଭିଯାନ ପାଇଁ ବାହାରନ୍ତି, ତେବେ ମୁଁ ଏ ଦଳର ପୂରାପୂରି ଦାୟିତ୍ୱ ନେବାକୁ ପ୍ରସ୍ତୁତ । ମହାଶୂନ୍ୟର ଏହି ସ୍ଥାନ ଯେତେ ବିପଦସଂକୁଳ ହେଲେ ବି ମୁଁ ସେହି ଗ୍ରହରେ ପହଞ୍ଚି ସେଠାକାର ଖବର ସଂଗ୍ରହ କରି ଖୁବ୍ ଦକ୍ଷତାର ସହିତ ଫେରିଆସିପାରିବି । ମୁଁ ଜାଣେନି, ଆପଣଙ୍କର ମୋ ଉପରେ

ଯଥେଷ୍ଟ ବିଶ୍ୱାସ ଅଛି କି ନାହିଁ ? ଆପଣମାନଙ୍କର ଯଦି ମୋ ଉପରେ ଆସ୍ଥା ଅଛି, ତେବେ ଏହି ଅଭିଯାନର ଦାୟିତ୍ୱ ମୋତେ ଦିଅନ୍ତୁ; ମୁଁ ବହନ କରିବାକୁ ପ୍ରସ୍ତୁତ ଅଛି ।

ମୋର ଏହି ବକ୍ତବ୍ୟରେ ସଭାକକ୍ଷରେ ଘନ ଘନ କରତାଳି ଉଠିଲା । ସମସ୍ତେ ଏକ ସ୍ୱରରେ ଅନୁମୋଦନ କଲେ ଆସନ୍ନା ଅଭିଯାନରେ ମୋର ଅଧିନାୟକତ୍ୱ । ସଙ୍ଗେ ସଙ୍ଗେ ମୋ ଦେଖାଦେଖି ଚାରି ପାଞ୍ଚ ଜଣ ମହାକାଶଗବେଷୀ ବାହାରିପଡ଼ିଲେ ମୋର ସହଯାତ୍ରୀ ହେବାପାଇଁ । କେ-ଜେଡ୍-ସି-୯ ଗ୍ରହରୁ ଖୁବ୍ ଦକ୍ଷତାର ସହିତ ଆମ ଦଳ ପ୍ରତ୍ୟାବର୍ତ୍ତନ କରି ଆସିଥିବାରୁ ମୋ ଉପରେ ସମସ୍ତଙ୍କର ଆସ୍ଥା ବଢ଼ିଯାଇଥାଏ । ଚନ୍ଦ୍ରଠାରୁ ବହୁ ଦୂରରେ ଥିବା ଏହି ଗ୍ରହ ଅଭିଯାନ ପାଇଁ ଯୋଜନା କରିବାକୁ ନିର୍ଦ୍ଦେଶ ଚାଲିଗଲା । ଯୋଜନା ମଞ୍ଜୁର ହୋଇଗଲେ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ବେଶି ଦିନ ଲାଗିବ ନାହିଁ ।

କେ-ଏମ୍-ବି-୧୧ ଗ୍ରହାଭିମୁଖେ ଯାଉଥିବା ଅଭିଯାନରେ ମୋ ନେତୃତ୍ୱ ସାରା ଚନ୍ଦ୍ରଲୋକରେ ବିଜୁଳି ଭଳି ଖେଳିଗଲା । ଚାଙ୍ଗରନା ଓ ତା ପିତାଙ୍କ ଆନନ୍ଦ କହିଲେ ନସରେ । ମୋର ଏହି ଅଭିଯାନରେ ନେତୃତ୍ୱ ସେମାନଙ୍କ ଗୌରବକୁ ଶତଗୁଣିତ କରିଥାଏ । ମୋତେ ଅଭିନନ୍ଦନ ଜଣାଇବାପାଇଁ ଚନ୍ଦ୍ରଲୋକର ବହୁ ଅଞ୍ଚଳରୁ ଯୁବକଯୁବତୀ ଆସୁଥାନ୍ତି । ସେମାନଙ୍କ ସହିତ କଥାବାର୍ତ୍ତା କରି ହସଖୁସିରେ ଚାଙ୍ଗରନା ଓ ତା' ବାପାଙ୍କର ଦିନ କଟିଯାଉଥାଏ । ସମସ୍ତଙ୍କର ଆଶା, ମୋର ଏହି ଅଭିଯାନ ଖୁବ୍ ଅଶାଜନକ ଭାବରେ କୃତକାର୍ଯ୍ୟ ହେବ ଓ ଚନ୍ଦ୍ରଲୋକର ଅଧିବାସୀମାନେ ସେହି ଗ୍ରହକୁ ଯାଇପାରିଲେ ସେମାନଙ୍କ ଜୀବନରକ୍ଷା ହୋଇପାରିବ ।

ଚନ୍ଦ୍ରର ଚାରିଆଡ଼େ ଆନନ୍ଦର ଢେଉ ଖେଳୁଥିଲାବେଳେ ଜୟଶ୍ରୀଙ୍କ ମନରେ ସୁଖ ନାହିଁ । ସେ ଏହି ଘୋଷଣା ପ୍ରକାଶ ପାଇବା ଦିନଠାରୁ ଦିନରାତି ସବୁବେଳେ ଚିନ୍ତିତା; କିନ୍ତୁ ନିଜର ଏହି ବିଷଣ୍ଣତାକୁ ବାହାରେ ପ୍ରକାଶ ନ କରିବାପାଇଁ ଜୟଶ୍ରୀଙ୍କ ଭାରି ଯତ୍ନଶୀଳା । ମୁଁ ଘରକୁ ଆସିଲେ ସେ କେବେ ମୋତେ ନିଜ ବିଷଣ୍ଣତାର ଭାବ ଦେଖାନ୍ତି ନାହିଁ । ମୋ ଆଗରେ ବେଶ୍ ହସ ଖୁସି, ସତେ ଯେମିତି ମୋ ଅଭିଯାନ ପାଇଁ ସେ ସବୁ ବନ୍ଦୋବସ୍ତ କରିବାକୁ ତିଆରି । ମୁଁ ଯେତେଥର ମୋର ଆଗାମୀ ଅଭିଯାନ କଥା କହିଛି, ମୋତେ ଉତ୍ସାହିତ କରିବାପାଇଁ ସେ କେତେ ପ୍ରକାର କଥା କହନ୍ତି । ମୁଁ ଏହି ଆଶୁ ବିଚ୍ଛେଦ କଥା କହିଲେ, ସେ ହସି ହସି କହନ୍ତି—ଗୋଟାଏ ସାମାନ୍ୟ ସ୍ତ୍ରୀ'ର ମମତା ବେଶି ନା କୋଡ଼ିଏ କୋଟି ଚନ୍ଦ୍ରାଧିବାସୀଙ୍କ ଜୀବନର ମମତା ବେଶି ? ଏତେ ଲୋକଙ୍କ ଜୀବନରକ୍ଷା ପାଇଁ ମୁଁ କଣ ମୋ ଜୀବନରେ ଏତିକି ସ୍ୱାର୍ଥ ତ୍ୟାଗ କରି ପାରିବିନି ? ଜୟଶ୍ରୀଙ୍କ ଏତେ କଥା ଏତେ ଆଶ୍ୱାସନା ସତ୍ତ୍ୱେ ମୁଁ ଅନୁଭବ କରେ ଏସବୁ ତାଙ୍କର ପ୍ରକୃତ ମନକଥା ନୁହେଁ । ଉପରେ ଉପରେ ସେ ଏହି ଅଭିଯାନ ପାଇଁ ବେଶ୍ ପ୍ରଫୁଲ୍ଲ ଥିବାର ଅଭିନୟ କରୁଥିଲେ ହେଁ ମନ ଭିତରେ ବିଷଣ୍ଣତାର ଦହନରେ ଦଗ୍ଧ ହେଉଥିଲାଭଳି ଜଣାପଡ଼ୁଥାନ୍ତି ।

× × ×

ତୁମେ ତ ନିଶ୍ଚୟ ଖୁସି ଥିବ ଶାଙ୍କ—କହୁଁ କହୁଁ ଜୟନ୍ତଶାଙ୍କଙ୍କ ଶୋଇବା କୋଠରି ଭିତରକୁ ପଶିଆସିଲା ସ୍ୱାଙ୍ଗରନା । ସେତେବେଳେ ଜୟନ୍ତଶାଙ୍କ ନିଜ ବିଛଣାଉପରେ ଶୋଇରହି ପଢ଼ିଚାଲିଥାନ୍ତି ଗୋଟିଏ ବୈଜ୍ଞାନିକ ଉପନ୍ୟାସ, ଯେଉଁ ଉପନ୍ୟାସରେ ରୂପାୟିତ ହୋଇଥାଏ ଦେଢ଼ଶହ ବର୍ଷ ତଳର କାମରାନ୍‌ଙ୍କ କେ-ଏମ୍-ବି-୧୧ ଅଭିମୁଖେ ଅଭିଯାନର ଦୁର୍ଘଟଣା ।

ସ୍ୱାଙ୍ଗରନାଙ୍କୁ ପଶିଆସିବା ଦେଖି ଜୟନ୍ତଶାଙ୍କ ଉଠିପଡ଼ି କହିଲେ—ହଁ ସ୍ୱାଙ୍ଗ, ଖୁସି ହେବ କାହିଁ ତ ଆଉ କଣ ? ଉଜ୍ଜ୍ୱଳାବର୍ତ୍ତିଙ୍କ ଅଭିଯାନ ଖାଲି ମୋର ଗୌରବ ନୁହେଁ; ଏହା ତୁମର ଗୌରବ, ତୁମ ବଂଶର ଗୌରବ, ସାରା ଚନ୍ଦ୍ରଲୋକର ଗୌରବ ।

ସ୍ୱାଙ୍ଗରନା ପଶିଆସି ଜୟନ୍ତଶାଙ୍କଙ୍କ ଖଟ ଉପରେ ବସିପଡ଼ିଲା । ତାଙ୍କ ହାତରୁ ବହିଟି ନେଇ ଦେଖି କହିଲା—ସେଥିପାଇଁ କଣ ତୁମେ ଏହି ଉପନ୍ୟାସଟା ପଢ଼ୁଛ ଶାଙ୍କ ? ମୁଁ ଏହି ଉପନ୍ୟାସଟା ପଢ଼ିଛି, ଥରେ ନୁହେଁ, ଦୁଥର ନୁହେଁ, ବହୁଥର । ମୋ ମତରେ ବୈଜ୍ଞାନିକ ଉପନ୍ୟାସ କ୍ଷେତ୍ରରେ ଏ ଉପନ୍ୟାସଟି ଏକ ସାର୍ଥକ ସୃଷ୍ଟି । କାମରାନ୍‌ଙ୍କ ଭ୍ରମଣ କାହାଣୀଟି ଅବିକଳଭାବରେ ବର୍ଣ୍ଣିତ ହୋଇଛି ଏ ଉପନ୍ୟାସରେ । ମହାଶୂନ୍ୟର ସେହି ସୁନ୍ଦରୀ ତରୁଣୀ··· ଚୁପ୍ ହୋଇଗଲା ସ୍ୱାଙ୍ଗରନା । କିଛି ସମୟ ପରେ ପୁଣି ଆରମ୍ଭ କଲା —ସେହି ସୁନ୍ଦରୀ ତରୁଣୀ କଥା ପଢ଼ିଲିଣି ନା ଶାଙ୍କ ? ମୋତେ କାହିଁ ସତ ବୋଲି ଜଣାପଡ଼େନି ସେକଥା । ଏହା ବୋଧହୁଏ ଉପନ୍ୟାସ-ରଚୟିତାଙ୍କର ଏକ ସୁନେଲି କଳ୍ପନା ।

—କେଉଁଟା ଉପନ୍ୟାସ-ରଚୟିତାଙ୍କ ସୁନେଲି କଳ୍ପନା ସ୍ୱାଙ୍ଗରନା ? କହୁଁ କହୁଁ ମୁଁ କୋଠରି ଭିତରକୁ ପଶିଆସିଲି—କେଉଁ ଉପନ୍ୟାସ ଉପରେ ତୁମ ଦୁହିଁଙ୍କର ଆଲୋଚନା ଚାଲିଛି ଶୁଣେ ?

'ଅଭିଜିତ୍‌ରୁ—ଅ' ଉପନ୍ୟାସଟି—ଉତ୍ତର ଦେଲା ସ୍ୱାଙ୍ଗରନା ।

—ହଁ ହଁ, ଅଳ୍ପଦିନ ତଳେ ମୁଁ ମଧ୍ୟ ପଢ଼ୁଥିଲି ସେଇ ଉପନ୍ୟାସଟି । ଅତି ଚମତ୍କାର ଲେଖା ସତେ !

'ଅ' ର ଅର୍ଥ କଣ କହିଲ—ପଚାରିଲି ।

'ଅନନ୍ୟା ସୁନ୍ଦରୀ'—ସ୍ୱାଙ୍ଗରନା ଉତ୍ତର ଦେଲା ।

—ହଁ, ଠିକ୍ ମହାଶୂନ୍ୟର ସେଇ ଅନନ୍ୟସୁନ୍ଦରୀ ରମଣୀଙ୍କୁ ଉପନ୍ୟାସ-ରଚୟିତା 'ଅ' ଆଖ୍ୟା ଦେଇଛନ୍ତି । ତୁମେ ଜାଣ, ଅଭିଜିତ୍ ନକ୍ଷତ୍ରର ଶତାଧିକ ଗ୍ରହ ଭିତରୁ ଏକ ଅତି ଶ୍ରେଷ୍ଠ ଗ୍ରହ ପ୍ରତିବସ୍ତୁରୁ ତିଆରି । ମହାଶୂନ୍ୟର ସେଇ ସୁନ୍ଦରୀ ଯୁବତୀ, ଯାହାକୁ ଦେଖି କାମରାନ୍ ପାଗଳ ହୋଇ ଉଠିଥିଲେ, ସେ ହେଉଛନ୍ତି ସେହି ଗ୍ରହର ଅଧିବାସିନୀ । ସେଥିପାଇଁ ଉପନ୍ୟାସ-ରଚୟିତା ଉପନ୍ୟାସର ନାଁ ଦେଇଛନ୍ତି 'ଅଭିଜିତ୍‌ରୁ—ଅ' ।

—ବାସ୍ତବିକ ଉପନ୍ୟାସଟି ଅତି ଚମତ୍କାର ଲେଖା, ଯାହା କହନ୍ତି ଏକ ସାର୍ଥକ ସୃଷ୍ଟି ।

—କିନ୍ତୁ ମୋତେ ସେଇ ସୁନ୍ଦରୀ ଯୁବତୀଟିର ବର୍ଣ୍ଣନା କାଳ୍ପନିକ ବୋଲି ଜଣାପଡ଼େ ସାଆନ୍ତେ ! ପ୍ରକୃତରେ କାମର୍ନ୍ ଯେ ଏମିତି ଏକ ମହାକାଶଗ୍ରହିଣୀଙ୍କୁ ଭେଟିଥିଲେ, ମୋର ସେଥିରେ ଯଥେଷ୍ଟ ସନ୍ଦେହ ଅଛି । କାମର୍ନ୍ ନିଜର କୌଣସି ଏକ ଭୁଲପାଇଁ ମହାଶୂନ୍ୟରେ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ, ଯାହାକୁ ଉପନ୍ୟାସ-ରଚୟିତା ସେଇ ପ୍ରତିବସ୍ତୁଜଗତ୍ତ୍ୱର ନାରୀ ଯୋଗୁଁ କାମର୍ନଙ୍କ ଅଭିଯାନ ଧ୍ୱଂସ ପାଇଗଲା ବୋଲି ବର୍ଣ୍ଣନା କରିଛନ୍ତି । ସେହି କଳ୍ପନାକୁ ସେ ଯଦି ତାଙ୍କ ଉପନ୍ୟାସରେ ପୂରାଇ ନଥାନ୍ତେ, ତେବେ ଉପନ୍ୟାସଟି କଣ ଏତେ ହୃଦୟଗ୍ରାହୀ ହୋଇଥାନ୍ତା ?

—ତୁମେ କହୁଛ, ମହାଶୂନ୍ୟର ସେଇ ସୁନ୍ଦରୀ ଯୁବତୀଟି ଏକ କାଳ୍ପନିକ ଚରିତ୍ର ? କାମର୍ନଙ୍କ ଅଭିଯାନର ଧ୍ୱଂସ ପାଇଁ ସେଇ ଯୁବତୀଟି ଦାୟୀ ନୁହେଁ ?

—ମୋତେ ତ ମୋଟେ ବିଶ୍ୱାସ ଆସୁନି ସାଆନ୍ତେ !

—ତେବେ ଏତେ ବଡ଼ ଅଭିଯାନଟାଏ ଧ୍ୱଂସ ପାଇଲା କେମିତି ?

—କାମର୍ନଙ୍କ ଯୋଗୁଁ । ସେ ନିଜ ଦୋଷ-ତ୍ରୁଟି ଯୋଗୁଁ ଆଉ କାହା ସହିତ ବାଧା ପାଇ ଧ୍ୱଂସ ପାଇଗଲେ । ଉପନ୍ୟାସ-ରଚୟିତା ସେଇ ସୁନ୍ଦରୀ ଯୁବତୀଟି ମୁଣ୍ଡରେ ସବୁ ଦୋଷ ଲଦିଦେଲେ ।

—ତୁମେ ଜାଣିଛ ରାଙ୍ଗ, ସେ ଯୁଗରେ ଚନ୍ଦ୍ରର ଶ୍ରେଷ୍ଠ ମହାକାଶଗ୍ରହୀ ଥିଲେ କାମର୍ନ୍ । ତାଙ୍କର ମହାକାଶଯାନଚାଳନାରେ ଦୋଷ-ତ୍ରୁଟି ଘଟିବା ସମ୍ଭବ ନୁହେଁ ।

—କାମର୍ନ୍ ସେତେବେଳେ ଚନ୍ଦ୍ରଲୋକର ଶ୍ରେଷ୍ଠ ମହାକାଶଗ୍ରହୀ ଥିଲେ, ଏହା ମୁଁ ଅସ୍ୱୀକାର କରୁନି । କିନ୍ତୁ ଆପଣ ଏହା ଅସ୍ୱୀକାର କରିବେନି ସାଆନ୍ତେ ! କାମର୍ନ୍ ଯେଉଁ ମହାଶୂନ୍ୟଯାନ ସାହାଯ୍ୟରେ ଅଭିଯାନରେ ଯାଇଥିଲେ ତାହା ହେଉଛି ସେତେବେଳେ ଚନ୍ଦ୍ରଲୋକରେ ପୁରାପୁରି ନୂଆ । ଆଲୋକବେଗର ପାଖାପାଖି ବେଗରେ ଯାଉଥିବା ମହାକାଶଯାନଚାଳନାରେ କାମର୍ନଙ୍କ ଦକ୍ଷତା ବିଶେଷ ନଥିଲା, ଆପଣ ତ ଅସ୍ୱୀକାର କରିବେନି; କାରଣ ଏହା ସେତେବେଳେ ଥିଲା ପୁରାପୁରି ନୂଆ । ତେଣୁ ଯେତେ ବଡ଼ ଦକ୍ଷ ମହାକାଶଗ୍ରହୀ ହେଲେ ବି ନୂଆ ପ୍ରକାରର ଏକ ଯାନ, ପୁଣି ଯାହାର ବେଗ ଆଲୋକ-ବେଗର ପାଖାପାଖି, ସେଇ ଯାନରେ ଗଲାବେଳେ ଦୁର୍ଘଟଣା ଘଟିବା କିଛି ବିଚିତ୍ର ନୁହେଁ ।

—କିନ୍ତୁ ରାଙ୍ଗଲିନା, ଦେଢ଼ଶହ ବର୍ଷତଳର କଥା ତୁମେ ଜାଣିଲ କେମିତି ? ତୁମେ ଏହି ଉପନ୍ୟାସର ସମାଲୋଚନା ପୁସ୍ତିକ ପଢ଼ିଛ ବୋଧହୁଏ, ଯେଉଁଥିରେ ଲେଖକଙ୍କର କଳ୍ପନାରେ ସବୁ ପ୍ରକାର ଦୋଷ-ତ୍ରୁଟି ଦେଖାଇଦିଆଯାଇଛି ।

ହସିଲା ରାଙ୍ଗଲିନା—ସେ ଯୁକ୍ତି ମୋର ହେଉ ବା ନହେଉ, ଆପଣ କହୁନାହାନ୍ତି, ଏହି ଯୁକ୍ତି କଣ ଭୁଲ ?

—ଯୁକ୍ତି ଯେ ସତ୍ୟ, ମୁଁ ଏହା ମୋଟେ ଗ୍ରହଣ କରି ନ ପାରେ । ସମାଲୋଚକଙ୍କ ମତକୁ ଯଦି ସାରା ଚନ୍ଦ୍ରଲୋକର ଅଧିବାସୀ ଗ୍ରହଣ କରନ୍ତି, ତେବେ ମଧ୍ୟ ମୁଁ ଏହାକୁ ଗ୍ରହଣ

କରିବାକୁ ପ୍ରସ୍ତୁତ ନୁହେଁ । କାହିଁକି ନା; ଏ ଯେଉଁ ସମୟର ଘଟଣା, ସେ ସମୟର ଲୋକ ମୁଁ । ସମାଲୋଚକ ଉପନ୍ୟାସ-ରଚୟିତାଙ୍କ କଳ୍ପନାକୁ କ୍ଷୁର୍ଣ୍ଣ କରିବାପାଇଁ ଏମିତି ଏକ ପ୍ରମାଦଯୁକ୍ତ ଯୁକ୍ତି ବାଢ଼ିପାରନ୍ତି; କିନ୍ତୁ ଏହା ଯେ ପ୍ରକୃତ ସତ୍ୟଠାରୁ ବହୁ ଦୂର, ମୁଁ ଅସ୍ୱୀକାର କରିବିନି । କାମଗ୍ରନ୍‌ଙ୍କ ମହାଶୂନ୍ୟ ଦୁର୍ଘଟଣା ଆଜି ଢେର୍ ପୁରୁଣା ହୋଇ ଯାଇ-ଥିବାରୁ ଏହା ଭିତରେ ନାନାପ୍ରକାର କଳ୍ପନା-ଜଳ୍ପନା ପଶିଯାଇ ଏହାର ବାସ୍ତବ ଅଂଶତକ ନଷ୍ଟ କରିପକାଇଛି । କିନ୍ତୁ ମୁଁ ଯେତେବେଳେ ସେଇ ସମୟର ଲୋକ, ତେଣୁ ଘଟଣାର ସତ୍ୟତା ମୋଠାରେ ବିକୃତ ହେବାର ସମ୍ଭାବନା ନାହିଁ ।

ମୋତେ ସନ୍ଦିଗ୍ଧ ନୟନରେ ଅନାଇ ରହିଲେ ଗ୍ରାଙ୍ଗରିନା ଓ ଜୟଶ୍ରୀଙ୍କ, ମୁଁ କ'ଣ କହିବି ଶୁଣିବାପାଇଁ ।

—କାମଗ୍ରନ୍‌ଙ୍କ ଧ୍ୱଂସପାଇଁ ଦାୟୀ ସେ ନିଜେ, ଏହା କେହି ଅସ୍ୱୀକାର କରିବେ ନାହିଁ । କାମଗ୍ରନ୍ ହେଲେ ନିଜ ଦୁର୍ବଳତାର ଶିକାର । କିନ୍ତୁ ତାଙ୍କ ମନରେ ଦୁର୍ବଳତା ସୃଷ୍ଟିକଲା କିଏ ଜାଣ ? ମହାଶୂନ୍ୟର ସେଇ ସୁନ୍ଦରୀ ଯୁବତୀଟି; ଯାହାକୁ ଦେଖି କାମଗ୍ରନ୍ ହୋଇଉଠିଥିଲେ ପାଗଳ । ପାଗଳାମି ଯୋଗୁଁ ସେ ଆଲିଙ୍ଗନ କରିବାକୁ ଚାହିଁଲେ ସେଇ ସୁନ୍ଦରୀ ରମଣୀଟିକୁ । ପ୍ରତିବସ୍ତୁଜଗତ୍‌ର କିଶୋରୀ ସେ । ଯେଉଁ ମୁହୂର୍ତ୍ତରେ ସେ ତାକୁ ସ୍ପର୍ଶ କରନ୍ତି, ସେହି ମୁହୂର୍ତ୍ତରେ ସେ ଦୁହେଁ ଓ ସେମାନଙ୍କ ଯାନ ବିସ୍ଫୋରିତ ହୋଇ ଶକ୍ତିରୂପେ ଲୀନହୋଇଗଲେ ମହାଶୂନ୍ୟ ଭିତରେ ।

ଗ୍ରାଙ୍ଗରିନା ମୋତେ ସନ୍ଦିଗ୍ଧ ଚକ୍ଷୁରେ ଅନାଇ ରହିଲା । ମନେହେଲା, ମୋର ଏହି ବର୍ଣ୍ଣନା ଯେମିତି ତାକୁ ବିଶ୍ୱାସଯୋଗ୍ୟ ମନେହେଉନାହିଁ ।

ପୁଣି କହିଚାଲିଲି—ତୁମେମାନେ କେବେ ମହାଶୂନ୍ୟ ଅଭିଯାନରେ ଯାଇନାହଁ; ତେଣୁ ଧାରଣା କରିପାରୁନାହଁ ମହାଶୂନ୍ୟରେ କ'ଣ ଅଛି, କ'ଣ ନାହିଁ । ଆମର ଏଇ ବିଶ୍ୱରେ ଥିବା ଅସଂଖ୍ୟ ଗ୍ରହ-ଉପଗ୍ରହ ଭିତରେ ଏମିତି ପ୍ରତିବସ୍ତୁଜଗତ୍ ଥିବା କଥା କାହିଁକି ଧାରଣା କରିପାରୁନାହଁ, ମୁଁ ବୁଝିପାରୁନି । ଆମ ଦେଶର ଶ୍ରେଷ୍ଠତମ ତାତ୍ତ୍ୱିକ ପଦାର୍ଥବିଦ୍ୟାବିତ୍ ଗ୍ରେଗରନ୍ ତାଙ୍କ ଗଣନାରୁ ତାହା ପ୍ରମାଣ କରିଛନ୍ତି । ଆମ ବିଶ୍ୱର ପ୍ରତି ଏକକୋଟି ଗ୍ରହ ଭିତରୁ ଅନ୍ତତଃ ଗୋଟିଏ ଗ୍ରହ ପ୍ରତିବସ୍ତୁରୁ ତିଆରି ହୋଇଥିବା ସମ୍ଭବ । ତା ଯଦି ହୁଏ, ତେବେ ଆମ ବିଶ୍ୱରେ ପ୍ରତିବସ୍ତୁରୁ ତିଆରି ଗ୍ରହ ଥିବାର ଯଥେଷ୍ଟ ସମ୍ଭାବନା । ସେହି ଗ୍ରହରେ ଯଦି ମନୀଷ-ସମାଜ ସୃଷ୍ଟିପାଇଁ ସବୁ ସୁବିଧା ଥିବ, ତେବେ ସେହି ପ୍ରତିଗ୍ରହରେ ଗୁଡ଼ିଏ ପ୍ରତିପ୍ରାଣୀ ଏପରି କି ପ୍ରତିମନୁଷ୍ୟ ଥିବାରେ ସନ୍ଦେହ କଅଣ ? ସେମାନେ ଯଦି ଆମଭଳି ମହାଶୂନ୍ୟ ଅଭିଯାନରେ ଆସିଥାଇପାରନ୍ତି ତେବେ ସେମାନଙ୍କୁ ଆମ ମହାଶୂନ୍ୟଚାରୀ କାମଗ୍ରନ୍ ଭେଟିବାରେ ଅବାସ୍ତବତା ରହିଲା କେଉଁଠି ?

—ତୁମେ ଜାଣିଛ ଗ୍ରାଙ୍ଗ, ଆମର ଗତ ଅଭିଯାନବେଳେ ଆମେ ମଧ୍ୟ ଏମିତି ଏକ ଯୁବତୀକୁ ମହାଶୂନ୍ୟରେ ଭେଟିଥିଲୁ । ସେ ବି ଥିଲା ସେହିଭଳି ପ୍ରତିବସ୍ତୁଜଗତର ନାରୀ ।

ସେ ବି ସେମିତି ସୌନ୍ଦର୍ଯ୍ୟର ଅପରୂପ ଭଣ୍ଡାର ନେଇ ଆମ ଆଗରେ ଉଭାହୋଇଥିଲା । କାମରାଜଙ୍କ ଅଭିଜ୍ଞତା ଆମକୁ ରକ୍ଷାକରିଦେଲା ରାଙ୍ଗ; ନଚେତ୍ ଆମ ଦଳର ଦଳପତି ରମ୍‌ଦେବ ଯଦି କାମରାଜଙ୍କ ପଥର ପଥିକ ହୋଇଥାନ୍ତେ, ତେବେ ଆମେ ସମସ୍ତେ କେଉଁ ଦିନରୁ ମହାଶୂନ୍ୟରେ ବିସ୍ଫୋରିତ ହୋଇଯାଇଥାନ୍ତୁ, ତୁମ୍ଭେମାନେ ଆଜି ମୋତେ ଏଠି, ଏମିତିଭାବରେ ଦେଖିବାକୁ ପାଇ ନଥାନ୍ତ । କାମରାଜଙ୍କ ଇତିହାସପ୍ରସିଦ୍ଧ ମହାକାଶ ଦୁର୍ଘଟଣାଭଳି ଆଉ ଏକ ଦୁର୍ଘଟଣା ଲିପିବଦ୍ଧ ହୋଇଥାନ୍ତା ତୁମ ଇତିହାସ ବହିରେ ।

—କାମରାଜ୍ ମହାଶୂନ୍ୟରେ ଏକ ଯୁବତୀକୁ ଭେଟିଥିଲେ; ଆପଣମାନେ ମଧ୍ୟ ମହାଶୂନ୍ୟରେ ଏକ ଯୁବତୀକୁ ଭେଟିଲେ.! ତାହାହେଲେ ପ୍ରତିବସ୍ତୁଜଗତ୍‌ରେ କ'ଣ ପୁରୁଷ ଆଦୌ ନାହାନ୍ତି ? ରାଙ୍ଗଣନା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

—ସେଇଟା ହିଁ ହେଉଛି ସବୁଠାରୁ ମଜାକଥା ରାଙ୍ଗଣନା । ଏ ସମ୍ପର୍କରେ ତୁମର ବୈଜ୍ଞାନିକ ଉପନ୍ୟାସ-ରଚୟିତାମାନେ ଏ ପର୍ଯ୍ୟନ୍ତ କିଛି ଟେର୍ ପାଇନାହାନ୍ତି ।

ରାଙ୍ଗଣନା ଓ ଜୟଶ୍ରୀଙ୍କ ଆହୁରି ଆଶ୍ଚର୍ଯ୍ୟ ହୋଇ ମୋତେ ଅନାଇ ରହିଲେ—ସତେ ଯେମିତି ଏସବୁ ସେମାନଙ୍କୁ କୁହୁକପୁରୀର ଗପଭଳି ଜଣାପଡ଼ୁଛି ।

—ଆମ ବସ୍ତୁଜଗତ୍‌ରେ ଯେମିତି ମଣିଷଙ୍କ ଭିତରେ ସ୍ତ୍ରୀ ପୁରୁଷ ଅଛନ୍ତି, ପ୍ରତିବସ୍ତୁ-ଜଗତରେ ଥିବା ମଣିଷଙ୍କ ଭିତରେ ସେହିଭଳି ସ୍ତ୍ରୀ ଓ ପୁରୁଷ ଅଛନ୍ତି । ଆମ ପୁରୁଷମାନେ ଯେମିତି ଅଧିକ ବଳୀୟାନ, ସେମାନଙ୍କ ପୁରୁଷମାନେ ସେହିଭଳି ଅଧିକ ବଳୀୟାନ । ଆମର ବଡ଼ ବଡ଼ କାମରେ ପୁରୁଷମାନେ ଯେମିତି ନିୟୋଜିତ ହୁଅନ୍ତି; ସେମାନଙ୍କର ବି ସେଇଆ । ଆମ ସ୍ତ୍ରୀମାନେ ଯେମିତି ଅପେକ୍ଷାକୃତ ଦୁର୍ବଳ ଓ ପିଲା ପ୍ରସବ କରି ବଂଶ ବଢ଼ାଇବାରେ ସାହାଯ୍ୟ କରନ୍ତି, ସେମାନଙ୍କର ସ୍ତ୍ରୀମାନେ ବି ସେଇଆ ।

—ତା ଯଦି ହୁଏ, ସେମାନଙ୍କ ସ୍ତ୍ରୀମାନେ ମହାଶୂନ୍ୟ ଅଭିଯାନରେ ନ ଆସି, ସେମାନଙ୍କ ପୁରୁଷମାନେ ଆସିବା କଥା ।—ମୋ ମୁହଁରୁ କଥା ଛଡ଼ାଇ ନେଇ ରାଙ୍ଗଣନା ଏହା କହିଲା ।

—ହଁ, ତା ତ ଠିକ୍ ! ସେମାନଙ୍କ ପୁରୁଷମାନେ ହିଁ ମହାକାଶ ଅଭିଯାନରେ ଆସନ୍ତି । ସ୍ତ୍ରୀମାନେ ଘରର ଦାୟିତ୍ୱ ନେଇ ସଂସାର ଚଳାନ୍ତି ।

—କିନ୍ତୁ ଆପଣମାନେ ଯେ ମହାଶୂନ୍ୟରେ ପ୍ରତିବସ୍ତୁଜଗତ୍‌ର ଖାଲି ନାରୀମାନଙ୍କୁ ଭେଟିଛନ୍ତି; ପୁରୁଷ ତ କେବେ ଭେଟିନାହାନ୍ତି ।

ସେଇ ହେଉଛି ସବୁଠାରୁ ରହସ୍ୟପୂର୍ଣ୍ଣ ରାଙ୍ଗଣନା ! ଆମ ବସ୍ତୁଜଗତ୍‌ର ପୁରୁଷର ରୂପ ପ୍ରତିବସ୍ତୁଜଗତ୍‌ର ନାରୀର ରୂପ ସହିତ ସମାନ । ଆମ ବସ୍ତୁଜଗତ୍‌ର ନାରୀର ରୂପ, ପ୍ରତିବସ୍ତୁ-ଜଗତ୍‌ର ପୁରୁଷର ରୂପ ସଙ୍ଗେ ସମାନ । ତେଣୁ ତୁମେ ଯଦି ପ୍ରତିବସ୍ତୁଜଗତ୍‌କୁ ଯିବ ରାଙ୍ଗଣନା, ଯେଉଁମାନଙ୍କୁ ତୁମେ ପୁରୁଷଭଳି ଚିହ୍ନିବ, ସେମାନେ ହେଉଛନ୍ତି ପ୍ରକୃତରେ ସ୍ତ୍ରୀ ଓ ଯେଉଁମାନଙ୍କୁ ସ୍ତ୍ରୀଭଳି ଦେଖିବ, ସେମାନେ ହେଉଛନ୍ତି ପ୍ରକୃତରେ ପୁରୁଷ । ଆମେ

ଆଉ କାମରାନ୍ ମହାଶୂନ୍ୟରେ ଯେଉଁ ଦୁଇ ସୁନ୍ଦରୀ ତରୁଣୀଙ୍କୁ ଭେଟିଲୁ ସେମାନେ ପ୍ରକୃତରେ ସ୍ତ୍ରୀ ନୁହନ୍ତି; ସେମାନେ ଆମଭଳି ପୁରୁଷ । ସେମାନଙ୍କର ପୁରୁଷର ରୂପ ଆମର ସ୍ତ୍ରୀର ରୂପ ଭଳି ହୋଇଥିବାରୁ ଆମ୍ଭେମାନେ ଭୁଲରେ ସେମାନଙ୍କୁ ନାରୀ ବୋଲି ଭାବିଲୁ ।

—ମୋର ଏଇସବୁ ଯୁକ୍ତି ରାଙ୍ଗରନାର ମନକୁ ଯେତୁଥିଲା କି କଣ, ଜାଣିପାରିଲି ନାହିଁ । ରାଙ୍ଗରନା ଭଳି ଜୟଶ୍ରୀଙ୍କ ମଧ୍ୟ ଏଥିରେ ଆଶ୍ଚର୍ଯାନ୍ୱିତ ହୋଇ ମୋତେ ଅନାଇ ରହିଥାନ୍ତି ।

କହିଲି—ମହାଶୂନ୍ୟ ଅଭିଯାନର ଅଭିଜ୍ଞତା ତୁମେ ଅର୍ଜ୍ଜନ କରିନାହଁ । ଯଦି ତୁମେ କରିଥାନ୍ତ ତେବେ କହନ୍ତ—ଏହି ଉପନ୍ୟାସର ବର୍ଣ୍ଣନା ବାସ୍ତବତାଠାରୁ ଅଧିକ ଚମକପ୍ରଦ ନୁହେଁ । ମହାଶୂନ୍ୟର ଅଭିଜ୍ଞତା କଳ୍ପନାଠାରୁ ଢେର୍ ଅଧିକ ଚମକପ୍ରଦ । କଳ୍ପନାବାଦୀର କଳ୍ପନା ଯଦି କେବେ ବାସ୍ତବତାଠାରେ ହାର୍ ମାନିଛି, ତେବେ ହାର୍ ମାନିଛି ଏହି ମହାକାଶଯାତ୍ରୀମାନଙ୍କଠାରେ । ମହାକାଶଯାତ୍ରୀମାନଙ୍କର ବାସ୍ତବ ଅଭିଜ୍ଞତା ଯେକୌଣସି କଳ୍ପନାଠାରୁ ଅଧିକ ଚମକପ୍ରଦ । ମହାକାଶ ସମ୍ବନ୍ଧୀୟ କୌଣସି ବୈଜ୍ଞାନିକ ଉପନ୍ୟାସର ବର୍ଣ୍ଣନା ବାସ୍ତବ ଅଭିଜ୍ଞତାଠାରୁ ଅଧିକ ଚମକପ୍ରଦ ନୁହେଁ ।

ଆପଣଙ୍କ ଅଭିଯାନ ଆଉ କେତେଦିନ ରହିଲା ସାଆନ୍ତେ ?—ପଚାରିଲା ରାଙ୍ଗରନା ।

—ଅଭିଯାନର ଦିନ ଧାର୍ଯ୍ୟ ହୋଇନି । ତେବେ ବେଶିଦିନ ଡେରି ନୁହେଁ ।

—କିନ୍ତୁ ସାଆନ୍ତେ ! ଆପଣ ଯେଉଁ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଯାଉଛନ୍ତି, ସେହି ଗ୍ରହ ଏଠାରୁ କଣ ଖୁବ୍ ବେଶି ଦୂର ?

ହସି କହିଲି—ନୁହେଁ ତ ଆଉ କଣ ? ସେହି ଗ୍ରହ ଆମ ଚନ୍ଦ୍ର ପୃଷ୍ଠଠାରୁ ଏତେ ଦୂରରେ ଅଛି ଯେ, ସହଜରେ ଧାରଣା କରି ହେବନାହିଁ ।

—ଏଁ, ଏତେଦୂର ! କେତେ ଆଲୋକବର୍ଷ ହେବ ଦୂରତ୍ୱ ?

ଅଢ଼େଇ ହଜାର ଆଲୋକବର୍ଷ ପାଖାପାଖି । ଜାଣ ଆମ ଛାୟାପଥ ନୀହାରିକାର ଗୋଟାଏ ପାଖରେ ଏହି ଗ୍ରହଟି ଅଛି ।

—ସେଠାରେ ପହଞ୍ଚିବାକୁ କେତେଦିନ ଲାଗିବ ସାଆନ୍ତେ ?

—ବେଶି ଦିନ ନୁହେଁ । ଆମେ ତ ଆଲୋକବେଗର ପାଖାପାଖି ବେଗରେ ଯିବୁ; ତେଣୁ ଠିକ୍ କେଉଁ ବେଗରେ ଯିବୁ ତା'ରି ଉପରେ ନିର୍ଭର କରିବ ଆମ ଯାତ୍ରାର ସମୟ । ଏହା ପାଞ୍ଚ ବର୍ଷଠାରୁ ସାତ ବର୍ଷ ଭିତରେ ଲାଗିବା କଥା । ବର୍ତ୍ତମାନ ସଠିକ୍ କହିହେବନି, ଆମକୁ କେତେ ବର୍ଷ ଲାଗିବ । ଆମ ଯାନର ବେଗ ହିଁ କହିବ ଆମର ସେହି ପଥକୁ କେତେ ବର୍ଷ ଲାଗିବ ।

—ଓଃ ତାହାହେଲେ ତ ବେଶି ଦିନ ନୁହେଁ ! ଅତି ଡେରି ହେଲେ ଆପଣ ବାରବର୍ଷ ଭିତରେ ଫେରିଆସୁଛନ୍ତି । ଆମେ ତ ସେତେବେଳକୁ ଆପଣଙ୍କୁ ସ୍ୱାଗତ କରିବାକୁ ରହିଥିବୁ ।

—ଦୂର୍ ପାଗଳ ! ଆମକୁ ସିନା ବାର ଚଉଦ ବର୍ଷ ଲାଗିବ, ତୁମର ଏଠି କେତେ ବର୍ଷ ବିତଯାଇଥିବ ଜାଣ ?

—କେତେ ବର୍ଷ ?

—ପ୍ରାୟ ପାଞ୍ଚହଜାର ବର୍ଷ ।

—ଆଁ, ପାଞ୍ଚ ହଜାର ବର୍ଷ ! —ଚମକି ପଡ଼ିଲା ରାଙ୍ଗଣନା । ତା'ହେଲେ ଆପଣ ଆସିଲାବେଳକୁ ଆମେ କଣ କେହି ବଞ୍ଚି ନଥିବୁ ସାଆନ୍ତେ ? ଜୟନ୍ତଶାଙ୍କ ବି ?

—ହଁ, ରାଙ୍ଗଣନା ! ସେଇ ହେଉଛି ମହାଶୂନ୍ୟଗ୍ରାତ୍ରୀଙ୍କ ପ୍ରଧାନ ଦୁଃଖ । ମୁଁ ଅଭିଯାନରେ ଗଲେ ତୁମ୍ଭମାନଙ୍କଠାରୁ ଯେଉଁ ବିଦାୟ ନେବି ସେ ହେବ ମୋର ଚିରବିଦାୟ । ମୁଁ ଯଦିଚ ଦଶ ବାର ବର୍ଷ ଭିତରେ ଚନ୍ଦ୍ରପୃଷ୍ଠକୁ ଫେରିଆସିବି, ତୁମ୍ଭେମାନେ ସେତେବେଳକୁ ବଞ୍ଚିନଥିବ । କାରଣ ମୁଁ ଫେରିବି ତୁମର ଏଠାକୁ ପାଞ୍ଚ ହଜାର ବର୍ଷ ପରେ ଓ ଫେରିବାର କେତେ ହଜାର ବର୍ଷ ପୂର୍ବରୁ ତୁମେମାନେ ଇହଧାମ ତ୍ୟାଗ କରିସାରିଥିବ ।

—ତାହେଲେ ସେତେବେଳେ ଆମର ଯେଉଁ ବଂଶଧରମାନେ ଥିବେ ସେମାନେ ଆପଣଙ୍କୁ ସମ୍ବର୍ଦ୍ଧନା କରିବେ ସେମାନଙ୍କର ପୂର୍ବପୁରୁଷ କହି; ଠିକ୍ ଆମେ ଯେମିତି ଆପଣଙ୍କର ଗତ ଅଭିଯାନରୁ ଫେରିଲାବେଳେ ଆପଣଙ୍କୁ ସମ୍ବର୍ଦ୍ଧନା କଲୁ ଆମର ଚତୁର୍ଥ ପୂର୍ବପୁରୁଷ ବୋଲି କହି ।

—ଆମେ ଫେରିଲାବେଳକୁ ତୁମର ଏଠି କେଉଁ ବଂଶଧରମାନେ ଥିବେ କିହ ତ ? ଅନ୍ତତଃପକ୍ଷେ ଶତତମ ବଂଶଧର ଏଠି ବଞ୍ଚିରହିଥିବେ ଆମକୁ ସ୍ୱାଗତ କରିବାପାଇଁ । ସେମାନେ ଯେତେବେଳେ ଦେଖିବେ ଯେ ମୁଁ ହେଉଛି ସେମାନଙ୍କର ଶତତମ ପୂର୍ବପୁରୁଷ ସେମାନେ ବିଶ୍ୱାସ କରିବେ କି ନା ସନ୍ଦେହ ! ମୁଁ ସିନା ତୁମମାନଙ୍କର ଚତୁର୍ଥ ପୂର୍ବପୁରୁଷ, ବୋଲି କୌଣସି ପ୍ରକାରେ ତୁମେ ବିଶ୍ୱାସ କରିଗଲ; କିନ୍ତୁ ମୁଁ ଯଦି ଶତତମ ପୂର୍ବପୁରୁଷ ହୋଇଥାନ୍ତି, ତୁମର ବିଶ୍ୱାସ କରିବାରେ କେତେ କଷ୍ଟ ହୋଇଥାନ୍ତା କହିଲ ? କିଏ କହିବ, ସେତେବେଳେ ଯେଉଁ ବଂଶଧରମାନେ ଥିବେ, ସେମାନେ ମୋତେ ଚହ୍ନିବେ କି ନାହିଁ ?

—ଆମେ ଇହଧାମ ତ୍ୟାଗ କରିବା ପୂର୍ବରୁ କଣ ତା'ର ବନ୍ଦୋବସ୍ତ କରିଯିବୁନି ସାଆନ୍ତେ ! ଆପଣ ଫେରିଆସିଲା ବେଳକୁ ଦେଖିବେ ଆପଣଙ୍କର ଶତତମ ବଂଶଧରମାନେ ହଜାର ହଜାର ସଂଖ୍ୟାରେ ଆପଣଙ୍କୁ ଅଭିନନ୍ଦନ କରିବା ପାଇଁ ବଞ୍ଚିରହିଥିବେ ଏହି ଚନ୍ଦ୍ରପୃଷ୍ଠରେ ।

× × ×

ମୋର ଚନ୍ଦ୍ରମଣ୍ଡଳ ଛାଡ଼ିବା ଦିନ କ୍ରମେ ପାଖେଇ ଆସୁଥାଏ । ମୋ ଅନୁପସ୍ଥିତିରେ, ମୋ ଅଜଣାରେ ଜୟନ୍ତଶାଙ୍କ ଏକାନ୍ତରେ ବସି ମୋ ବିରହ କଥା ଭାବି ବେଳେବେଳେ କାନ୍ଦୁଥାଏ; ମାତ୍ର ମୋ ସାମନାରେ ବେଶ୍ ହସଖୁସି, ଆନନ୍ଦ ଯୋଗୁଁ ମୁଁ ଟିକିଏ ବି ଜାଣିପାରେନି ତା ମନର ଦୁଃଖ ।

ହଠାତ୍ ମୁଁ ଦିନେ ଘରକୁ ପଶିଆସିଲି ଜୟନ୍ତଶାଙ୍କର ଅଜଣାରେ । ଦେଖିଲି ଜୟନ୍ତଶାଙ୍କ ଖଟ ଉପରେ ଶୋଇ କଣ ଗୋଟାଏ ବହି ପଢ଼ୁଁ ପଢ଼ୁଁ କାନ୍ଦୁଛି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ମୋତେ । ଯେଉଁ ଜୟନ୍ତଶାଙ୍କ ମୋ ସାମନାରେ ତା ଅନ୍ତରର ବେଦନା କେବେ ପ୍ରକାଶ କରିନାହିଁ, ତାକୁ ଆଜି ଏକାନ୍ତରେ ଏମିତି ଭାବରେ କାନ୍ଦିବା ଦେଖି ମନ ମୋର ଦୁଃଖରେ ପୂରିଗଲା । ହଠାତ୍ ଜୟନ୍ତଶାଙ୍କର ଶୋଇବାଘରକୁ ପଶିଯାଇ ତାକୁ ପ୍ରବୋଧ ଦେବା ଆଶାରେ ଖଟ ଉପରେ ବସିପଡ଼ିଲି । ମୋତେ ଦେଖି ଜୟନ୍ତଶାଙ୍କ ମୁହଁ ପୋଛିପକାଇବାକୁ ଚେଷ୍ଟା କରୁଥିଲା । ମୁଁ ତାକୁ ସଙ୍ଗେ ସଙ୍ଗେ କୋଳକୁ ଉଠାଇ ଆଣି କହିଲି—ତୁମେ ଏକାନ୍ତରେ ଏମିତି ଲୋତକ ବର୍ଷଣ କରୁଛ, ମୁଁ ସେକଥା ଆଶଙ୍କା କରିନଥିଲି ଶାଙ୍କ ! ତୁମେ ପରା ସେଦିନ କହିଥିଲ—ମୋ ଅଭିଯାନ ହେଉଛି ତୁମ ଜୀବନର ଶ୍ରେଷ୍ଠତମ ଗୌରବ । ଅଥଚ···

ହଠାତ୍ ମୁହଁ ପୋଛିପକାଇ ଓ ମୁହଁ ଉପରେ କୃତ୍ରିମ ହସ ଫୁଟାଇ କହିଲା ଶାଙ୍କ—ମୁଁ ତ ଅସ୍ୱୀକାର କରୁନି । ତୁମର ଅଭିଯାନ ମୋର ନିଶ୍ଚୟ ଗୌରବ ।

—ତେବେ ଏକାନ୍ତରେ ଲୋତକ ଢାଳିବାର କାରଣ କଣ ?

—ମୋର ଗୋଟିଏ ଅନୁରୋଧ ରକ୍ଷା କରିପାରିବ ଉତ୍କଳାବର୍ତ୍ତି ?—ହସି ହସି କହିଲା ଜୟନ୍ତଶାଙ୍କ ।

ତୁମର ଅନୁରୋଧ ରକ୍ଷାକରିବା କଥା ପୁଣି ପଚାରୁଛ ? ମୁଁ ତୁମ ଅନୁରୋଧ କେଉଁ-ଦିନ ପ୍ରତ୍ୟାଖ୍ୟାନ କରିଛି, ଶୁଣେ ।

—କରିନ ତ ନିଶ୍ଚୟ । କିନ୍ତୁ ଏ ଅନୁରୋଧ ଟିକିଏ ଭିନ୍ନ ପ୍ରକାରର । ତୁମେ ଯଦି ରକ୍ଷା କରିବାପାଇଁ ପ୍ରତିଜ୍ଞା କର, ତେବେ ଯାଇ ମୁଁ କହିବି ।

ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲି ଜୟନ୍ତଶାଙ୍କକୁ । କହିଲି—ହେଉ, କଥା ଦେଲି କୁହ—ତୁମ ଅନୁରୋଧ ନିଶ୍ଚୟ ରକ୍ଷା କରିବି । ସେତେବେଳ ପର୍ଯ୍ୟନ୍ତ ଜୟନ୍ତଶାଙ୍କ ମୋ କୋଳରେ ପୂରାପୂରି ଆବଦ୍ଧ ରହିଥିଲା । ମୋ ବାହୁବନ୍ଧନ ଭିତରେ ନିଜକୁ ସମ୍ପୂର୍ଣ୍ଣ ହଜାଇ ଦେଇ ଚାହିଁରହିଥିଲା ମୋ ମୁହଁକୁ ।

ଉତ୍ସାହସ୍ଫୁରିତ ବଦନରେ ନୟନକୁ ନଚାଇ ଜୟନ୍ତଶାଙ୍କ କହିଲା—ମୋତେ ଏକ ସନ୍ତାନର ଜନନୀ ହେବାର ଗୌରବ ଦେଇପାରିବ ଉତ୍କଳାବର୍ତ୍ତି ?

ହଠାତ୍ ମୁଣ୍ଡରେ ଚଡ଼କ ପଡ଼ିଲାଭଳି ଅନୁଭବ କଲି । ଜୟନ୍ତଶାଙ୍କକୁ ବାହୁବନ୍ଧନରୁ ବିମୁକ୍ତ କରି କହିଲି—ଏହି ଅନୁରୋଧଟି କରିବା ପୂର୍ବରୁ ଏହି ଅନୁରୋଧର ପରିଣାମ କଥା ବିଚାର କରିବା ଉଚିତ ଥିଲା ଶାଙ୍କ ! ସେହିଭଳି ଏକ ଅନୁରୋଧ କରି ଏହି ଘରେ ରିନା କି ଦୁଃଖକଷ୍ଟ ଭୋଗ କରିଥିଲା ତୁମର ଜାଣିବା ଉଚିତ ଥିଲା, ବିଶେଷତଃ ଏହି ଅନୁରୋଧ କରିବା ଆଗରୁ । ଆଜି ତୁମେ ଯେଉଁ ଘରେ ଅବସ୍ଥାନ କରୁଛ, ସେହି ଘରେ ଆଜକୁ ଦେଢ଼ଶହ ବର୍ଷତଳେ ଅବସ୍ଥାନ କରିଥିଲା ରିନା ମହାଶୂନ୍ୟ ଅଭିଯାନରେ ଯିବା ପୂର୍ବରୁ

ଯଦିନେ ସେ ଠିକ୍ ମୋତେ ତୁମର ଭଳି ଅଙ୍ଗୀକାର କରେଇ ନେଇ ଏହିଭଳି ଏକ ଅନୁରୋଧ କରିଥିଲା । ରିନାକୁ ମାତୃତ୍ୱର ଗୌରବ ଦେଇ ତା ଜୀବନକୁ ଦୁଃଖକଷ୍ଟମୟ କରିବାକୁ ଇଚ୍ଛା ନ ଥିଲେ ହେଁ ତାର ଅନୁରୋଧ, ତାର ଜିଦ୍, ତାର ଅଭିମାନକୁ ଏଡ଼ି ନ ପାରି ତା'ର କଥାରେ ରାଜି ହେଲି । ରିନା ମାତୃତ୍ୱର ଗୌରବ ପାଇଲା ସତ; କିନ୍ତୁ ସେ ପୁଅ ସାଧାରଣ ପୁଅ ହେଲା ନାହିଁ । ସେ ହେଲା ଏକ ରାକ୍ଷସ-ପୁଅ ! ସେଇ ରାକ୍ଷସ-ପୁଅକୁ ନେଇ ରିନା ଜୀବନରେ ଯେଉଁ ହନ୍ତସନ୍ତ ହୋଇଛି, ତାହା ଧାରଣା କରିବା ସମ୍ଭବପର ନୁହେଁ । ପୃଥିବୀର ପୁରୁଷ, ଚନ୍ଦ୍ରର ସ୍ତ୍ରୀ ଭିତରେ ଯଦି ମିଳନ ହୋଇ ସନ୍ତାନ ଲାଭ ହୁଏ, ତେବେ ସେ ସନ୍ତାନ ଯେ ରାକ୍ଷସ-ପୁଅ ହେବ, ଏହା କଣ ତୁମେ ଜାଣିନ ଜୟଶାଙ୍କ ? ତୁମର ଏଭଳି ଅନୁରୋଧ ଯେ କେତେ ଭୟାବହ, ମୁଁ ଧାରଣା କରିପାରୁନି ଶାଙ୍କ ! ରିନାର ସେହି ରାକ୍ଷସ-ପୁଅ ଜନ୍ମ ହେବା ପୂର୍ବରୁ ତାକୁ ଟେଲିଭିଜନ ମାଧ୍ୟମରେ ଦେଖିଛି । ଜନ୍ମ ହେବା ପରେ ସେ ଯେଉଁ ବିରାଟ ଆକାର ଧାରଣା କରିଥିଲା—ତା ଶୁଣିଛି । ତେଣୁ ଏଭଳି ପରିସ୍ଥିତିରେ ତୁମେ ସନ୍ତାନ ପାଇଁ ଲାଳାୟିତ ହେବା ଉଚିତ ନୁହେଁ ଜୟଶାଙ୍କ !

—ତୁମେ ଯେଉଁ କଥା କହୁଛ, ସେ ଦେଢ଼ଶହ ବର୍ଷ ତଳର କଥା । ତୁମେ କଣ ଭାବୁଛ, ମୁଁ ତୁମର ସେଇ ରାକ୍ଷସ-ପୁଅ କଥା ଜାଣିନି ? ତୁମେ ଯେଉଁ ରାକ୍ଷସ-ସନ୍ତାନ କଥା ଭାବି ଭୟ କରୁଛ, ସେ ଭୟ ଆଉ ଆଜିକାଲି ନାହିଁ । ବର୍ତ୍ତମାନ ବୈଜ୍ଞାନିକମାନେ ଆବିଷ୍କାର କରିପାରିଛନ୍ତି ପୃଥିବୀର ପୁରୁଷ ଓ ଚନ୍ଦ୍ରର ନାରୀ ଭିତରେ ଯଦି ମିଳନ ହୁଏ, ତେବେ କେଉଁ ଉପାୟରେ ସାଧାରଣ ସନ୍ତାନ ଜାତ ହେବ ! ରାକ୍ଷସ-ସନ୍ତାନ ନ ହେବା ପାଇଁ ଯେଉଁ ସବୁ ବାଟ ରହିଛି, ସେ ସବୁ ଚନ୍ଦ୍ରଲୋକର ବୈଜ୍ଞାନିକମାନଙ୍କୁ ଭଲଭାବରେ ଜଣା । ଏ ସମ୍ପର୍କରେ ଅଧିକ ଜାଣିବାପାଇଁ ଆମେ ଚନ୍ଦ୍ରଲୋକର ଶ୍ରେଷ୍ଠ ଜନନବିଶାରଦ ଲେମ୍‌ଲେବ୍‌ଙ୍କ ସହିତ ପରାମର୍ଶ କରିବା ଉଚିତ ।

ଜୟଶାଙ୍କଙ୍କ କଥା ମୋ ମନକୁ ବେଶ୍ ପାଇଥିଲା । ମୁଁ ଯେ ଏକ ସନ୍ତାନ ପାଇଁ ଲାଳାୟିତ ନଥିଲି, ତା' ନୁହେଁ । କେ-ଜେଡ୍-ସି-୯ ଗ୍ରହରୁ ଫେରିବା ପରେ ମୁଁ ଉପଲବ୍ଧି କରିଥିଲି ମୋର ଏକ ଦାୟାଦର ଆବଶ୍ୟକତା । ମନେ ମନେ ଭାବୁଥିଲି—ରିନାଠାରୁ ଯଦି ସାଧାରଣ ପିଲାଟିଏ ଜନ୍ମିଥାନ୍ତା, ଆଜି ସେମାନଙ୍କର ପୁଅପୌଅମାନେ ମୋତେ ସ୍ୱାଗତ ଜଣାଇଥିଲେ ମୁଁ କେତେ ଖୁସି ନ ହୋଇଥାନ୍ତି ସତେ ! ମୋର ନିଜ ନାତି ପଣନାତିଙ୍କୁ ଯେତେବେଳେ ଦେଖିଥାନ୍ତି ସେମାନେ ମୋଠାରୁ ବୟସରେ ବଡ଼, କେତେ ଆମୋଦ ନ ଲାଗିଥାନ୍ତା ! କିନ୍ତୁ କି ଦୁର୍ଯୋଗରେ ଆମର ମିଳନ ହେଲା ଯେ ସନ୍ତାନଟିକୁ ନେଇ ରିନା ତା ଜୀବନକୁ ତିଳେ ତିଳେ ବିସର୍ଜନ କଲା; ତଥାପି ଶାନ୍ତି ପାଇପାରିଲାନି କିମ୍ବା ପୁଅ-ସନ୍ତାନର ସୁଖ କି ଗୌରବ ଉପଭୋଗ କରିପାରିଲାନି । ଜୟଶାଙ୍କର ସୁସମ୍ବାଦ ମୋତେ ଅନାଗତ ସନ୍ତାନର ପିତା ହେବାର ଆଶ୍ୱାସନାର ଏକ କ୍ଷୀଣ ଆଲୋକ ଦେଖାଇଲା । ତେଣୁ

ଠିକ୍ କଲୁ ଆମେ ଜନନବିତ୍ ଲେମ୍ଲେବ୍ଙ୍କୁ ଅତିଶୀଘ୍ର ସାକ୍ଷାତ କରିବୁ । ସଙ୍ଗେ ସଙ୍ଗେ ଟେଲିକମ୍ ସାହାଯ୍ୟରେ ସାକ୍ଷାତର ସମୟ ମଧ୍ୟ ଠିକ୍ କରିନେଲୁ ।

× × ×

ଜନନବିଜ୍ଞାନୀ ଲେମ୍ଲେବ୍ଙ୍କ ଚିକିତ୍ସାଳୟ ଚନ୍ଦ୍ରଲୋକର ପ୍ରସିଦ୍ଧ ଚିକିତ୍ସାଳୟମାନଙ୍କ ଭିତରୁ ଗୋଟିଏ । ସନ୍ତାନ ଜନ୍ମ ନେଇ ଯେତେ ପ୍ରକାର ଜଟିଳ ରୋଗ ଅଛି, ସେ ସବୁର ଚିକିତ୍ସା ପାଇଁ ଏଇ ଚିକିତ୍ସାଳୟଟି ପ୍ରସିଦ୍ଧ । ଆମେ ଚିକିତ୍ସାଳୟରେ ପହଞ୍ଚିଲାବେଳକୁ ବୈଜ୍ଞାନିକ ଲେମ୍ଲେବ୍ ଆମକୁ ସାକ୍ଷାତ କରିବାପାଇଁ ଅପେକ୍ଷା କରିଥାନ୍ତି; ତେଣୁ ସେଠାରେ ପହଞ୍ଚିବାକ୍ଷଣି ସେ ଆମକୁ ଆସି ପାଛୋଟି ନେଇଗଲେ ।

ଚିକିତ୍ସକ ଲେମ୍ଲେବ୍ ବାର୍ଦ୍ଧକ୍ୟର ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲେ । ଯଥେଷ୍ଟ ବୃଦ୍ଧ ହେଲେ ହେଁ ନିଜ ସ୍ୱାସ୍ଥ୍ୟ ପ୍ରତି ବେଶ୍ ଯତ୍ନଶୀଳ ଥିବାରୁ ତାଙ୍କ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ି ନଥାଏ । ମୁଖମଣ୍ଡଳ ବେଶ୍ ଶାନ୍ତ ଓ ଉଜ୍ଜ୍ୱଳ । ମୁଖ ଉପରର ଶୁଭ୍ର ଶ୍ମଶ୍ରୁ ତାଙ୍କର ଜ୍ଞାନ-ଗମ୍ଭୀର ମୁହଁକୁ ବେଶ୍ ମାନୁଥାଏ ।

ମୁଁ ଆମ ଆସିବା ଉଦ୍ଦେଶ୍ୟ ବର୍ଣ୍ଣନା କରିବାରୁ ସେ ହସି ହସି କହିଲେ—ଦେଖ ଉଜ୍ଜ୍ୱଳାବର୍ତ୍ତି ! ତୁମେ ଯେଉଁ ସମସ୍ୟାର କଥା କହୁଛ, ତାହା ହେଉଛି ଦେଢ଼ଶହ ବର୍ଷତଳର କଥା । ତୁମ ଔରସରେ ଶନାଙ୍କଠାରୁ ଯେଉଁ ରାକ୍ଷସ-ପୁତ୍ର ଜାତ ହୋଇଥିଲା, ସେ ସମ୍ପର୍କରେ ଆମେ ଆମ ଚିକିତ୍ସା-ବିଜ୍ଞାନ ବହିରେ ପଢ଼ିଛୁ । ତୁମର କାହିଁକି ରାକ୍ଷସ ପୁତ୍ର ହେଲା, ସେ ସମ୍ବନ୍ଧରେ ଆମର ତୁମୁଳ ଗବେଷଣା ଚାଲି ତାହାର ପ୍ରକୃତ କାରଣ ବାହାର କରାଯାଇଛି । ବୈଜ୍ଞାନିକ ପୋଲେଭିନ୍ଙ୍କ ଏକ ସାମାନ୍ୟ ପ୍ରମାଦ ଯୋଗୁଁ ତୁମ୍ଭମାନଙ୍କୁ ଏତେ କଷ୍ଟ ଭୋଗ କରିବାକୁ ପଡ଼ିଲା । ବୈଜ୍ଞାନିକ ପୋଲେଭିନ୍ ସେତେବେଳେ ଧାରଣା କରିପାରି ନଥିଲେ ତାଙ୍କ ପଦ୍ଧତି ଏତେ ପ୍ରମାଦଯୁକ୍ତ ବୋଲି । ତାଙ୍କର ଧାରଣା ଥିଲା, ଜରାୟୁର ନିଷିକ୍ତ ଡିମ୍ବାଣୁକୁ ବାହାର କରି କୃତ୍ରିମ ପୋଷକମାଧ୍ୟମରେ ପୃଥିବୀର ମାଧ୍ୟାକର୍ଷଣ ସହିତ ସମାନ ବଳ ଥିବା ଏକ ପ୍ରକୋଷ୍ଠରେ ବଢ଼ାଇ ନବାଗତ ଶିଶୁଟିକୁ ଏକ ସାଧାରଣ ଶିଶୁ କରି-ପାରିବେ । କିନ୍ତୁ ସେଇଠି ହେଲା ବୈଜ୍ଞାନିକ ପୋଲେଭିନ୍ଙ୍କ ପ୍ରକାଣ୍ଡ ଭୁଲ୍ । ସେ ଯଦି ତୁମମାନଙ୍କର ମିଳନଠାରୁ ସନ୍ତାନଟିର ଜନ୍ମ ପର୍ଯ୍ୟନ୍ତ ଶନାକୁ ଏକ କୃତ୍ରିମ ପୃଥିବୀର ମାଧ୍ୟାକର୍ଷଣବଳଯୁକ୍ତ ପ୍ରକୋଷ୍ଠରେ ରଖିଥାନ୍ତେ, ତେବେ ଏ ଭୁଲ ହୋଇନଥାନ୍ତା । ବୈଜ୍ଞାନିକ ପୋଲେଭିନ୍ଙ୍କ ଯେଉଁ ଭୁଲ ତାହା ସେ ଯୁଗର ସମସ୍ତଙ୍କର ଭୁଲ । ପୋଲେଭିନ୍ଙ୍କ ଭୁଲକୁ ପର୍ଯ୍ୟାଲୋଚନା କରି ଆମେ ପ୍ରକୃତ ସତ୍ୟଟି ବାହାରକରିପାରିଛୁଁ । ବର୍ତ୍ତମାନ୍ ଆଉ ସେ ଭୁଲ ହେବାର ଆଶଙ୍କା ନାହିଁ । ତୁମେମାନେ ନିଶ୍ଚିତ ହୋଇପାର ଯେ ମୋ ଚିକିତ୍ସାରେ ରହିଲେ ଏକ ସାଧାରଣ ସନ୍ତାନ ଲଭ କରିପାରିବ । ଅବଶ୍ୟ ଏଥିପୂର୍ବରୁ ବହୁତଗୁଡ଼ିଏ ପରୀକ୍ଷା ଦରକାର । ତୁମେମାନେ ଯଦି ଇଚ୍ଛୁକ, ତେବେ ମୋ ଚିକିତ୍ସାଳୟରେ ଅବସ୍ଥାନ କରିପାର । ମୁଁ ତୁମମାନଙ୍କର ଦାୟିତ୍ୱ ନେବାକୁ ପ୍ରସ୍ତୁତ । ବିଶେଷତଃ ତୁମେ, ଯେ କି ଆମ ଚନ୍ଦ୍ରଲୋକର କୋଡ଼ିଏ କୋଟି ଜନତାର ଜୀବନ ରକ୍ଷା କରିବା ପାଇଁ

ଦୃଢ଼ପ୍ରତ୍ୟୟ, ଆମେ ସେଭଳି ଏକ ଜନହିତୈଷୀ ମହାକାଶଗୃହିଙ୍କୁ ସେତିକି ସାହାଯ୍ୟ କ'ଣ କରିବୁ ନାହିଁ ?

ବଡ଼ ଉତ୍ସାହ ଲାଗିଲା ଲେମ୍‌ଲେବ୍‌ଙ୍କ ସାନ୍ତ୍ୱନାବାଣୀ ଶୁଣି ।

ସେ ପୁଣି କହିଚାଲିଲେ—ମୋ ପଦ୍ଧତି ବିଶେଷ ଜଟିଳ ନୁହେଁ । ଅପରେସନ୍ ଆଦିର କିଛି ଗୋଳମାଳ ନାହିଁ । ତୁମର ଓ ଜୟନ୍ତୀଙ୍କର ପ୍ରାକୃତିକ ମିଳନ ହେବ ଏକ ନିର୍ଦ୍ଦିଷ୍ଟ କୋଠରି ଭିତରେ; ଯେଉଁ କୋଠରିରେ କୃତ୍ରିମ ଉପାୟରେ ସୃଷ୍ଟି କରାଯାଉଥିବ ପୃଥିବୀର ମାଧ୍ୟାକର୍ଷଣ । ସେହି କୋଠରିଟି ଚନ୍ଦ୍ରପୃଷ୍ଠରେ ହେଲେ ବି ପୃଥିବୀର ମାଧ୍ୟାକର୍ଷଣ ବଳ ଭଳି କୃତ୍ରିମ ମାଧ୍ୟାକର୍ଷଣ ବଳ ସେଥିରେ କାର୍ଯ୍ୟ କରିବ । ଜୟନ୍ତୀଙ୍କ ଜରାୟୁରେ ପିଲା ସଞ୍ଚରିବାଠାରୁ ପିଲାଟି ବାହାରି ପ୍ରସବ ହେଲାପର୍ଯ୍ୟନ୍ତ ଜୟନ୍ତୀ ରହିବେ ସେହି କୋଠରିରେ । ପିଲା ବି ପ୍ରସବ ହେବ ସେଇ କୋଠରିରେ ଓ ପିଲାଟି ପ୍ରଥମ କେଇଦିନ ଲାଳିତପାଳିତ ହେବ ସେଇ କୋଠରିରେ । ତୁମେ ଦେଖିବ, ଯେ ଯେଉଁ ପିଲା ହେବ, ସେ ପିଲା ହେବ ପୃଥିବୀର ବା ଚନ୍ଦ୍ରଲୋକର ସାଧାରଣ ପିଲାଭଳି । ତା ଛଡ଼ା ତୁମେ ଯଦି ପୁତ୍ର-ସନ୍ତାନ ବା କନ୍ୟା-ସନ୍ତାନ ଲାଭ କରିବାର ଇଚ୍ଛାକର, ମୋତେ ଆଗରୁ ଜଣାଇଲେ ମୁଁ ସେଇ ଅନୁସାରେ ବ୍ୟବସ୍ଥା କରିପାରିବି ।

ଲକ୍ଷ୍ୟକଲି, ବୈଜ୍ଞାନିକଙ୍କ କଥା କେଇପଦ ଶୁଣିଲାକ୍ଷଣି ଜୟନ୍ତୀଙ୍କର ମୁଖ ଉଜ୍ଜ୍ୱଳ ହୋଇଉଠିଲା । ମୋ ମନ ମଧ୍ୟ ଆଶୁ ସନ୍ତାନଲାଭର ଭାବନାରେ ଉଲ୍ଲସି ଉଠିଲା । ତେଣୁ ଅଳ୍ପ କେଇଦିନ ଭିତରେ ମୁଁ ଓ ଜୟନ୍ତୀ ଚିକିତ୍ସକଙ୍କ ଚିକିତ୍ସାଧୀନରେ ରହିବୁଁ ବୋଲି କହିଦେଇ ସେଠାରୁ ଫେରିଲୁ ।

× × ×

ଜୟନ୍ତୀ ଚିକିତ୍ସାଳୟର ଏକ କୃତ୍ରିମ କୋଠରିରେ ରହିଲେ । କୋଠରିଟିର ଚାରିକାନ୍ଥ, ଚଟାଣ, ଛାତ ଉପରେ ଅସଂଖ୍ୟ ପ୍ରକାର ଯନ୍ତ୍ରପାତି ଲାଗିରହିଛି—ଏମିତି ଭାବରେ ଖଞ୍ଜାହୋଇଛି ଯେ କୋଠରି ଭିତରକୁ ଗଲେ କିଛି ଜଣାପଡ଼ିବାକୁ ନାହିଁ । ଏହି କୋଠରିଟି ଭିତରେ କୃତ୍ରିମ ମାଧ୍ୟାକର୍ଷଣବଳ ସୃଷ୍ଟିକରାଯାଇ ପୃଥିବୀର ଅବସ୍ଥା ସହିତ ସମାନ ରଖା-ଯାଇଛି । ପୃଥିବୀର ମାଧ୍ୟାକର୍ଷଣବଳ ଯେତିକି, ଚନ୍ଦ୍ରପୃଷ୍ଠରେ ତା'ଠାରୁ ଢେର୍ କମ୍ ହେଲେହେଁ ଏ କୋଠରିଟି ଭିତରେ ତାହା ସମାନ । ଜୟନ୍ତୀଙ୍କୁ ଏହି କୋଠରିରେ ରହିବାକୁ ପଡ଼ିବ ପୁରା ବର୍ଷଟିଏ । ସନ୍ତାନ-ପ୍ରସବର କିଛିଦିନ ପରେ ଯାଇ ମୁକ୍ତି ମିଳିବ ଏହିଠାରୁ ।

ବଡ଼ ବିଚିତ୍ର ଅନୁଭୂତି ସେହି କୋଠରିଟି ଭିତରେ । ମୁଁ ପୃଥିବୀର ଲୋକ ବୋଲି ମୋତେ କିଛି ଜଣାପଡୁନଥାଏ । କାହିଁକି ନା ମୋର ମାଂସପେଶୀ ଓ ଶରୀର ପୃଥିବୀର ମାଧ୍ୟାକର୍ଷଣ-ବଳ ସହିତ ଅଭ୍ୟସ୍ତ ଓ ସେଇ ଅନୁସାରେ ମୋ ଶରୀର ମାଂସପେଶୀର ଗଠନ ହୋଇଛି । କିନ୍ତୁ ଜୟନ୍ତୀ ଚନ୍ଦ୍ରଲଲନା । ଚନ୍ଦ୍ରପୃଷ୍ଠର ମାଧ୍ୟାକର୍ଷଣ ସହିତ ସେ ଅଭ୍ୟସ୍ତ । ଚନ୍ଦ୍ର

ଅନୁସାରେ ତାର ଶରୀର ଓ ମାଂସପେଶୀ ତିଆରି ହୋଇଛି; ତେଣୁ ତାର ଦୁର୍ବଳ ମାଂସପେଶୀ ଏ କୋଠରିଟି ଭିତରେ କୃତ୍ରିମ ଭାବରେ ସୃଷ୍ଟି ହୋଇଥିବା ମାଧ୍ୟାକର୍ଷଣବଳ ସହିତ ଚଳିପାରୁନି । ଏହି ବର୍ଦ୍ଧିତ ମାଧ୍ୟାକର୍ଷଣବଳ ଭିତରେ ଚଳପ୍ରଚଳ ହୋଇ ତାର ମାଂସପେଶୀ ଦୁର୍ବଳ ଲାଗୁଛି । ତେଣୁ ସେ କୋଠରି ବାହାରେ ସାଧାରଣ ଭାବରେ ଚଳପ୍ରଚଳ ହୋଇପାରୁଥିଲେ ହେଁ, କୋଠରି ଭିତରକୁ ଆସିଲା ବେଳକୁ ଅନୁଭବ କରୁଛି ସେ ଯେମିତି ଖୁବ୍ ଦୁର୍ବଳ । କୋଠରି ଭିତରେ ମୁଁ ବେଶ୍ ଚଲାବୁଲା କରିପାରୁଥିଲେ ହେଁ ସେ କିନ୍ତୁ ପାରୁନଥାଏ । ସେ ଯେତେ ଚେଷ୍ଟା କଲେ ମଧ୍ୟ ଚଞ୍ଚଳ ଚଞ୍ଚଳ ଯାଇ-ଆସି ପାରୁନଥାଏ । ସେ ସର୍ବଦା ଚାଲୁଥାଏ ଧୀରେ ଧୀରେ । କିଛି ସମୟ ଚଲାବୁଲା କଲେ କି ଠିଆହେଲେ ସେ ଦୁର୍ବଳ ଅନୁଭବ କରି ବସିପଡ଼ୁଥାଏ ।

ଦିନେ ସେ ଆଶ୍ଚର୍ଯ୍ୟ ହୋଇ ମୋତେ ପଚାରିଲା, "ଏ କୋଠରିରେ କଣ ହୋଇଛି କେଜାଣି, ମୁଁ ଏଠି ଚଳପ୍ରଚଳ ହେଲାବେଳେ ବଡ଼ ଦୁର୍ବଳ ଅନୁଭବ କରୁଛି ଉତ୍କଳାବର୍ତ୍ତି ! କିନ୍ତୁ କୋଠରି ବାହାରେ ତ କିଛି ଜଣାପଡ଼ୁନି ମୋତେ ! କୋଠରି ଭିତରକୁ ଆସିଲା-ବେଳକୁ ଜଣାପଡ଼ୁଛି ଯେମିତିକି ମୋ ଦେହର ବଳ ସବୁ କିଏ କାଢ଼ିନେଉଛି ! ମୋତେ କିଛି ବୁଝାପଡ଼ୁନି, ମୋର ଏ ବିଚିତ୍ର ଅନୁଭୂତି କେଉଁଥିପାଇଁ ?

ଜୟନ୍ତଶ୍ରୀଙ୍କର ପ୍ରଶ୍ନରେ ହସିଲି । କହିଲି—ଦେଖ ଶ୍ରୀଙ୍କ ! ଚନ୍ଦ୍ରପୃଷ୍ଠରେ ଏହି କୋଠରିଟି ଥିଲେହେଁ ଏହି କୋଠରିଟି ଭିତରେ ପୃଥିବୀର ଅବସ୍ଥା କୃତ୍ରିମ ଉପାୟରେ ସୃଷ୍ଟି କରାଯାଇଛି । ପୃଥିବୀର ଅବସ୍ଥା ଯାହା, ଏ କୋଠରିଟିର ଅବସ୍ଥା ଅନେକ ପରିମାଣରେ ସେଇଆ । ତୁମେ ଚନ୍ଦ୍ରର ଲଳନା; ଯଦି ପୃଥିବୀକୁ ବଧୂ ସାଜି ଯାଅ, ଯେଉଁ କଷ୍ଟର ସମ୍ମୁଖୀନ ହୁଅନ୍ତ ତହିଁର କିଛି ଆଭାସ ତୁମେ ପାଇପାରୁଥିବ ଏହିଠାରୁ । ଚନ୍ଦ୍ରର ଅଧିବାସୀମାନେ ପୃଥିବୀକୁ ଯିବାପାଇଁ କାହିଁକି ଇଚ୍ଛୁକ ନୁହନ୍ତି, ତାର କାରଣ ହେଲା ଏଇ । ତୁମ ଉପଗ୍ରହର ଯେତେ ସବଳ ଲୋକଟିଏ ହେଲେ ମଧ୍ୟ ଆମ ଗ୍ରହର ଗୋଟିଏ ଦୁର୍ବଳ ଲୋକର ସମକକ୍ଷ ହୋଇପାରିବନି । ତୁମେମାନେ ଏଠି ଯେତିକି ଜିନିଷଟିଏ ଉଠାଇପାରୁଛ, ତହିଁର ଛଅ ଭାଗରୁ ଭାଗେ ଓଜନର ଜିନିଷ ପୃଥିବୀରେ ଉଠାଇ ପାରିବନାହିଁ । ତୁମେ ଏଠି ଯେତେ ବେଗରେ ଚଲାବୁଲା କରିପାରୁଛ, ପୃଥିବୀରେ ତାର ଛଅ ଭାଗରୁ ଭାଗେ ବେଗରେ ଚଲାବୁଲା କରିପାରିବ କି ନା ସନ୍ଦେହ । ଯେହେତୁ ତୁମେ ମାତୃତ୍ୱର ଗୌରବ ନେବାକୁ ଏକାନ୍ତ ଇଚ୍ଛୁକ, ଏକ ସାଧାରଣ ସନ୍ତାନ ଜାତ ପାଇଁ ଜନନବିଜ୍ଞ ଲେମ୍‌ଲେବ୍ ଏହି ଉପାୟ ଅବଲମ୍ବନ କରିଛନ୍ତି । ଏହି ଉପାୟ ଯଦି ଅବଲମ୍ବନ କରାଯାଇ ନଥାନ୍ତା, ଶିବା ଭଳି ତୁମେ ମଧ୍ୟ ଏକ ରାକ୍ଷସ-ସନ୍ତାନର ମା' ହୁଅନ୍ତ । ଯାହାହେଉ, ଏତିକି କଷ୍ଟ ତୁମକୁ ସ୍ୱୀକାର କରିବାକୁ ପଡ଼ିବ ଶ୍ରୀଙ୍କ; ନହେଲେ ମାତୃତ୍ୱର ଗୌରବକୁ ଉପଭୋଗ କରିପାରିବନି ।—ଜୟନ୍ତଶ୍ରୀଙ୍କୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ କହିଲି ।

ହଁ,···ମୁଖରେ କୃତ୍ରିମ ରାଗ ଫୁଟାଇ କହିଲା ଜୟନ୍ତଶ୍ରୀ—ଆମେ ହିଁ ଖାଲି କଷ୍ଟ

ସ୍ୱୀକାର କରୁଥିବୁ; ଆଉ ତୁମେ ଆମ କଷ୍ଟରୁ ଖାଲି ଫାଇଦା ଉଠାଉଥିବ ।

× × ×

ଯଥାସମୟରେ ଜସ୍ମିଣାଙ୍କ ଗର୍ଭରୁ ଏକ ପୁତ୍ର-ସନ୍ତାନ ଜାତହେଲା । ପୁତ୍ରଟି ସ୍ୱାଭାବିକ ସ୍ଥିତିରେ ସ୍ୱାଭାବିକ ଆକାରର ରୂପ ନେଇ ଜନ୍ମ ହୋଇଛି । ପୁତ୍ରଟିକୁ ଦେଖି ଜସ୍ମିଣାଙ୍କ ଅତ୍ୟନ୍ତ ଖୁସି । ପୁତ୍ର-ପ୍ରସବର ଯାତନା ସେ ସଙ୍ଗେ ସଙ୍ଗେ ଭୁଲିଯାଇଛି ପୁଅର ମୁହଁ ଦେଖିବାଠାରୁ । ପୁତ୍ରଟି ପୂରାପୂରି ମୋ'ରି ରୂପ ନେଇଛି । ସନ୍ତାନ ଜନ୍ମ ହେବା ପୂର୍ବରୁ ଆମ ଦୁ' ଜଣଙ୍କ ମନରେ ଯେଉଁ ଭୟ ଥିଲା ଯେ ପୁତ୍ର କାଳେ ଜୀବିତ ଅବସ୍ଥାରେ ଜାତ ନହେବ ବା କୌଣସି ବିକୃତ ରୂପ ନେଇ ଜନ୍ମିବ, ସେ ଭୟ ଆମର ଦୂର ହୋଇଛି ।

ଏହି ସମୟରେ ହଠାତ୍ ବାର୍ତ୍ତା ପାଇଲି ମହାକାଶଯାନର ପରିଚାଳକଙ୍କଠାରୁ ଯେ ଆମର ଚନ୍ଦ୍ରପୃଷ୍ଠ ଛାଡ଼ିବା ବେଶି ଦିନ ଡେରି ନାହିଁ । ତେଣୁ ମୋତେ ପ୍ରସ୍ତୁତ ହୋଇ ଯୋଗଦେବାକୁ ପଡ଼ିବ ମହାଶୂନ୍ୟ ଅଭିଯାନ କର୍ତ୍ତୃପକ୍ଷଙ୍କଠାରେ ।

ଲକ୍ଷ୍ୟ କଲି ଏହି ସମ୍ବାଦ ଜସ୍ମିଣାଙ୍କୁ ପୂର୍ବଭଳି ବିଶେଷ ଦୁଃଖୀ କରି ପାରିଲା ନାହିଁ; କାରଣ ଆଜିର ଜସ୍ମିଣା ଓ କିଛିଦିନ ତଳର ଜସ୍ମିଣାଙ୍କ ଭିତରେ ବହୁତ ପ୍ରଭେଦ । ଏବେ ମୋ ବିଚ୍ଛେଦରେ ସେ ତାର ଜୀବନକୁ ଚଳାଇ ନେଇ ପାରିବ ମୋର ଶିଶୁ ପୁଅଟିକୁ ଦେଖି ଦେଖି । କିଛିଦିନ ତଳେ ମୋ ଅଭିଯାନ କଥା ମନେପକାଇ ସେ ଯେମିତି ଶିହରି ଉଠୁଥିଲା, ଆଜି ତାର ସେମିତି ନାହିଁ । ମୋ ଅଭିଯାନରେ ସେ ଆଜି ଗର୍ବ କରିଉଠୁଛି ଯେ ଚନ୍ଦ୍ରପୃଷ୍ଠର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମହାଶୂନ୍ୟ ଅଭିଯାନର ପରିଚାଳକ ହେଉଛି ମୁଁ ।

## ଉଣେଇଶ

ଚନ୍ଦ୍ରଲୋକ ଛାଡ଼ିବା ଦିନ...

ଚନ୍ଦ୍ରଲୋକର ମହାଶୂନ୍ୟଘାଟୀରୁ ଆମ ମହାକାଶଯାନ ଛାଡ଼ିବ ବ୍ରହ୍ମାଣ୍ଡ ସିରସ୍ ଅଭିମୁଖେ । ସେଠାରେ କିଛିଦିନ ଅବସ୍ଥାନ କରିବା ପରେ ବିଶ୍ୱଯାନ ସାହାଯ୍ୟରେ ଆମକୁ ଯିବାକୁ ପଡ଼ିବ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ । ଆମର ଏହି ଅଭିଯାନରେ ମୋତେ ମିଶାଇ ପାଞ୍ଚଜଣ ଅଭିଯାତ୍ରୀ ଯିବା ଠିକ୍ ହୋଇଥାଏ । ଅଭିଯାନର ନେତୃତ୍ୱ ମୋତେ ଦିଆଯାଇଥିବାରୁ ନାନା ଆଡ଼କୁ ଦୃଷ୍ଟି ଦେଇ ସବୁ ଠିକ୍ ଅଛି କି ନାହିଁ, ମୋତେ ଦେଖିବାକୁ ପଡ଼ୁଥାଏ । ଯଥାସମୟରେ ମୁଁ ଓ ଜସ୍ମିଣାଙ୍କ ଚନ୍ଦ୍ରଲୋକର ମହାଶୂନ୍ୟଘାଟୀକୁ ଆସିଲୁ । ଜସ୍ମିଣାଙ୍କ କୋଳରେ ଗ୍ରେଟ ପୁଅଟି । ସେମାନେ ଆସିଥାଆନ୍ତି ମୋତେ ବିଦାୟ ଦେବା-ପାଇଁ । ରୁଙ୍ଗାରିନା ଓ ତାଙ୍କ ବାପା ମଧ୍ୟ ଆସିଥାନ୍ତି ବିଦାୟ ଦେବା ଉଦ୍ଦେଶ୍ୟରେ । ରାଷ୍ଟ୍ରର

ବଡ଼ ବଡ଼ ବୈଜ୍ଞାନିକ, ମହାକାଶଗବେଷୀ, ଶାସକ ଓ ଦେଶଶାସକମାନେ କେତେ ଯେ ଆସିଥାନ୍ତି ତାର କଳନା ନଥାଏ । ସେମାନଙ୍କୁ ଦେଖି ହଠାତ୍ ମୋର ମନେପଡ଼ିଗଲା ଦେଢ଼ଶହ ବର୍ଷ ତଳର ଘଟଣା, ଏମିତି ଯେଉଁଦିନ ମୁଁ ଶାଙ୍ଗରିନା, କେବଳପ୍ରାପ୍ତ ଓ ଶାଙ୍ଗରିନାଙ୍କ-ଠାରୁ ବିଦାୟ ନେଇ କେ-ଜେଡ୍-ସି-୯ ଗ୍ରହ ଅଭିମୁଖେ ଯାତ୍ରା କରିଥିଲି । ଆଜି ଠିକ୍ ସେହିଭଳି ଏକ ଅଭିଯାନ କେ-ଜେଡ୍-ସି-୯ ପରିବର୍ତ୍ତିରେ କେ-ଏମ୍-ବି-୧୧ ଗ୍ରହକୁ । ଶାଙ୍ଗରିନା ଓ କେବଳପ୍ରାପ୍ତଙ୍କ ସ୍ଥାନରେ ମୋତେ ବିଦାୟ ଦେବାକୁ ଆସିଛନ୍ତି କେବଳପ୍ରାପ୍ତଙ୍କ ନାତି ଓ ପଣନାତି ନାତୁଣୀମାନେ ।

ଏହି ଅଭିଯାନଟି ଅତି ଗୁରୁତ୍ୱପୂର୍ଣ୍ଣ ଅଭିଯାନ ହୋଇଥିବାରୁ ସାରା ଚନ୍ଦ୍ରଲୋକର ଦୃଷ୍ଟି ଏହା ଉପରେ ନିବଦ୍ଧ ଥାଏ । ଆମର ଏହି ଅଭିଯାନ ଯଦି ସଫଳତା ଲାଭକରେ, ଚନ୍ଦ୍ରଲୋକର କୋଡ଼ିଏ କୋଟି ଅଧିବାସୀ ଧ୍ୱଂସମୁଖରୁ ରକ୍ଷା ପାଇପିବେ । ଆମ ଅଭିଯାନ ଯଦି ବିଫଳ ହୁଏ ବା ବିଫଳତାର ସହିତ ଯଦି ଆମେ ଫେରିଆସୁ, ତେବେ ଖାଲି ଚନ୍ଦ୍ରାଧିବାସୀମାନେ ଧ୍ୱଂସପ୍ରାପ୍ତ ହେବେନାହିଁ, ସେଥିସହ ଚନ୍ଦ୍ରର ଘଟିବ ଅପମୃତ୍ୟୁ ।

ଆମ ଦଳର ଅନ୍ୟାନ୍ୟ ଅଭିଯାତ୍ରୀମାନେ ମହାଶୂନ୍ୟଯାନ ଭିତରକୁ ଯାଇସାରିଲେଣି । ମୁଁ ସମସ୍ତଙ୍କ ପଛରେ ଏକାକି ହୋଇଥିବା ଜନତାଠାରୁ ଶେଷ ବିଦାୟ ନେଇ ସାଙ୍ଗରିନା, ଜୟଶାଙ୍ଗ ଓ ସାଙ୍ଗରିନାର ବାପାଙ୍କଠାକୁ ଆସି ଶେଷ ବିଦାୟ ନେଲି । ବିଦାୟ ନେଉ ନେଉ କହିପକାଇଲି—ଆଜି ଏହି ଚନ୍ଦ୍ରପୃଷ୍ଠରୁ ବିଦାୟ ନେଉଛି ସତ; କିନ୍ତୁ କୃତକାର୍ଯ୍ୟ ହୋଇ ଫେରିଆସିଲେ ମୋର କୃତକାର୍ଯ୍ୟତାକୁ ଉପଭୋଗ କରିବାପାଇଁ ତୁମେମାନେ କେହି ନଥିବ, ଏହାଠାରୁ ବଳି ଦୁଃଖ ମୋତେ ଆଉ କଣ ହୋଇପାରେ ? ତୁମମାନଙ୍କର କେଉଁ ବଂଶଧର ଯେ ଏଠି ଥିବେ, ମୁଁ ଭାବିପାରୁନାହିଁ । ସେମାନେ ମୋତେ ଚିହ୍ନିପାରିବେ କି କଣ, ତାହା ମୋର ଧାରଣାର ବାହାରେ ।

—ପାଞ୍ଚ ହଜାର ବର୍ଷ ପରେ ଆପଣଙ୍କୁ ଆମ ବଂଶପକ୍ଷରୁ ସ୍ୱାଗତ ଜଣାଇବାରେ କିଛି ବାଧା ନଥିବ ସାଆନ୍ତେ !—ସାଙ୍ଗରିନା କହିଲା, ଆମେ ମୃତ୍ୟୁ ବରଣ କରିବା ପୂର୍ବରୁ ତହିଁର ବିହିତ ବ୍ୟବସ୍ଥା ଯେ ନ କରିଯିବୁ, ତା ନୁହେଁ । ଦେଖିବେ ଠିକ୍ ଏମିତି ଏକ ସାୟାହ୍ନରେ ଆମ ଶତତମ ବଂଶଧରମାନେ ସ୍ୱାଗତ କରିବାକୁ ଆସିବେ ଆପଣଙ୍କୁ, ମୁଁ ଯେମିତି ସ୍ୱାଗତ କରିଥିଲି ଆପଣ ଚନ୍ଦ୍ରରେ ପହଞ୍ଚିବା ଦିନ । ଆପଣଙ୍କୁ ଚିହ୍ନିବାରେ ସେମାନଙ୍କର ଯେମିତି ବିଶେଷ ଅସୁବିଧା ନହୁଏ, ତହିଁର ବ୍ୟବସ୍ଥା ମଧ୍ୟ ଆମେ କରିଯାଇଥିବୁ । ତା'ପରେ ଆପଣଙ୍କର ବର୍ତ୍ତମାନର ରୂପ ଓ ଫେରିଆସିବା ପରର ରୂପରେ ବିଶେଷ ପରିବର୍ତ୍ତନ ହୋଇ ନଥିବ—ତେଣୁ ଚିହ୍ନିବାରେ ଅସୁବିଧା ହେବ ନାହିଁ ସାଆନ୍ତେ !

—କିନ୍ତୁ ସାଙ୍ଗରିନା, ଜୟଶାଙ୍ଗ, ତୁମମାନଙ୍କୁ ଗୋଟିଏ କଥା ଉପରେ ଦୃଷ୍ଟି ଦେବାକୁ ମୋର ଅନୁରୋଧ । ତୁମେମାନେ ଦେଖିବ, ଆମ ବଂଶରେ ଭବିଷ୍ୟତରେ କେହି ଅବିବାହିତ କିମ୍ବା ନିଃସନ୍ତାନ ଅବସ୍ଥାରେ ଯେମିତି ନ ମରେ । ଜୟଶାଙ୍ଗ ଆଡ଼କୁ ଅନାଇ କହିଲି—

ଦେଖ ଶାଙ୍ଗ ! ମୋ ବିଚ୍ଛେଦରେ ବ୍ୟଥିତ ହେବନାହିଁ । ମନରେ ଯଥେଷ୍ଟ ଧୈର୍ଯ୍ୟ ଧରି ଯେଉଁ ପ୍ରତିନିଧିଟି ଛାଡ଼ିଦେଇଯାଉଛି, ତାହାର ରକ୍ଷଣାବେକ୍ଷଣ କରି ତୁମେ ତୁମ ଦିନ କାଟି-ଦେଇପାରିବ ବୋଲି ଆଶା । ତୁମ ସହିତ ଆଉ ସାକ୍ଷାତ ହେବନାହିଁ; ତେବେ ଆମରି ଏଇ ସନ୍ତାନର ବଂଶଧରଙ୍କ ସହିତ ମୋର ସାକ୍ଷାତ୍ ହେବ ପାଞ୍ଚହଜାର ବର୍ଷ ପରେ, ଯଦି ତୁମେ ଏହାର ରକ୍ଷଣାବେକ୍ଷଣ କରିପାରିଥିବ ଠିକ୍ ଭାବରେ ।

ମହାଶୂନ୍ୟ ଅଭିଯାନର ଶେଷ ସଙ୍କେତ ବାଜିଉଠିଲା । ରାଷ୍ଟ୍ରର ବଡ଼ ବଡ଼ ବୈଜ୍ଞାନିକ ମହାଶୂନ୍ୟଯାତ୍ରୀ ଓ ଶାସକଙ୍କଠାରୁ ପୁଣି ଥରେ ବିଦାୟ ନେଇ ମହାଶୂନ୍ୟଯାନ ଭିତରକୁ ପଶିଲି । ଝରକା ଦେଇ ଲକ୍ଷ୍ୟ କଲି ସମସ୍ତେ ମହାକାଶଯାନକୁ ଅନାଇ ଠିଆହୋଇଛନ୍ତି । ଜୟଶ୍ରୀଙ୍କ ଦୁଃଖରେ ଭାଙ୍ଗିପଡ଼ିବା ଉପରେ । ଚକ୍ଷୁକୋଣରେ ତାର ଅଶ୍ରୁର ଧାର । ସେ ଦୃଶ୍ୟ ଦେଖି ମୁଁ ନିଜକୁ ସମ୍ଭାଳି ପାରିଲି ନାହିଁ । ମୋ ଆଖିରେ ମଧ୍ୟ ଲୁହ ଭରିଆସିଲା; କିନ୍ତୁ ଯଥାସମୟରେ ଇଞ୍ଜିନ୍‌ର ଷ୍ଟାର୍ଟ ଦେବାକୁ ହେବ । ତେଣୁ ସେହି ଅବସ୍ଥାରେ ଇଞ୍ଜିନ୍‌ରେ ଷ୍ଟାର୍ଟ ଦେଲି । ଘୋର ଘର୍ଘର ଶବ୍ଦରେ ଧାରିଣୀ କମ୍ପିଉଠିଲା । ଗୁହୁଁ ଗୁହୁଁ ଆମ ମହା-ଶୂନ୍ୟଯାନ ଚନ୍ଦ୍ର ଛାଡ଼ି ଛୁଟିଚାଲିଲା ସିରସ୍ ଅଭିମୁଖେ । ସେଠାରେ କିଛିଦିନ ଅବସ୍ଥାନ କରିବା ପରେ ବିଶ୍ୱଯାନ ଚାଲିବ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ।

× × ×

ବିଶ୍ୱଯାନ ଛୁଟିଚାଲିଛି ଆମ ଅଭିପ୍ରେତ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ । ଆମ ଯାନର ବେଗ ଆଲୋକବେଗର ପାଖାପାଖି । ଗ୍ରହଟିର ଦୂରତ୍ୱ ଆମଠାରୁ ଅଢ଼େଇହଜାର ଆଲୋକବର୍ଷ । ଗଣନା କରି ଦେଖିଲି ସେ ଗ୍ରହରେ ପହଞ୍ଚିବାକୁ ଆମକୁ ପାଞ୍ଚ ବର୍ଷରୁ ଅଧିକ ଦିନ ଲାଗିବ ନାହିଁ; କିନ୍ତୁ ଆମର ଏହି ପାଞ୍ଚବର୍ଷ ଭିତରେ ଚନ୍ଦ୍ରପୃଷ୍ଠରେ କିମ୍ବା ପୃଥିବୀପୃଷ୍ଠରେ ଅଢ଼େଇ ହଜାର ବର୍ଷ ବିତିଯାଇଥିବ । ଅଭିଯାନରେ କିଛି ଅସୁବିଧା ହେଉ ନ ଥାଏ । ବେଶ୍ ସୁରୁଖୁରୁରେ ଆମେ ଆଗେଇ ଚାଲିଥାଉ । ଠିକ୍ ଏହି ପଥରେ ଯାଇ ଆଜକୁ ଦେଢ଼ଶହ ବର୍ଷ ତଳେ କାମରିନ୍‌ଙ୍କର ଯେଉଁ ଅବସ୍ଥା ହୋଇଥିଲା, ସେ ଅବସ୍ଥା ପ୍ରତି ମୋର ସହଯାତ୍ରୀ-ମାନଙ୍କର ଅଶେଷ ଭୟ ଥିଲେହେଁ ମୋର କିନ୍ତୁ ସେମିତି କିଛି ଭୟ ନଥାଏ । କାଳେ କେଉଁଠି କିଛି ବିପଦର ସମ୍ମୁଖୀନ ହେବୁ ସେଥିପାଇଁ ଆମ ଅଭିଯାନ ଉପରେ ପୂରା ଦୃଷ୍ଟି ରଖିଥାନ୍ତି ସିରସ୍ଥ ପର୍ଯ୍ୟବେକ୍ଷଣାଗାରର ବୈଜ୍ଞାନିକମାନେ ।

ସିରସ୍ ଛାଡ଼ିବା ଦୁଇ ମାସ ନ ପୁରୁଣୁ ହଠାତ୍ ଦିନେ ଚନ୍ଦ୍ରଲୋକରୁ ଏକ ବାର୍ତ୍ତା ଆସି ପହଞ୍ଚିଲା ମୋ ପାଖରେ । ବାର୍ତ୍ତାଟି ପଢ଼ି ମୁଁ ପାଗଳଭଳି ହୋଇଗଲି—ମୋ ସ୍ତ୍ରୀ ଜୟଶ୍ରୀଙ୍କର ମୃତ୍ୟୁ ହୋଇଛି, ଅପମୃତ୍ୟୁ ନୁହେଁ କି କୌଣସି ଦୁର୍ଘଟଣାଜନିତ ମୃତ୍ୟୁ ନୁହେଁ; ସାଧାରଣ ଭାବରେ ମୃତ୍ୟୁ ହୋଇଛି । ମାତ୍ର ଦୁଇମାସ ତଳେ ମୁଁ ଜୟଶ୍ରୀଙ୍କଠାରୁ ବିଦାୟ ନେଇ ଆସିଥିଲି—ଆଜି ସେ ମୃତ ! ଆଖିଆଗରେ ନାଚିଉଠିଲା ସେ ବିଦାୟକାଳୀନ ଦୃଶ୍ୟ । ବାର୍ତ୍ତାର ବାକି ଅଂଶଗୁଡ଼ିକ ପଢ଼ିବାକୁ ମୋର ଧୈର୍ଯ୍ୟ ନଥିଲା । ମୋର ଦୁଇ ଆଖିରୁ

ଝରଝର ହୋଇ ଲୁହ ବୋହିବାକୁ ଲାଗିଲା ।

କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ମନେ ମନେ ଭାବିଲି—ଜୟଶ୍ରୀଙ୍କର ମୃତ୍ୟୁ ହେତୁ ଶିଶୁ-ପୁତ୍ରଟି ମଧ୍ୟ ମୃତ୍ୟୁମୁଖରେ ପଡ଼ିଥିବ । ଏତେ ଛୋଟ ପିଲାଟିର ଲାଳନପାଳନ ଦାୟିତ୍ୱ କିଏ ବା ନେଇଥିବ ? କି ଦୁର୍ଯୋଗ ସତେ ! ଏହିଭଳି ମନେ ମନେ ଭାବି ଚାଲିଛି ହଠାତ୍ ପୁଣି ମନେ ପଡ଼ିଗଲା—ବାର୍ତ୍ତାରେ ଲେଖାଥିଲା 'ଜୟଶ୍ରୀଙ୍କର ମୃତ୍ୟୁ ଅପମୃତ୍ୟୁ ନୁହେଁ ।' ଆଶ୍ଚର୍ଯ୍ୟ ହୋଇ ବାର୍ତ୍ତାଟିର ବିଷୟବସ୍ତୁ ମନେ ମନେ ଭାବିହେଲି ।

ହଠାତ୍ ମନେ ପଡ଼ିଗଲା—ସତେ ତ ଏହା ଅପମୃତ୍ୟୁ କାହିଁକି ହେବ ? ଏ ତ ନିଶ୍ଚୟ ସ୍ୱାଭାବିକ ମୃତ୍ୟୁ ! ସଙ୍ଗେ ସଙ୍ଗେ ଗଣନା କରି ଦେଖିଲି ଆମର ଯାହା ଦୁଇମାସ, ଚନ୍ଦ୍ରଲୋକରେ ତାହା ହେଉଅଛି ପଚିଶ ବର୍ଷ । ତେଣୁ ପଚିଶ ବର୍ଷ ପରେ ଜୟଶ୍ରୀଙ୍କ ମରିବାରେ ବିଚିତ୍ରତା କଣ ? ଇତିମଧ୍ୟରେ ସେ ବାର୍ଦ୍ଧକ୍ୟର ଶେଷ ପର୍ଯ୍ୟାୟରେ ପହଞ୍ଚିଯାଇଥିବ । ଛୋଟ ପୁଅ ବିଷୟରେ କଣ ଲେଖାଥିବ, ଜାଣିବା ପାଇଁ ବାର୍ତ୍ତାଟିକୁ ପୁଣି ଥରେ ପୁଙ୍ଖାନୁପୁଙ୍ଖରୂପେ ପଢ଼ିଲି । ଦେଖିଲି, ବାର୍ତ୍ତାପ୍ରେରକ ମୋ ପୁଅ ନିଜେ । ସେଥିରେ ଲେଖାଥିଲା, 'ଜୟଶ୍ରୀଙ୍କ ମୃତ୍ୟୁର ଦୁଇବର୍ଷ ପୂର୍ବରୁ ଗୀତାରାଣୀ ମୃତ୍ୟୁବରଣ କରିସାରିଥିଲେ, ତାହାର ବହୁ ବର୍ଷ ପୂର୍ବରୁ ତାଙ୍କ ବାପା ବି । ଗୀତାରାଣୀଙ୍କ ପୁଅଝିଅମାନେ ବଡ଼ ହୋଇ ବିବାହ କରି ପୁତ୍ରକନ୍ୟାର ପିତାମାତା ହେଲେଣି । ମୋ ପୁଅର ପୁଅଝିଅମାନେ ଇତିମଧ୍ୟରେ ବଡ଼ ହୋଇ ସ୍କୁଲ କଲେଜକୁ ଗଲେଣି । ସମ୍ବାଦର ଏହି ଅଂଶଟି ପଢ଼ି ମନରେ ସାନ୍ତ୍ୱନା ଆସିଲା । ହିସାବ କରି ଦେଖିଲି, ମୋ ପୁଅକୁ ବୟସ ସେତେବେଳକୁ ପଚିଶ ବର୍ଷ ପାଖାପାଖି ।

ହୃଦୟ ଭିତରୁ ଏକ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା । ଜୀବନର ସଙ୍ଗିନୀ ଗଲା; ପୁଅ ଆସି ବୁଢ଼ା ହୋଇ ତାର ପୁଅଝିଅମାନେ ବଡ଼ ହୋଇ ସେମାନଙ୍କର ସଂସାର ଆରମ୍ଭ କରିବାକୁ ବସିଲେଣି । କି ବିଚିତ୍ର ଅନୁଭୂତି ! ମାସ ଦୁଇଟା ମଧ୍ୟରେ ଯଦି ଏତେଗୁଡ଼ାଏ ପରିବର୍ତ୍ତନ ହୋଇପାରେ, ଦଶବର୍ଷ ପରେ ଯେ କି ଅବସ୍ଥା ହୋଇଥିବ ଧାରଣା କରିହେଲା-ନାହିଁ । ଚନ୍ଦ୍ରଲୋକ ଓ ପିରସ୍ ଗ୍ରହାଣୁରେ ଥିବା ବୈଜ୍ଞାନିକ ଓ ମହାକାଶଯାତ୍ରୀମାନଙ୍କ ଭିତରୁ କେତେ ଯେ ମରି ଲୋପ ପାଇ ଯାଇ ସେମାନଙ୍କ ସ୍ଥାନରେ କେତେ ନୂଆ ବୈଜ୍ଞାନିକ ଓ ମହାକାଶଯାତ୍ରୀ ଯେ ଆସିଯିବେଣି ତାର ହିସାବ ରଖିବା କଷ୍ଟକର ।

× × ×

ଚନ୍ଦ୍ରଲୋକ ଛାଡ଼ିବା ଆମ ହିସାବ ଅନୁସାରେ ତିନି ବର୍ଷରୁ କିଛି ଅଧିକ ହୋଇଗଲାଣି । ମହାଶୂନ୍ୟର ନିର୍ଜନତା ଭିତରେ ରହି ରହି ଆମକୁ ଜୀବନ ଅତ୍ୟନ୍ତ ଦୁର୍ବହ ଜଣାପଡ଼ୁଥାଏ । କିଛି ନାହିଁ ସେ ମହାଶୂନ୍ୟରେ—କେବଳ ଘନ ଅନ୍ଧକାର । ଅନନ୍ତପଥର ଶେଷ ହେବାକୁ ନାହିଁ । ବେଳେବେଳେ ମହାଶୂନ୍ୟର ବିଭିନ୍ନ ରୂପ, ପାଖଆଖର ବିଭିନ୍ନ ଗ୍ରହ-ଉପଗ୍ରହ ଲକ୍ଷ୍ୟ କରି ଯାହା କିଛି ଆନନ୍ଦ ପାଉଥାଉଁ । ଠାଏ ଠାଏ ଧୂମକେତୁ, ଉଲ୍‌କା, ଲକ୍ଷ୍ୟହୀନ ଗ୍ରହାଣୁ ଆଦିକୁ ଆବିଷ୍କାର କରି ମୋହିତ ହୋଇପଡ଼ୁଥାଉ । ବେଳେବେଳେ ବଡ଼ ଅପୂର୍ବ

ଅନୁଭୂତ । ମହାକାଶ ଘନ ଅନ୍ଧକାରାଚ୍ଛନ୍ନ; କିନ୍ତୁ ଆକାଶରେ ଶତାଧିକ ସୂର୍ଯ୍ୟ କିରଣ ବିକିରଣରେ ବ୍ୟସ୍ତ । ଆମ ଯାନର କୋଠରି ଆଲୋକରେ ଝଲସି ଉଠୁଥାଏ । ଆକାଶକୁ ଅନାଇଁ ଖୁସି ହୋଇ ପଡ଼ୁଥାଉ । ଚନ୍ଦ୍ରର ଆକାଶରେ ଦେଖୁଥିଲୁ ଗୋଟିଏ ସୂର୍ଯ୍ୟ; କିନ୍ତୁ ଏଠାକାର ଆକାଶରେ ଶତାଧିକ ସୂର୍ଯ୍ୟ । ପୁଣି ଠାଏ ଠାଏ ସୂର୍ଯ୍ୟ ଦେଖିବାକୁ ନାହିଁ, ଆକାଶ ଘନ ଅନ୍ଧକାର, ଖାଲି ତାରାଗୁଡ଼ିଏ ହିଁ ଦେଖାଯାଉଥାନ୍ତି ।

କିଛି ଦିନ ପରେ ସିରସ୍ ଗ୍ରହାଣୁରୁ ଏକ ବାର୍ତ୍ତା ଆସି ଆମ ପାଖରେ ପହଞ୍ଚିଲା । କିନ୍ତୁ ତାହା ଅତ୍ୟନ୍ତ କରୁଣ । ଜଳାଭାବ ନେଇ ଚନ୍ଦ୍ରଲୋକରେ ସାଙ୍ଘାତିକ ସମସ୍ୟା ଦେଖାଦେଇଛି । ଆମେ ଚନ୍ଦ୍ର ଛାଡ଼ି ଆସିବା ଇତିମଧ୍ୟରେ ଦେଢ଼ହଜାରରୁ ଅଧିକ ବର୍ଷ ହୋଇଗଲାଣି । ଚନ୍ଦ୍ରଲୋକରେ ଯାହା ଜଳ ଥିଲା ତାହା ପୂରାପୂରି ଶେଷ ହୋଇଯାଇଛି । ପୃଥିବୀରୁ ଜଳ ଆଣି ସାମୟିକ ଭାବେ ଯୋଗାଇବା ଯୋଜନା ପଣ୍ଡ ହୋଇଛି । ପୃଥିବୀର ଲୋକସଂଖ୍ୟା ଏହା ମଧ୍ୟରେ ଏତେ ବଢ଼ିଯାଇଛି ଯେ ପୂର୍ବଭଳି ପୃଥିବୀକୁ ଯିବାକୁ ଆଉ କେହି ସାହସ କରୁନାହାନ୍ତି । ସାରା ଚନ୍ଦ୍ରଲୋକର ଅଧିବାସୀମାନଙ୍କୁ ଭୂମି ଉପରେ ରହିବାକୁ ଦିଆ ନଯାଇ ଭୂମି ଅଭ୍ୟନ୍ତରକୁ ନିଆଯାଇଛି । ବର୍ତ୍ତମାନ ଚନ୍ଦ୍ରପୃଷ୍ଠରେ କେହି ନାହାନ୍ତି । ନଦୀ ପୁଷ୍କରଣୀ ସବୁ ଶୁଖିଲା । ଚନ୍ଦ୍ରପୃଷ୍ଠରେ ଗଛଲତାଟିଏ ବି ନାହିଁ । ଜଳଖର୍ଚ୍ଚ ଓ ବାୟୁ ଖର୍ଚ୍ଚ କମ୍ ହେବା ପାଇଁ ସାରା ଜନସମାଜକୁ ଭୂମି ଅଭ୍ୟନ୍ତରକୁ ନିଆଯାଇ ଏକ ଆବଦ୍ଧ ବାୟୁମଣ୍ଡଳ ମଧ୍ୟରେ ରଖିବାକୁ ଚେଷ୍ଟା କରାଯାଇଛି । ସିରସ୍‌ର ବୈଜ୍ଞାନିକମାନେ କହିଲେ, ଚନ୍ଦ୍ରକୁ ଲକ୍ଷ୍ୟ କଲେ ଏହା ଏକ ଜୀବନ୍ତ ଉପଗ୍ରହ ପରିବର୍ତ୍ତେ ଏକ ମୃତ ଉପଗ୍ରହ ଭଳି ଜଣାପଡ଼ୁଛି । ଚନ୍ଦ୍ରପୃଷ୍ଠ ଖାଲି ବାଲୁକାମୟ । ସ୍ଥାନେ ସ୍ଥାନେ ପାହାଡ଼, ପର୍ବତ, ଶୁଷ୍କ ଗହ୍ୱର, ପ୍ରକାଣ୍ଡ ପ୍ରକାଣ୍ଡ ମରୁଭୂମି ଚନ୍ଦ୍ରକୁ ଏକ ମୃତ ଉପଗ୍ରହରେ ପରିଣତ କରିଛି । ଚନ୍ଦ୍ରର ଅଭ୍ୟନ୍ତରରେ ଏହାର ଅଧିବାସୀମାନେ ବସବାସ କରୁଥିଲେ ହେଁ, ଜଳ ଓ ବାୟୁ ଅଭାବଜନିତ ନାନାପ୍ରକାର ରୋଗ ଲୋକମାନଙ୍କ ଭିତରେ ଦେଖାଦେଇଛି; ଫଳରେ ମୃତ୍ୟୁହାର ଦିନକୁ ଦିନ ବଢ଼ିବାରେ ଲାଗିଛି । ସାରା ଚନ୍ଦ୍ରଲୋକ ଅଧିବାସୀମାନଙ୍କର ଆଶା ଭରସା ହେଉଛୁ ଆମେ । ଆମେ ଯଦି କୃତକାର୍ଯ୍ୟ ହୋଇ ଫେରିଆସୁ, ତେବେ ଚନ୍ଦ୍ରଲୋକର ଅଧିବାସୀମାନେ ରକ୍ଷାପାଇପାରିବେ । କିନ୍ତୁ କଣ କରିବୁ, ପଥ ସରିବାକୁ ନାହିଁ । କେ-ଏମ୍-ବି-୧୧ ଗ୍ରହରେ ପହଞ୍ଚିବାକୁ ଆହୁରି ଦୁଇବର୍ଷ ଲାଗିବ । ତା'ରି ଭିତରେ ଚନ୍ଦ୍ରଲୋକରେ ଆହୁରି ହଜାରେ ବର୍ଷ ବିତିଯାଇଥିବ । ତା'ପରେ ପୁଣି ଫେରିବାକୁ ଆହୁରି ପାଞ୍ଚବର୍ଷ । ଏହି ପାଞ୍ଚବର୍ଷ ଭିତରେ ଚନ୍ଦ୍ରଲୋକରେ ବିତିଯାଇଥିବ ଆହୁରି ଅଢ଼େଇ ହଜାର ବର୍ଷ । ତେଣୁ ଏତେ ବର୍ଷ ଭିତରେ ଚନ୍ଦ୍ରଲୋକର ଅବସ୍ଥା ଯେ କଣ ହୋଇଥିବ ଆମେ ଭାବି ପାରିଲୁ ନାହିଁ ।

× × ×

କେ-ଏମ୍-ବି-୧୧ ଗ୍ରହ ବେଶ୍ ପାଖେଇ ଆସିଲା । ବେଳକୁ ବେଳ ଏହି ଗ୍ରହର ସୂର୍ଯ୍ୟ

ସମ୍ଭବ ହେଉ ନ ଥିଲା—ପୃଥିବୀ ଓ ଚନ୍ଦ୍ର ମଧ୍ୟରେ ଏକ ବିରାଟ ପ୍ରଭବସ୍ତୁ ଧୂମକେତୁ ଅବସ୍ଥାନ କରି ଚନ୍ଦ୍ର ଓ ପୃଥିବୀର ପଥକୁ ପୁରାପୂରି ଅବରୋଧ କରିଥିଲା । ଏହି ଧୂମକେତୁର କେତେକ ଅଂଶ ଛିନ୍ନ ହୋଇ ପୃଥିବୀ ତଥା ଚନ୍ଦ୍ରର ବିଭିନ୍ନ ଅଂଶକୁ ଆଘାତ କରି ଆଂଶିକ ଧ୍ୱଂସଲୀଳା ସୃଷ୍ଟି କରିଥିଲା । ଏହି ଦୁର୍ଘଟଣା ପରେ ଚନ୍ଦ୍ରର ଲୋକେ ଅତ୍ୟଧିକ ଭୟଭୀତ ହୋଇପଡ଼ିଥିଲେ । ତେଣୁ ସେଭଳି ପରିସ୍ଥିତିରେ ପୃଥିବୀରୁ ଜଳ କି ବାୟୁ ଆଣିବା ସମ୍ଭବପର ହୋଇ ନଥିଲା । ଏହି ଧୂମକେତୁଟି ବହୁ ବର୍ଷଧରି ଚନ୍ଦ୍ରର ପଥ ଅବରୋଧ କରିଥିବାରୁ ଜଳ ଓ ବାୟୁର ଅଭାବରୁ ଚନ୍ଦ୍ରର ଲୋକସଂଖ୍ୟା କମିବାରେ ଲାଗିଲା ।

ଚନ୍ଦ୍ରର ଏମିତି ବିପଦ ସମ୍ବାଦ ପାଇ ମୁଁ ଆମ ଯାନର ବେଗ ଆହୁରି ବଢ଼ାଇଦେଲି; କିନ୍ତୁ ଆମର ଦୁଇ ତିନି ଦିନ ସମୟ ଭିତରେ ଚନ୍ଦ୍ରଲୋକରେ ଯେ କେତୋଟି ବର୍ଷ ବିତିଯାଇଥିବ, ଏକଥା ଭାବିଲାବେଳକୁ ମନ ବିଷାଦରେ ପୂରିଯାଉଥାଏ । ପ୍ରତି ମୁହୂର୍ତ୍ତରେ ଆମେ ଚନ୍ଦ୍ରର ଖବର ସଂଗ୍ରହ କରୁଥାଉ । ଚନ୍ଦ୍ରରେ ମୃତ୍ୟୁସଂଖ୍ୟା ମୁହୂର୍ତ୍ତକୁ ମୁହୂର୍ତ୍ତ ଯେମିତି ଭାବରେ ବଢ଼ିବାରେ ଲାଗିଥାଏ, ଆମର ଭୟ ହେଉଥାଏ ଆମେ ଚନ୍ଦ୍ରଲୋକରେ ପହଞ୍ଚିବା ପୂର୍ବରୁ ଚନ୍ଦ୍ରର ସମସ୍ତ ଅଧିବାସୀ ହୁଏତ ଧ୍ୱଂସ ପାଇଯାଇଥିବେ । ମନ ବଡ଼ ଦୁର୍ଭାବନାରେ ପୂରିଗଲା । ଏତେ କଷ୍ଟ କରି ଆମେ ଯେଉଁ ସବୁ ଆବିଷ୍କାର କଲୁ, ତାହା କଣ ଚନ୍ଦ୍ରଲୋକର କିଛି ଉପକାରରେ ଆସିବ ନାହିଁ ? ଏହାଠାରୁ ବଳି ଦୁଃଖ ଆଉ କଣ ହୋଇପାରେ ଆମର ?

× × ×

ଯଥାସମୟରେ ଆମ ମହାଶୂନ୍ୟଯାନ ଅବତରଣ କଲା ସିରସ୍ ମହାଶୂନ୍ୟଘାଟୀରେ । କିନ୍ତୁ ଆମକୁ ସ୍ୱାଗତ କରିବା ପାଇଁ ସିରସ୍‌ରେ ଜଣେ ସୁଦ୍ଧା କେହି ବଞ୍ଚି ନଥିଲେ । ସେଠାକାର ମହାଶୂନ୍ୟଘାଟୀ, ପର୍ଯ୍ୟବେକ୍ଷଣାଗାର ଆଦି ଭାଙ୍ଗି ଧୂଳିରେ ମିଶିଯିବା ଉପରେ —ଅନ୍ୟୂନ ପଚାଶ ବର୍ଷ ହେଲା ଯେମିତି ସେଠାକାର ମହାଶୂନ୍ୟଘାଟୀଟି ଧ୍ୱଂସ ପାଇଗଲାଣି, ସେମିତି ଜଣାପଡ଼ୁଥାଏ । ସିରସ୍‌ରୁ ଚନ୍ଦ୍ରଲୋକକୁ ଯିବାପାଇଁ କୌଣସି ଯାନ ଦେଖିଲୁ ନାହିଁ । ତେଣୁ ବାଧ୍ୟ ହୋଇ ମହାଶୂନ୍ୟଯାନରେ ଗଲୁ ଚଂଦ୍ର ଅଭିମୁଖେ ।

ଚନ୍ଦ୍ରଲୋକରେ ପହଞ୍ଚି ଯାହା ଦେଖିଲୁ ସେଥିରେ ଆମ ଆଖି ଖୋସିହୋଇଗଲା । ଚଂଦ୍ରଲୋକ ଏକ ଶୁଷ୍କ ମରୁଭୂମିରେ ପରିଣତ ହୋଇଛି । ଚାରିଆଡ଼େ ପାହାଡ଼, ପର୍ବତ, ଆଗ୍ନେୟଗିରି ମୁଖ, ଶୁଷ୍କ ନଦନଦୀ, ଶୁଷ୍କ ସାଗର ଓ ପୁଷ୍କରିଣୀ ଆଦି ପଡ଼ିରହିଛି । ଚାରିଆଡ଼ ଧୂଳିରେ ପୂର୍ଣ୍ଣ—ଦେଖିଲେ ମନେହେବ ଯେମିତି ଏଠି କେବେ ଜନବସତି ନଥିଲା । ମନେ ମନେ ଭାବିଲି, ଚନ୍ଦ୍ରର ଲୋକେ ତ ଭୂମି ଭିତରେ ଅବସ୍ଥାନ କରୁଛନ୍ତି, ଭୂମି ଉପରେ ଅଧିକ କଣ ଆଉ ଦେଖିବାକୁ ପାଇବୁ ? ତଳକୁ ଗଲେ ସେମାନଙ୍କୁ ଦେଖିବାକୁ ପାଇବୁ ନିଶ୍ଚୟ । ତେଣୁ କାଳବିଳମ୍ବ ନକରି ଭୂମି ଭିତରକୁ ପଶିବାକୁ ଲାଗିଲୁ; କିନ୍ତୁ କି ଅଦ୍ଭୁତ ! ପାଞ୍ଚହଜାର ବର୍ଷ ତଳେ ଯେଉଁ ଚନ୍ଦ୍ରର ଭୂମି ଅଭ୍ୟନ୍ତର ଆଲୋକମାଳାରେ ଉଦ୍ଭାସିତ ହୋଇ

ଝଲମଲ ହସିଉଠୁଥିଲା, ଆଜି ସେଠି ଘନ ଅନ୍ଧକାର । ଆହୁରି ଭିତରକୁ ପଶିବାକୁ ଚେଷ୍ଟା କଲୁ ସେ ଅନ୍ଧକାର ଭିତରେ; କିନ୍ତୁ ଭିତରେ ପୂରାପୂରି ଜନମାନବଶୂନ୍ୟ । ମଣିଷ କିମ୍ବା ଜନ୍ତୁର ସ୍ୱର ଶବ୍ଦଟିଏ ବି ନାହିଁ । ସ୍ଥାନେ ସ୍ଥାନେ ଭୂମି ଅଭ୍ୟନ୍ତର ଭୂମିକମ୍ପ ବଡ଼ବଡ଼ ଗହ୍ୱର ସୃଷ୍ଟି କରିଛି । ଚାରିଆଡ଼େ ମଣିଷର ଶବ ପଡ଼ିରହିଛି; ଜଣାପଡୁଛି ସେହି ଶବ ଯେମିତିକି ବହୁଦିନର । ସେଥିଭିତରୁ କେତେ ମାଟି ସହିତ ମିଳାଇଯିବାକୁ ବସିଲାଣି । ଚନ୍ଦ୍ରର ଅଭ୍ୟନ୍ତରରେ ସହର ପରେ ସହର ଅତିକ୍ରମ କରିବାକୁ ଲାଗିଲୁ । ଆମ ଅଭିଯାନର କୃତକାର୍ଯ୍ୟତା କଥା ଶୁଣାଇବା ପାଇଁ ଜଣେସୁଦ୍ଧା ଲୋକ ସେଠ ପାଇଲୁ ନାହିଁ ।

ଆମେ ପାଞ୍ଚଜଣ ଏମିତି ଆଗେଇ ଚାଲିଛୁ, ହଠାତ୍ ଏକ ଗଁ-ଗଁ ଶବ୍ଦ ଶୁଣି ଚମକି ପଡ଼ିଲୁ । ମନେହେଲା କିଏ ଯେମିତି ମୃତ୍ୟୁ ସହିତ ତୁମୁଳ ସଂଗ୍ରାମ ଲଗାଇଛି ଆମଠାରୁ ଅଳ୍ପ ଦୂରରେ । ଖୋଜି ଖୋଜି ଯାଇ ଦେଖିଲୁ ଏକ ଦୀର୍ଘକାୟ ଯୁବକ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିରହିଛି ଓ ତୃଷାରେ ଅସ୍ଥିର ହୋଇ ତୁମୁଳ ସଂଗ୍ରାମ ଚଳାଇଛି ମୃତ୍ୟୁ ସହିତ । ଭୂମିକମ୍ପ ପଡ଼ିଥିବା ସ୍ଥାନଟି ଏକ ଗହ୍ୱରଠାରୁ ବେଶି ଦୂର ନୁହେଁ । ଭୂମି ଉପର ଆଲୋକ ବେଶ୍ ପରିଷ୍କାରଭାବରେ ଆସୁଛି ସେଠାକୁ । ବେଳେବେଳେ ଅସ୍ପଷ୍ଟ ସ୍ୱରରେ ସେ ଚିତ୍କାର କରି ଉଠୁଛି, "ପାଣି ଦିଅ, ପାଣି ଦିଅ ।" ଆମ ପାଖରେ ଥିବା ପାଣିରୁ କିଛି ଯୁବକଟିର ମୁହଁରେ ସଙ୍ଗେ ସଙ୍ଗେ ଅଜାଡ଼ି ଦେଲୁ । ମନେହେଲା ପାଣି ପାଇ ଯୁବକଟିର ପ୍ରାଣ ବଞ୍ଚିଗଲା । ଯୁବକଟି ଆଖି ମେଲାଇଲା । ଅସ୍ପଷ୍ଟ ସ୍ୱରରେ ସେ ପ୍ରଳାପ କରିବାରେ ଲାଗିଲା, କିଏ ଅଛ ? କିଏ ଅଛ ଏଠି ? ମୋର ଶେଷବାର୍ତ୍ତା ଗ୍ରହଣ କର । ମୁଁ ଆଉ ବଞ୍ଚିପାରୁନି । ମୋର ଏହି ବାର୍ତ୍ତା ପହଞ୍ଚାଇଦେବ ମୋର ଶତତମ ପିତାମହଙ୍କଠାରେ । ସେ ଯାଇଛନ୍ତି ସୁଦୂର ମହାଶୂନ୍ୟ ଅଭିଯାନରେ; ଫେରିଆସୁଛନ୍ତି ନିଶ୍ଚୟ । ଚନ୍ଦ୍ରଲୋକର ଅଧିବାସୀଙ୍କୁ ରକ୍ଷା କରିବା ପାଇଁ ସେ ଯାଇଛନ୍ତି ଦୂର ମହାଶୂନ୍ୟ ଅଭିଯାନରେ । ତାଙ୍କୁ ବୋଧେ ଜାଣିନାହାନ୍ତି ଆପଣ । ତାଙ୍କ ନାଁ ହେଉଛି ଉତ୍କଳାବର୍ତ୍ତି । ତାଙ୍କର ଶତତମ ବଂଶଧର ମୁଁ—ଏତିକି ତାଙ୍କୁ କହିବେ । ତାଙ୍କୁ ସାକ୍ଷାତ୍ କରିବାପାଇଁ ଆମେ ବଞ୍ଚିରହିଥିଲୁ ତାଙ୍କର ଅଢ଼େଇ ହଜାର ବଂଶଧର । କିନ୍ତୁ ସମସ୍ତେ ଚାଲିଯାଇଛନ୍ତି । ମୁଁ ବି ଚାଲିଯାଉଛି । ହେଇ, ମୋର ଭାଇମାନେ ମୋତେ ଡାକୁଛନ୍ତି ସେମାନଙ୍କ ପାଖକୁ ଚାଲିଯିବାକୁ । ତେବେ ମୋର ଏତିକିମାତ୍ର ପ୍ରାର୍ଥନା, ମୋର ଏହି ବାର୍ତ୍ତାଟି ଯେମିତି ପହଞ୍ଚେ ମୋର ଶତତମ ପିତାମହଙ୍କ ଠାରେ । ଆହୁରି ତାଙ୍କୁ କହିବେ, ଚନ୍ଦ୍ରର ଅଧିବାସୀମାନେ ତାଙ୍କର ଫେରନ୍ତା ବାଟକୁ ଅନାଇଁ ପ୍ରାଣତ୍ୟାଗ କଲେ । ତାଙ୍କୁ ସ୍ୱାଗତ କରିବା ପାଇଁ ମୃତ୍ୟୁ ସହିତ ତୁମୁଳ ସଂଗ୍ରାମ ଚଳାଇ ତାଙ୍କ ବଂଶଧରମାନେ ଗୋଟିକ ପରେ ଗୋଟିଏ ଢଳିପଡ଼ିଲେ । ସେମାନେ ବିଜୟୀ ହୋଇପାରିଲେନି । ମୃତ୍ୟୁଠାରେ ସେମାନଙ୍କୁ ହାର ମାନିବାକୁ ପଡ଼ିଲା । ଆମର ଦୁଃଖ ରହିଗଲା, ଆମେମାନେ ତାଙ୍କୁ ସ୍ୱାଗତ କରିପାରିଲୁ ନାହିଁ । ଚନ୍ଦ୍ର ଆଜି ମୃତ ।

ପ୍ରଳାପ କରୁ କରୁ ଢଳିପଡ଼ିଲା ଯୁବକଟି । ତାର ଶେଷ ବାୟୁଟିକକ ବାହାରିଯାଇ

ମିଳାଇଗଲା ଚନ୍ଦ୍ରର ଦନକୁଦନ ହାଲୁକା ହୋଇ ଆସୁଥିବା ବାୟୁମଣ୍ଡଳ ସହିତ । ମୋର ସହଯାତ୍ରୀମାନେ ମୋ ଆଡ଼କୁ ମୁହଁ ଟେକି ଅନାଇଲେ । କାହାରି ମୁହଁରେ ଭାଷା ନାହିଁ । ସମସ୍ତେ ନୀରବ ।

ମୋ ଆଖି ସେତେବେଳକୁ ଲୋତକରେ ପୂରିଯାଇଥିଲା । ଏହି ଯୁବକଟିର ମରଣ ପରଠାରୁ ଚନ୍ଦ୍ରଲୋକ ହେଲା ଜନଶୂନ୍ୟ । ଚନ୍ଦ୍ର ପଡ଼ିରହିଲା ଏକ ମୃତ ଉପଗ୍ରହ ଭାବରେ ।

× × ×

ଚନ୍ଦ୍ରର ଏଭଳି ଅପମୃତ୍ୟୁ ଦେଖି ଆମେ ସମସ୍ତେ ଅବାକ୍ । ଚନ୍ଦ୍ରଲୋକର ଶେଷ ଜୀବିତ ଯୁବକଟି ମୋ ବଂଶଧର ଭାବରେ ପରିଚୟ ଦେଇ ଯେମିତି ଭାବରେ ମୃତ୍ୟୁମୁଖୀ ହେଲା, ମୋ ହୃଦୟରେ ତାହା ରଖିଦେଇଗଲା ଏକ ଅଲିଭା ଦାଗ । ଚନ୍ଦ୍ର ଅଭ୍ୟନ୍ତରର ଗୃହଆଡ଼େ କେବଳ ଶ୍ମଶାନଭୂମି ଛଡ଼ା ଆଉ କିଛି ନାହିଁ । ଆମର ଏଠି ରହିବା ଅର୍ଥ ମୃତ୍ୟୁବରଣ କରିବା; ତେଣୁ ଆମେ ଅତି ଶୀଘ୍ର ଚନ୍ଦ୍ର ପରିତ୍ୟାଗ କରିବାପାଇଁ ଠିକ୍ କଲୁ । ମୃତ ଚନ୍ଦ୍ରଲୋକରେ ଆଉ ଅଧିକ ଦିନ ନ ରହିବା ବିଜ୍ଞତାର ବିଷୟ ଭାବି ଶୀଘ୍ର ଶୀଘ୍ର ଏହି ଉପଗ୍ରହକୁ ତ୍ୟାଗ କରିବା ଯୋଗାଡ଼ରେ ଲାଗିପଡ଼ିଲୁ ।

ଆମର ସମସ୍ୟା ହେଲା ଚନ୍ଦ୍ର ଛାଡ଼ିବୁ ସତ; କିନ୍ତୁ ଯିବୁ କୁଆଡ଼େ ? ସହଯାତ୍ରୀମାନଙ୍କର ଇଚ୍ଛା ଆମେ ସମସ୍ତେ ପୁଣି ଫେରିଯିବା କେ-ଏମ୍-ବି-୧୧ ଗ୍ରହକୁ । କିନ୍ତୁ ମୋର ଇଚ୍ଛା ପୃଥିବୀକୁ ଫେରିଯିବାକୁ; ମାତ୍ର ମୋର ସହଯାତ୍ରୀମାନେ ପୃଥିବୀକୁ ଆସିବାକୁ ପୂରାପୂରି ଅନିଚ୍ଛୁକ । ସହଯାତ୍ରୀମାନଙ୍କ ଇଚ୍ଛାକୁ ମୁଁ ଏଡ଼ିଦେଉଛି ବା କିପରି ? ତେବେ ନାନା ଆଲୋଚନା ପରେ ଠିକ୍ ହେଲା ଆମେ କିଛି ସମୟ ପାଇଁ ପୃଥିବୀପୃଷ୍ଠକୁ ବୁଲିଯିବୁ । ସେଠାକାର ଅବସ୍ଥା ଲକ୍ଷ୍ୟକରି ଯଦି ରହିବାର ଅନୁକୂଳ ଅବସ୍ଥା ନଦେଖୁ, ତେବେ ଆମ ଆବିଷ୍କୃତ ନୂତନ ଗ୍ରହଟିକୁ ଫେରିଯିବୁ । ମୋର ସହଯାତ୍ରୀମାନେ ପୃଥିବୀକୁ ଯିବାପାଇଁ ଏତେ ଅନିଚ୍ଛୁକ ଥିଲେ ଯେ ସେମାନେ ମୋତେ ପୃଥିବୀରେ ଓହ୍ଲାଇ ଦେଇ ସୌରଜଗତର ଅନ୍ୟ ଗ୍ରହ ସବୁର ଅବସ୍ଥା ଲକ୍ଷ୍ୟ କରିବାକୁ ବୁଲିଯିବେ ଓ ସେଠାରୁ ଫେରି ମୋତେ ପୃଥିବୀରୁ ନେଇ କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଫେରିଯିବେ । ସହଯାତ୍ରୀମାନଙ୍କର ଇଚ୍ଛା ଯେତେବେଳେ ଏଇଆ, ମୁଁ ବା କାହିଁକି ସେଥିରୁ ଭିନ୍ନ ହୁଅନ୍ତି । ତେଣୁ ସେମାନଙ୍କ କଥାରେ ହିଁ ଶେଷରେ ରାଜି ହେଲି ।

ଆଉ ବିଶେଷ ଡେରି ନକରି ପୃଥିବୀ ଅଭିମୁଖେ ଯିବାପାଇଁ ବାହାରିଲୁ । ଗତ ପଚାଶ-ବର୍ଷ ତଳେ ଯେଉଁ ପ୍ରତିବନ୍ଧ ଧୂମକେତୁ ଚନ୍ଦ୍ର ଓ ପୃଥିବୀର ରାସ୍ତାକୁ ଅବରୋଧ କରି ରହିଥିଲା, ତାହା ସେତେବେଳକୁ ଖୋଲିଯାଇଥାଏ । ତେଣୁ ଚନ୍ଦ୍ର ଓ ପୃଥିବୀ ଭିତରେ ରାସ୍ତା ବେଶ୍ ପରିଷ୍କାର । ଚନ୍ଦ୍ରପୃଷ୍ଠରୁ ଶେଷ ବିଦାୟ ନେଇ ଆମେ ବସିଲୁ ଆଉ ଏକ ମହାଶୂନ୍ୟ-ଯାନରେ । ଆସିଲାବେଳେ ମୋ ଅତୀତ ଜୀବନ କଥା ଭାବି ଭାବି ଅଥୟ ହୋଇ ପଡ଼ୁଥିଲି ।

ଏହା ସେହି ଉପଗ୍ରହ, ଯାହା ସହିତ ମୋର ସମ୍ପର୍କ ଗତ ପାଞ୍ଚହଜାର ବର୍ଷଧରି ରହିଆସିଛି । ମହେଞ୍ଜୋଦାରୋର ଏକ ସାଧାରଣ ଶ୍ରମିକ ଅବସ୍ଥାରୁ ଉଠି ଉଠି ଚନ୍ଦ୍ରଲୋକର ଶ୍ରେଷ୍ଠ ମହାକାଶଗୃଷ୍ଟା ଭାବରେ ଖ୍ୟାତି ଅର୍ଜନ କରିବା କମ୍ ସୌଭାଗ୍ୟର ବିଷୟ ନୁହେଁ । ମୋ ଜୀବନର ସବୁ କିଛି ଚନ୍ଦ୍ର ସହିତ ଜଡ଼ିତ ହୋଇପଡ଼ିଥିଲା । ଗୃହୁଁ ଗୃହୁଁ ଘିଙ୍ଗରନା, ଜମ୍ବୁଶାଙ୍ଖ ଓ ହଜାର ହଜାର ବର୍ଷତଳର ନାନା ଅନୁଭୂତି ସ୍ମୃତିପଟରେ ଜାଗିଉଠିଲା । ଶାଙ୍ଗରନା, କେବଳପ୍ରାପ୍ତ ଓ ଶାଙ୍ଗରନା କିଛି ସମୟ ପାଇଁ ସ୍ମୃତିପଟରେ ଦେଖାଦେଇ ପୁଣି କେଉଁଆଡ଼େ ଉଭେଇଗଲେ ।

ପୃଥିବୀରେ ପହଞ୍ଚିବାକୁ ବେଶି ସମୟ ଲାଗିଲା ନାହିଁ । ଅଳ୍ପ କେଇଘଣ୍ଟା ଭିତରେ ପୃଥିବୀର ବେଶ୍ ପାଖରେ ଆସି ପହଞ୍ଚିଗଲୁ । ଚନ୍ଦ୍ରପୃଷ୍ଠରେ ଆମ ମହାଶୂନ୍ୟଯାନଟିକୁ ରଖିଦେଇ ସେଠାରେ ପଡ଼ିରହିବା ଟା ଗୋଟାଏ ସାଧାରଣ ମହାକାଶଯାନ ଧରି ଆସିଥିଲୁ ପୃଥିବୀ ଅଭିମୁଖେ । ପରେ ଚନ୍ଦ୍ରକୁ ଫେରିଯାଇ ସେଠାରୁ ଆମ ମହାଶୂନ୍ୟଯାନ ଧରି କେ-ଏମ୍-ବି-୧୧ ଗ୍ରହ ଅଭିମୁଖେ ଯିବୁବୋଲି ଠିକ୍ କରିଥିଲୁ ।

ପୃଥିବୀ ପାଖେଇ ଆସିଲା ସିନା; କିନ୍ତୁ ପୃଥିବୀର କେଉଁ ସ୍ଥାନରେ ଓହ୍ଲାଇବୁ ଠିକ୍ କରିପାରିଲୁ ନାହିଁ । ଯେଉଁ ଆଡ଼କୁ ଚାହିଁଲୁ ସେଆଡ଼େ ଦେଖିଲୁ ଘରଦ୍ୱାର କୋଠାବାଡ଼ି ପୂର୍ଣ୍ଣ । ସମୁଦ୍ର, ପର୍ବତ, ବଣ, ପାହାଡ଼ ସବୁଆଡ଼ ଲୋକପୂ । ଗତ ପାଞ୍ଚହଜାର ବର୍ଷ ଭିତରେ ପୃଥିବୀରେ ଢେର୍ ପରିବର୍ତ୍ତନ ହୋଇଯାଇଛି । ମୁଁ ପୃଥିବୀ ଛାଡ଼ିଲାବେଳେ ପୃଥିବୀ ଅତି ନିଛାଟିଆ ଥିଲା । ଏଇ କେତେବର୍ଷ ଭିତରେ ପୃଥିବୀର ଏ ବିରାଟ ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ ନହୋଇ ରହିପାରିଲି ନାହିଁ । ବହୁତ ଖୋଜି ଖୋଜି ଏଇ ନିର୍ଜନ ସ୍ଥାନଟିରେ ମୋତେ ଓହ୍ଲାଇ ଦେଇ ମୋ ବନ୍ଧୁମାନେ ଯାଉଛନ୍ତି ମଙ୍ଗଳଗ୍ରହ ଅଭିମୁଖେ । ଅଳ୍ପ କେଇଦିନ ପରେ ସେମାନେ ଏଠାକୁ ଫେରିଆସି ମୋତେ ନେଇଯିବେ । ଆମକୁ·····

## ଏକୋଇଶ

ନବାଗତର ବକ୍ତବ୍ୟକୁ ଏମିତିଭାବରେ ଅନୁବାଦ କରିଚାଲିଛି, ହଠାତ୍ ଅଟକିଗଲି । କାହିଁକି ନା, ନବାଗତ କ'ଣ କହିବାକୁ ଯାଉଥିଲା, ନକହି ଚୁପ୍ ରହିଗଲା । କଣ ଅନୁବାଦ କରି, ପୁଣି ଥରେ ପଢ଼ି ତାହା ହୃଦୟଙ୍ଗମ କରିବାକୁ ଚେଷ୍ଟାକଲି ।

ନବାଗତ କହୁଛି—ତା'ର ସଙ୍ଗୀମାନେ ମଙ୍ଗଳଗ୍ରହରୁ ଫେରି ତାକୁ ନେଇଯିବେ । ସେ ଆଉ ପୃଥିବୀରେ ରହୁନି ବେଶି ସମୟ ।

ମୋ ଅଲକ୍ଷିତରେ ମୋ ଅନୁବାଦ ଲେଖାଗୁଡ଼ିକ ଟେବୁଲ ଉପରୁ ଚାଲିଗଲା ସାମରିକ କର୍ତ୍ତୃପକ୍ଷଙ୍କ ନିକଟକୁ । ମନେ ମନେ ଭାବିଲି, ଉତ୍କଳାବର୍ତ୍ତିର ବକ୍ତବ୍ୟର ଏହି ଶେଷ ଅଂଶକୁ ଅନୁବାଦ ନ କରିଥିଲେ ଭଲ ହୋଇଥାନ୍ତା । ତାହାର ଉଦ୍ଦେଶ୍ୟ ଜାଣିଲେ ସାମରିକ କର୍ତ୍ତୃପକ୍ଷ କଣ ତାକୁ ସହଜରେ ଛାଡ଼ିଦେବେ ?

ଉତ୍କଳାବର୍ତ୍ତିକୁ ପଚାରିଲି—ତୁମେ କଣ ଭାବୁଛ, ଏମାନେ ତୁମକୁ ସହଜରେ ଛାଡ଼ିଦେବେ ? ଏମାନଙ୍କଠାରୁ ଯିନା ମୁକ୍ତି ପାଇଲେ ତୁମେ ତୁମ ବନ୍ଧୁମାନଙ୍କ ସହ ଯାଇ-ପାରିବ ଚନ୍ଦ୍ର ଅଭିମୁଖେ ?

କାହିଁକି ?—ଉତ୍କଳାବର୍ତ୍ତିର ମୁହଁରେ ଆଶଙ୍କାର ଭାବ—ମୁଁ ତ ଏମାନଙ୍କର କିଛି କ୍ଷତି କରିନାହିଁ ? ମୋତେ ଏମାନେ ଏଠାରୁ ଚାଲିଯିବା ପାଇଁ ଦେବେନାହିଁ କାହିଁକି ? ମୁଁ ଯିନା ଏ ପୃଥିବୀର ଲୋକ ଥିଲି ଆଜକୁ ପାଞ୍ଚହଜାର ବର୍ଷ ତଳେ, ବର୍ତ୍ତମାନ ତ ମୁଁ ଏ ପୃଥିବୀର ଲୋକ ନୁହେଁ ।

—ତୁମେ ଯିନା ଏକଥା କହୁଛ ଉତ୍କଳାବର୍ତ୍ତି ! କିନ୍ତୁ ଏମାନେ ତ ତା' କହୁନାହାନ୍ତି । ସେମାନେ ତୁମକୁ ଏକପ୍ରକାର ଅଟକବନ୍ଦୀ ଭାବରେ ରଖିଛନ୍ତି ।

ଅଟକବନ୍ଦୀ ? ମୋତେ—ମୁହଁରେ ଉପହାସର ଭାବ—ମୋତେ ବନ୍ଦୀ କଲେ ଏମାନଙ୍କର କଣ ଲାଭ ହେବ ?

—ବହୁତ ଲାଭ ହେବ ଉତ୍କଳାବର୍ତ୍ତି, ବହୁତ ଲାଭ ହେବ ଏମାନଙ୍କର । ତୁମେ ଜାଣିନ, ଆମେରିକା-ଯୁକ୍ତରାଷ୍ଟ୍ର ସରକାର ବର୍ତ୍ତମାନ ଚନ୍ଦ୍ର ଅଭିମୁଖେ ଅଭିଯାନ ଆରମ୍ଭ କରୁଛନ୍ତି । ସେମାନଙ୍କର ଅଭିଯାନବେଳେ ତୁମର ସାହାଯ୍ୟ ପାଇଲେ ସେମାନେ ଖୁବ୍ ଉପକୃତ ହେବେ । ସେମାନଙ୍କର ବିଶ୍ୱାସ, ଯେହେତୁ ତୁମେ ଚନ୍ଦ୍ରଲୋକରୁ ଆସିଛ, ତୁମେ ଚନ୍ଦ୍ର-ଲୋକର ନାନାଦି କଥା ଓ ସୁବିଧା ଅସୁବିଧା କଥା କହିପାରିବ । ତୁମ ସାହାଯ୍ୟ ପାଇପାରିଲେ ସେମାନେ ରୁଷୀୟମାନଙ୍କ ପୂର୍ବରୁ ଚନ୍ଦ୍ରଲୋକରେ ପହଞ୍ଚି ପାରିବେ ।

ରୁଷୀୟ ? ସେମାନେ ପୁଣି କିଏ ?—ଉତ୍କଳାବର୍ତ୍ତି ପଚାରିଲା ।

—ମହାଶୂନ୍ୟ ଅଭିଯାନରେ ଆମେରିକାନ୍‌ମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ହେଉଛନ୍ତି ଏମାନେ । ବର୍ତ୍ତମାନ ମହାଶୂନ୍ୟ ଅଭିଯାନ ନେଇ ଏ ଦୁଇ ଦେଶ ଭିତରେ ଭୀଷଣ ପ୍ରତିଦ୍ୱନ୍ଦ୍ୱିତା ଲାଗିଛି । ତୁମେ ଯେଉଁ ଆର୍ଯ୍ୟବଂଶଜ, ସେଇ ଆର୍ଯ୍ୟମାନେ ଏକସମୟରେ ଥିଲେ ଏହି ରାଷ୍ଟ୍ରର ଦକ୍ଷିଣାଞ୍ଚଳରେ ।

—କିନ୍ତୁ ଚନ୍ଦ୍ର ଅଭିଯାନ ପାଇଁ ଏମାନେ ଏତେ ଲାଳାୟିତ କାହିଁକି ? ଯେଉଁ ଉପଗ୍ରହକୁ ଆମେ ପରିତ୍ୟାଗ କରି ଚାଲିଆସିଛୁ, ଯେଉଁ ଉପଗ୍ରହ ବର୍ତ୍ତମାନ ପୂରାପୂରି ମୃତ, ଯେଉଁଠି ଜୀବଜଗତ ତିଷ୍ଠିବା ଅସମ୍ଭବ ହୋଇଉଠିଛି, ସେଠାକୁ ଏମାନେ ଯାଇ କି ଲାଭ ପାଇବେ ? ମୋର ଏ ଅଭିଜ୍ଞତା ଶୁଣିବା ପରେ ସେମାନେ ଚନ୍ଦ୍ରାଭିଯାନରୁ କଣ କ୍ଷାନ୍ତ ହେବେ ନାହିଁ ?

ଉଜ୍ଜ୍ୱଳାବର୍ତ୍ତି ସହିତ ମୋତେ ଆଉ ଅଧିକ କଥାବାର୍ତ୍ତା କରିବାକୁ ଦିଆଗଲା ନାହିଁ । ଉଜ୍ଜ୍ୱଳାବର୍ତ୍ତିକୁ ଗୋଟିଏ ଘରେ ଆବଦ୍ଧ କରି ସେହି ଘରକୁ ସଶସ୍ତ୍ର ପ୍ରହରୀଦ୍ୱାରା ଜଗାଇ ଦିଆଗଲା ଓ ତାହାକୁ ହରଣଚାଲ କରିବାପାଇଁ କେହି ଯେପରି ଉଦ୍ୟମ ନ କରେ, ସେଥି-ପାଇଁ ଅତ୍ୟନ୍ତ ସତର୍କଭାବରେ ଦୃଷ୍ଟି ରଖିବାକୁ ଆଦେଶ ଦିଆଗଲା ସାମରିକ କର୍ତ୍ତୃପକ୍ଷଙ୍କୁ ।

## ଉପସଂହାର

"ସକାଳୁ ଉଠି ମୁଁ ଯାହା ଶୁଣିଲି ଲିଜା ! ଖାଲି ତ ବିଶ୍ୱାସ ଆସିଲାନି ତା ନୁହେଁ, ଆମେ ପରସ୍ପର ମୁହଁକୁ ଅନାଅନି ହୋଇ ଚକିତ ହେଉଥିଲୁ । ଦେଶପାଣ୍ଡେ, ଭେଙ୍କଟରମଣ, ମୁଁ—ସେଦିନ ସକାଳୁ ଉଠିଲାବେଳକୁ ଏଇ ଖବର ସେହି ସେନାଛାଉଣୀରେ ପ୍ରଚାରିତ ହୋଇ ଯାଇଥିଲା । ଯୁକ୍ତରାଷ୍ଟ୍ର ସାମରିକ କର୍ତ୍ତୃପକ୍ଷଙ୍କ ସବୁପ୍ରକାର ଜାଗାଢ଼ିଆରି ସତ୍ତ୍ୱେ ଉଜ୍ଜ୍ୱଳାବର୍ତ୍ତି ଖସିଗଲା ସେହି ସେନାଛାଉଣୀରୁ । କେମିତି ଯେ କେଉଁଆଡ଼େ ଗଲା, ତହିଁର କିଛି ସନ୍ଧାନ ଜଣାପଡୁନି । ଉଜ୍ଜ୍ୱଳାବର୍ତ୍ତିକୁ ଜଗିରହିଥିବା ସୈନ୍ୟମାନେ ବିଶେଷ କିଛି କହିପାରୁ ନଥାନ୍ତି । ସେମାନେ କହନ୍ତି, ମଧ୍ୟରାତ୍ରରେ ମରୁଭୂମିର ନିର୍ମଳ ଆକାଶରେ ଏକ ଉଜ୍ଜ୍ୱଳ ଆଲୋକ ଦେଖିଥିଲେ । ସେହି ଆଲୋକ ଆକାଶରୁ ଧୀରେ ଧୀରେ ଅବତରଣ କରୁଥିଲା ପୃଥିବୀପୃଷ୍ଠକୁ । ତା ଛଡ଼ା ସେମାନେ ଆଉ କିଛି ଦେଖିନାହାନ୍ତି । ସବୁ ଜଗୁଆଳିଙ୍କର ଏକପ୍ରକାର ଅନୁଭୂତି । ସମସ୍ତେ ସେଇ ଗୋଟିଏ ପ୍ରକାର କଥା ବର୍ଣ୍ଣନା କରୁଛନ୍ତି; କିନ୍ତୁ ତାପରେ କଣ ହେଲା, କାହାରିକୁ ଜଣାନାହିଁ । ରାତିସାରା ସେମାନେ ପୂରାପୂରି ଉଜାଗର ଥିଲେ କି କଣ, ପଚାରିଲାରୁ ସେମାନେ ପୂରା ଉଜାଗର ଥିବା କଥା କହୁଛନ୍ତି । ସେନା-ଛାଉଣୀକୁ ଆଉ କେହି ବାହାରୁ ଆସିଥିବାର ସେମାନେ ଦେଖିନାହାନ୍ତି ।

"ଏସବୁ ସତ୍ତ୍ୱେ ଉଜ୍ଜ୍ୱଳାବର୍ତ୍ତି କେମିତି ହରଣଚାଲ ହେଲା, ଯୁକ୍ତରାଷ୍ଟ୍ର ସରକାରଙ୍କ ସାମରିକ ବିଭାଗ କିଛି ନିର୍ଦ୍ଧାରଣ କରିପାରୁ ନଥାନ୍ତି । ସେମାନଙ୍କୁ ସବୁ କିଛି ରହସ୍ୟମୟ ଜଣାପଡୁଥାଏ ।"

"ଆମ ସମସ୍ତଙ୍କର ବିଶ୍ୱାସ, ଉଜ୍ଜ୍ୱଳାବର୍ତ୍ତିକୁ ସେନାଛାଉଣୀ ଭିତରୁ ହରଣଚାଲ କରିନେଲେ, ତାର ବନ୍ଧୁ ଅନ୍ୟାନ୍ୟ ମହାକାଶଚାରୀମାନେ"—ମୁଁ କହିଲି ।

"କେମିତି ?—ପଚାରିଲା ସେଣ୍ଟି । ଲିଜା ଓ ମେରିଆ ମଧ୍ୟ ତହିଁର ଉତ୍ତର ମୋ'ଠାରୁ ଶୁଣିବାକୁ ଉତ୍କଣ୍ଠାର ସହିତ ଅନାଇ ରହିଥିଲେ ।

"ତୁମେ କଣ ଆଶା କରୁଛ ସେଣ୍ଟି ! ଯେଉଁ ପ୍ରଶ୍ନର ଉତ୍ତର ଏତେ ବଡ଼ ଯୁକ୍ତରାଷ୍ଟ୍ର ସରକାରଙ୍କ ସାମରିକ ବିଭାଗ, ଗୋଇନ୍ଦା ବିଭାଗ, ବୈଜ୍ଞାନିକମାନେ ପାଇ ପାରିନାହାନ୍ତି,

ମୁଁ ତା'ର ଉତ୍ତର ତୁମମାନଙ୍କୁ ଦେଇ ପାରିବି ? ତେବେ ମୋର ବିଶ୍ୱାସ, ଉତ୍କଳାବନ୍ତି ସେନାଗୁରୁଣୀରେ ଅଟକବନ୍ଦୀ ରହିଥିବାବେଳେ ସେ ତା'ର ବନ୍ଧୁମାନଙ୍କୁ ତା ଅବସ୍ଥା କଥା ଜଣାଇଥିଲା ଓ ସେମାନେ ସେହି ସେନାଗୁରୁଣୀକୁ ଆସିଥିଲେ । ଆକାଶରେ ଯେଉଁ ଆଲୋକ ଦେଖିବା କଥା ଜଗୁଆଳିମାନେ କହୁଛନ୍ତି, ତାହା ମିଛ ନୁହେଁ । ସେହି ଆଲୋକ ହେଉଛି ସେମାନଙ୍କ ମହାଶୂନ୍ୟଯାନର । ସେହି ଆଲୋକ ପଡ଼ିବା ସଙ୍ଗେ ସଙ୍ଗେ ଜଗିରହିଥିବା ସୈନ୍ୟବାହିନୀ ଅଳ୍ପ ସମୟ ପାଇଁ ଚେତାଶୂନ୍ୟ ହୋଇଯାଉଥିଲେ । ତା'ରି ଭିତରେ ସେମାନେ ଉତ୍କଳାବନ୍ତିକୁ ମୁକୁଳାଇ ଘେନିଯାଇଥିବା ସମ୍ଭବ । ପ୍ରହରୀମାନେ ଚେତା ହରାଇଥିଲେ ଖୁବ୍ କମ୍ ସମୟ ପାଇଁ; ତେଣୁ ସେମାନେ ଜାଣିବାକୁ ଅକ୍ଷମ ଯେ ସେମାନେ ଅଚେତ ହୋଇଥିଲେ ।"

ଲିଜା ପଚାରିଲା—"ଉତ୍କଳାବନ୍ତିର ସବୁ କଥା ସତ ବୋଲି ତୁମର କ'ଣ ଧାରଣା ହେଉଛି ରମେଶ ?"

"ମୋର ବିଶ୍ୱାସ କରିବା କି ଅବିଶ୍ୱାସ କରିବା ତୁମକୁ ବିଶେଷ ସାହାଯ୍ୟ କରିପାରିବ ଲିଜା ! ଯୁକ୍ତରାଷ୍ଟ୍ର ସରକାରଙ୍କର ଏ ବିଷୟରେ କ'ଣ ମତ ତୁମର ଜାଣିବା ଦରକାର ।"

ସେମାନେ ମୋ ମୁହଁକୁ ଅନାଇ ରହିଲେ ଆଉ କଅଣ କହିବି ଶୁଣିବା ପାଇଁ । କହିଲି "ଉତ୍କଳାବନ୍ତି ହରଣଚୋରି ହୋଇଯିବା ପରେ ଯୁକ୍ତରାଷ୍ଟ୍ରର ସାମରିକ ବିଭାଗ ପୂରାପୂରି ନିଶ୍ଚିତ ଯେ ଉତ୍କଳାବନ୍ତି ପୃଥିବୀର କୌଣସି ଦେଶର ଗୁପ୍ତଚର ନୁହେଁ । ସେ ପ୍ରକୃତରେ ... ମହେଞ୍ଜୋଦାରୋ ସହରର ଅଧିବାସୀ, ଆଜକୁ ପ୍ରାୟ ପାଞ୍ଚହଜାର ବର୍ଷତଳେ । ...ମାନେ ସଂଗ୍ରହ କରିଥିବା ଗୁପ୍ତେଟି ସାକ୍ଷ ଉତ୍କଳାବନ୍ତିର ଏ ବଚନ ଅନୁଭୂତ ସତ୍ୟ ...ଲି ସେମାନଙ୍କୁ ଜଣାପଡ଼ୁଛି ।"

"ଏମିତି କିଛି ପ୍ରମାଣ କଣ ମିଳିଗଲାଣି ଏହାର ସପକ୍ଷରେ"—ସେଣ୍ଡି, ମେରିଆ, ଲିଜା ...ହୋଇ ଏକସଙ୍ଗେ ପଚାରିଲେ ।

"ହଁ, ମିଳିଛି । ଏବେ ପାକିସ୍ତାନରୁ ଖୋଳାଯାଇଥିବା ଏକ ପ୍ରତ୍ନତତ୍ତ୍ୱ ଗବେଷଣାରୁ ଏହା ସପକ୍ଷରେ କେତେକ ପ୍ରମାଣ ମିଳୁଛି । ପାକିସ୍ତାନରେ ଥିବା ମହେଞ୍ଜୋଦାରୋ ସହର-ଠାରୁ ମାତ୍ର ଛଅ ମାଇଲ ଦୂରରେ ଭୂମିଖନନଦ୍ୱାରା ରକେଟ୍ ଭଳି କେତେକ ପ୍ରକାର ...ଗାରୁକା ପଦାର୍ଥ ମିଳିଛି; ଯେଉଁଗୁଡ଼ିକୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ନାନା ଭାବରେ ଯୋଡ଼ାଯୋଡ଼ି କରି ମତ ଦେଇଛନ୍ତି ଏହା ପୂର୍ବକାଳରେ ମହାଶୂନ୍ୟଯାନର ବିଭିନ୍ନ ଅଂଶ ବୋଲି । ପୂର୍ବକାଳରେ ମହାଶୂନ୍ୟଯାନ ଯେ ପ୍ରଚଳିତ ଥିଲା, ଏହା ତହିଁର ପ୍ରକୃଷ୍ଟ ପ୍ରମାଣ ।"

"ଦ୍ୱିତୀୟରେ, ଉତ୍କଳାବନ୍ତିର ବିବୃତି ଅନୁଯାୟୀ ଆଜକୁ ପଞ୍ଚାବନ ବର୍ଷ ତଳେ ଗୋଟିଏ ବିରାଟ ପ୍ରତିବସ୍ତୁରୁ ତଆରି ଧୂମକେତୁ ପୃଥିବୀପୃଷ୍ଠକୁ ଆସିଥିଲା, ଯାହାକି ଚନ୍ଦ୍ର ଓ ପୃଥିବୀର ରାସ୍ତାକୁ ପୂରାପୂରି ଅବରୋଧ କରିଥିଲା; ଫଳରେ ଚନ୍ଦ୍ରଲୋକର ବଞ୍ଚିରହିଥିବା ଶେଷ କେଇଜଣ ପୃଥିବୀକୁ ପଳାଇ ଆସିବାକୁ ଚେଷ୍ଟା କରି ମଧ୍ୟ ପାରିନଥିଲେ । ଗତ ୧୯୦୮

ମସିହାରେ ଏମିତି ଏକ ପ୍ରତିବସ୍ତୁରୁ ତିଆରି ଧୂମକେତୁ ଆମ ଆକାଶକୁ ଆସିଥିବାର ଢେର୍ ପ୍ରମାଣ ମିଳିଲାଣି । ଏହି ଧୂମକେତୁର ଏକ ଅଂଶ ପୃଥିବୀପୃଷ୍ଠକୁ ଛିଟିକି ଆସି ରୁଷିଆ ଦେଶର ସାଇବେରିଆ ଅଞ୍ଚଳରେ ଏକ ବିରାଟ ବିସ୍ଫୋରଣ ଘଟାଇଥିଲା । ଏହା ଟଙ୍ଗୁସ୍କା ବିସ୍ଫୋରଣ ଭାବରେ ପରିଚିତ । ଏହି ବିସ୍ଫୋରଣଟି ତିରିଶି ମେଗାଟନ୍ ବୋମାର ବିସ୍ଫୋରଣ ସହିତ ସମାନ । ମାର୍କିନ ବୈଜ୍ଞାନିକଙ୍କ ମତ, ପ୍ରତିବସ୍ତୁରୁ ତିଆରି ଧୂମକେତୁର ଏକ ଅଂଶ ଛିଟିକି ଆସି ଏହି ବିସ୍ଫୋରଣ ଘଟାଇଥିଲା । ରୁଷୀୟମାନେ କହନ୍ତି, ଏହି ବିସ୍ଫୋରଣ ସେ ସମୟରେ କୌଣସି ଏକ ମହାଶୂନ୍ୟଯାନର ଦୁର୍ଘଟଣା ଯୋଗୁଁ ବି ସମ୍ଭବପର ହୋଇପାରେ । କାଲିଫର୍ଣ୍ଣିଆର ନୋବେଲ ପୁରସ୍କାର-ବିଜେତା ବୈଜ୍ଞାନିକ ଲିବି ଏହା ପ୍ରତିବସ୍ତୁ ଯୋଗେ ବିସ୍ଫୋରଣ ବୋଲି ଯେଉଁ ଅକାଟ୍ୟ ପ୍ରମାଣ ପାଇଛନ୍ତି, ତାହା ପ୍ରମାଣ କରୁଛି ୧୯୦୮ ମସିହାରେ ଏମିତି ଏକ ଧୂମକେତୁ ଆମ ଆକାଶମଣ୍ଡଳକୁ ଚାଲିଆସିଥିଲା ।

"ତୃତୀୟରେ, ଋକ୍‌ବେଦର ଏକ ଅଧ୍ୟାୟରୁ ଜଣାଯାଏ ଚନ୍ଦ୍ରଲୋକରୁ ଦୁଇଜଣ ମଣିଷ ଗୋଟିଏ ଅଦ୍ଭୁତ ପ୍ରକାର ଯାନରେ ଚଢ଼ି ପୃଥିବୀକୁ ଆସିଥିଲେ । ସେ ଯାନର ବର୍ଣ୍ଣନା ଅତୀବ ଚମତ୍କାର । ଏହା ସେ କାଳରେ ମହାଶୂନ୍ୟଯାନର ବ୍ୟବହାର ସମ୍ବନ୍ଧରେ ଯଥେଷ୍ଟ ସାକ୍ଷ୍ୟ ଦେଉଛି । ବର୍ତ୍ତମାନ ବିଭିନ୍ନ ପଣ୍ଡିତ ଏହା ଉପରେ ନାନାପ୍ରକାର ଗବେଷଣା ଚଳାଇଛନ୍ତି, ଯେଉଁଥିରୁ ସ୍ପଷ୍ଟ ଜଣାପଡ଼ୁଛି ପୃଥିବୀପୃଷ୍ଠକୁ ଆଜକୁ ହଜାର ହଜାର ବର୍ଷ ତଳେ ଏମିତି ଏକ ମହାଶୂନ୍ୟଯାନ ଚନ୍ଦ୍ରରୁ ଆସିଥିଲା ।

"ଚତୁର୍ଥରେ, ଉଜ୍ଜଳାବନ୍ତି ମହେଞ୍ଜୋଦାରୋର ପ୍ରକୃତ ନାମ 'ନାନ୍ଦୁର' ବୋଲି ଯା... କହୁଥିଲା, ତାହା ପ୍ରକୃତରେ ଠିକ୍ । ଆଧୁନିକ ପ୍ରତ୍ନତତ୍ତ୍ୱବିତ୍‌ମାନେ ବିରାଟ ପ୍ରମାଣ ପାଇ... ଯେ ମହେଞ୍ଜୋଦାରୋ ସହରର ପ୍ରକୃତ ନାମ ହେଉଛି 'ନାନ୍ଦୁର' । ଉଜ୍ଜଳାବନ୍ତି ... ନାନ୍ଦୁର ବା ମହେଞ୍ଜୋଦାରୋର ଅଧିବାସୀ ହୋଇ ନଥାନ୍ତା, ତେବେ ସେ ... ପ୍ରକୃତ ନାମ କହିପାରିଥାନ୍ତା କେମିତି ?

"ତେଣୁ ଏହି ସ୍ୱତନ୍ତ୍ରତି ସାକ୍ଷ୍ୟକୁ ଯଦି ଆଲୋଚନାକୁ ନିଆଯାଏ, ତେବେ ତୁମେ ... କଣ ବିଶ୍ୱାସ କରିବ ନାହିଁ ଉଜ୍ଜଳାବନ୍ତିର ଅନୁଭୂତି ସତ ବୋଲି ? ମୋର ପୂରା ବିଶ୍ୱା... ଉଜ୍ଜଳାବନ୍ତି ଯାହା କହିଗଲା ତାହା ପୂରାପୂରି ସତ କଥା । ଆଜି ଚନ୍ଦ୍ରର ମୃତ୍ୟୁ ଘଟିଥିଲେ ହେଁ ଚନ୍ଦ୍ରରେ ଏକସମୟରେ ଯେ ଏକ ସୁସଭ୍ୟ, ସମୃଦ୍ଧିଶାଳୀ ଜନବସତି ଥିଲା ଏହା ସତ୍ୟ । ଆମର ବୈଜ୍ଞାନିକ ତଥା ମହାକାଶଚାରୀମାନେ ଯେଉଁଦିନ ଚନ୍ଦ୍ରପୃଷ୍ଠରେ ଅବତରଣ କରିବେ, ସେହିଦିନ ସେମାନେ ତାହାର ସ୍ପଷ୍ଟ ପ୍ରମାଣ ପାଇବେ ବୋଲି ମୁଁ ଆଶା କ... ବସିଛି ।"

ତିନିଅ ତିନିହେଁ ଆଶ୍ଚର୍ଯ୍ୟରେ ପରସ୍ପରକୁ ଅନାଅନି ହେଲେ । କ୍ଷଣକ ପାଇଁ ଆମ ଭିତ... ଖେଳିଗଲା ଅଖଣ୍ଡ ନୀରବତା ।

ସେତେବେଳକୁ କୃଷ୍ଣପକ୍ଷର ଘନ ଅନ୍ଧକାରଦ୍ୱାରା ଘୋଟି ହୋଇ ସେଣ୍ଟ୍ରାଲ ପାର୍କର

ସେଇ ଅଂଶଟି ଧୀରେ ଧୀ[illegible] ହୋଇ ଆସିଲାଣି । ଘଡ଼ିକୁ ଅନାଇ ଜାଣିଲି ରାତ ସାଢ଼େ [illegible] । [illegible] ଉଠୁଛୁ; ହଠାତ୍ ସେହି ଅନ୍ଧାରରେ ଆମ ନିକଟରେ ଆବିର୍ଭୂତ [illegible] ପୋଲିସ୍ ଇନ୍‌ସପେକ୍ଟର । ସେମାନଙ୍କ ହାତରେ ମୋତେ ଆରେଷ୍ଟ କରିବାର ଏକ ଓ୍ୱାରେଣ୍ଟ ।

ପଚାରିଲେ ସେମାନେ, "ଆପଣ ନିଶ୍ଚୟ ରମେଶଚନ୍ଦ୍ର ଚୌଧୁରୀ !"

ମୁଁ ଆଶ୍ଚର୍ଯ୍ୟରେ ଏତେ ମ୍ରିୟମାଣ ହୋଇପଡ଼ିଥିଲି ଯେ, ପୋଲିସ୍ ପ୍ରଶ୍ନର କିଛି ଉତ୍ତର ଦେବା ସେତେବେଳେ ମୋ ପକ୍ଷରେ ସମ୍ଭବ ନଥିଲା ।

ସେମାନେ କହିଲେ, ଆପଣଙ୍କୁ ଆମ ସହିତ ପୋଲିସ ଷ୍ଟେସନକୁ ଯିବାକୁ ପଡ଼ିବ ମିଷ୍ଟର ଚୌଧୁରୀ ! ଆପଣ ବୋଧହୁଏ ଜାଣିନାହାନ୍ତି, ଆପଣଙ୍କ ବନ୍ଧୁ ଭେଙ୍କଟରମଣ ସାଣ୍ଟାଫେ ସହରରୁ କେଉଁଆଡ଼େ ହରଣଚାଲ ହୋଇଯାଇଛନ୍ତି । ଆପଣଙ୍କ ଅନ୍ୟତମ ବନ୍ଧୁ ଦେଶପାଣ୍ଡେ ଭାରତକୁ ଉଡ଼ାଜାହାଜରେ ଫେରିବା ବାଟରେ ତାଙ୍କ ଉଡ଼ାଜାହାଜକୁ କେଉଁଆଡ଼େ ହରଣଚାଲ କରି ନିଆଯାଇଛି । ତେଣୁ ଏଭଳି ପରିସ୍ଥିତିରେ ଆମେ ଆପଣଙ୍କୁ ବାହାରେ ରଖିବାକୁ ନିର୍ଦ୍ଦେଶ ପାଇନାହୁଁ ।"

ପୋଲିସ ଅଫିସର ଦୁଇଜଣଙ୍କର ଏ ଉକ୍ତି ମୋତେ ବିସ୍ମିତ କଲା । ମୋର କର୍ତ୍ତବ୍ୟ ସ୍ଥିର କରି ନପାରି ସେମାନଙ୍କର ଶେଷ ଇଙ୍ଗିତମୂଳକ ଆଦେଶରେ ଅଫିସର ଦୁହିଙ୍କର ଅନୁଧାବନ କରିବାକୁ ବାଧ୍ୟ ହେଲି । ପାର୍କର ସେଇ ଅନ୍ଧକାର ଭିତରେ ସେଣ୍ଡି, ଲିଜା ଆଉ ମେରିଆ ମୋତେ ବିଦାୟ ଦେଇ ସ୍ତବ୍ଧ ହୋଇ ବସିଥାନ୍ତି ।

---